# ବ୍ରହ୍ମବୈବର୍ତ୍ତ ପୁରାଣ




ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର
ଅଲଣାବଜାର, କଟକ-୨

# ବ୍ରହ୍ମବୈବର୍ତ୍ତ ପୁରାଣ

## ଗଣେଶ ଖଣ୍ଡ

( ତୃତୀୟ ଭାଗ )

ଓଁ ଶ୍ରୀ ଶ୍ରୀ ଗଣପତୟେ ନମଃ

ଦେବେନ୍ଦ୍ର ମୌଳି-ମନ୍ଦାର-ମକରନ୍ଦ-କଣାରୁଣାଃ ।
ବିଘ୍ନଂ ହରନ୍ତୁ ହେରମ୍ବ ଚରଣାମ୍ଭୋଜ ରେଣବଃ ॥



ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର : ଶ୍ରୀ ବିଦ୍ୟାଧର ସାହୁ
ଅଲିଶା ବଜାର : କଟକ-୨

ମୂଲ୍ୟ—ଟ ୫-୦୦

# ବ୍ରହ୍ମବୈବର୍ତ୍ତ ପୁରାଣ

### ଗଣେଶ ଖଣ୍ଡର

## ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|


**ଗଣେଶ ଖଣ୍ଡର ସୂଚୀପତ୍ର ସମାପ୍ତ**

# ବ୍ରହ୍ମବୈବର୍ତ୍ତ ପୁରାଣ

## ଗଣେଶଖଣ୍ଡ

ଖର୍ବ ସ୍ଥୂଳତନୁ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରଂ
ପ୍ରସ୍ୟନ୍ଦନ୍ମଦଗନ୍ଧ ଲୁବ୍ଧ ମଧୁପ ବ୍ୟାଲୋଲ ଗଣ୍ଡସ୍ଥଳଂ ।
ଦନ୍ତାଘାତ ବିଦାରିତାରିରୁଧିରୈଃ ସିନ୍ଦୁର ଶୋଭାକରଂ
ବନ୍ଦେ ଶୈଳସୁତା ସୁତଂ ଗଣପତିଂ ସିଦ୍ଧିପ୍ରଦଂ କାମଦଂ ।।

### ଅଗ୍ରଦେବଙ୍କ ବନ୍ଦନା

ନମୋ ନମୋ ଗଣନାଥ ପାର୍ବତୀ ନନ୍ଦନ
ମୂଷିକ ଉଦର ଏକଦନ୍ତ ଗଜାନନ ।
କପୋଳେ ଚନ୍ଦନ ବିନ୍ଦୁ ଅଛି ମନୋହର
ବନ୍ଦନା କରୁଛି ଦେବ ତବ ଶ୍ରୀପୟର ।
ଖଣ୍ଡା ଡମ୍ବରୁ ପାଶାଙ୍କୁଶ ଶୋଭେ କରେ
ଘଣ୍ଟି ଘର୍ଘରେ ଶୋଭେ ଜଙ୍ଘ ମନ ଅରେ ।
ତବ ସମ ଜ୍ଞାନବନ୍ତ ନାହିଁ କେ ବିପୁର
ବନ୍ଦନା କରୁଛି ଦେବ ତବ ଶ୍ରୀପୟର ।
ଦେବ ଦାନବ ମାନବ ଆଦି ଯେତେଜନ୍ତୁ ।
ସକଳେ ତୁମ୍ଭଙ୍କୁ ଅଗ୍ରେ ରଖିଣ ପୂଜନ୍ତି ।
ତୁମ୍ଭଙ୍କୁ ପୂଜା ନ କଲେ ନ ଲଭନ୍ତି ଫଳ
ବନ୍ଦନା କରୁଛି ତବ ଚରଣ କମଳ ।
ନାହିଁ ମୋର ବୁଦ୍ଧି ଜ୍ଞାନ ନ ଜାଣଇ କିଛି
ତବ ଭରସାରେ ମୁହିଁ ସାହସ ବାନ୍ଧୁଛି ।
ବ୍ରହ୍ମବୈବର୍ତ୍ତ ପୁରାଣ ଲେଖିବା ନିମନ୍ତେ
ଅନେକ ଦିନୁଁ କାମନା କରିଥିଲି ଚିତ୍ତେ ।

କିନ୍ତୁ ତବ ଦୟା ନୋହିଥିଲା ଯେତେ ଦିନ
ଲେଖିବା ପାଇଁକି ହେଉ ନ ଥିଲା ସାଜନ ।
ଆଜି ସେ କାମନା ମୋର ରୂପରେଖ ନେଇ
ଯାଉଅଛି ଦୁନିଆରେ ଛୁଆଁ ଦେବାପାଇଁ ।
ଏଣିକି ମାନର ପ୍ରଭୁ କରି ନିବେଦନ
ଯେମନ୍ତ କଳ୍ପନା ବୃକ୍ଷେ ଫଳିବ ସୁମନ ।
ଆନନ୍ଦ ସୁନ୍ଦର ମନୋହର ଯେ ଶୋଭିବ
ସୁବାସରେ ଚଉଦିଗ ମହକି ଉଠିବ ।
ପଥମ ଦ୍ୱିତୀୟ ଦୁଇଖଣ୍ଡ ଶେଷ କରି
ତୃତୀୟ ଖଣ୍ଡ ଲେଖିବେ ମନରେ ବିଚାରି ।
ମାଗୁଛି ଲେଖନୀ ପ୍ରଭୁ ଦେବ ମୋତେ ଶକ୍ତି
ନ ଅଟକି ଯେମନ୍ତ ଚଳିବ ଅବାରିତି ।
ପଦପଦ ହୋଇ ପଦମାନ ପୁରୁଥିବ
ଚିତ୍ରପଟ ପରି ମନେ ଅଙ୍କିତ ହୋଇବ ।
ଦ୍ୱିଜଙ୍କ ସ୍ୱରୂପ ଜଣେ ହେବ ପ୍ରକାଶିତ
ପାଠକମାନେ ପାଠେ ମନେ ହୋଇବେ ପୁଲକ ।
ଏଣିକି ମାନର ପ୍ରଭୁ ଅଟେ ନିବେଦନ
କର ପ୍ରସାଦ ମାଗଇ ସେବକ ବାସୀ ଘନ ।

### ଜନନୀଙ୍କ ପାଦ ବନ୍ଦନା

ଜୟ ମା ଜନନୀ ତୋର ଅଭୟ ପଦ୍ମରେ ।
ବନ୍ଦନା କରୁଛି ଘନଜନ ଭକ୍ତିଭରେ ।
ନ ଆସିବା ପଦମାନ ଦେଉଥିବୁ କହି
ଲେଖନୀ ଅଗ୍ରରେ ସଦା ବସିଥିବୁ ତୁହି ।
ତୋହ ବିନେ ଆନ କିଛି ନ ଜାଣଇ ମାତ
ନ ଜାଣେ ଭଜନ ଧ୍ୟାନ ଜ୍ଞାନ ମନ୍ତ୍ରସ୍ନାନ ।
କେବଳ ପାଦ ଅମ୍ବୁଜ ରହିଣ ଭରସା
ଏ ଗ୍ରନ୍ଥ ଲେଖିବା ପାଇଁ ବଳାଇଛି ଆଶା ।
ସର୍ବଦା ଅନ୍ତର ମଧ୍ୟେ କରେଣ ସ୍ମରଣ
ଦୁଇଖଣ୍ଡ ଯା ମଧ୍ୟରୁ କରିଛି ରଚନ ।
ବ୍ରହ୍ମବୈବର୍ତ୍ତ ପୁରାଣ ନାମ ଅଟେ ଯାର
ପ୍ରଚାର ହୋଇଛି ନାମ ବ୍ରହ୍ମ ଯା ମଧ୍ୟର ।
ଆଦ୍ୟେ ବ୍ରହ୍ମଖଣ୍ଡ ପୁଣି ଦ୍ୱିତୀୟ ପ୍ରକୃତି
ତୃତୀୟେ ଗଣେଶଖଣ୍ଡ ଲେଖିବଇଁ ଶାନ୍ତ ।
ଯେପରି ଏ ଗ୍ରନ୍ଥ ଖଣ୍ଡି ହୋଇବ ସୁନ୍ଦର
ସର୍ବଜନାଦୃତ ହେବ ଏହି ଦୟା କର ।
ଏତିକି ମାତର ଅଟେ ମୋହର ବିନତି
କ୍ଷେତ୍ରମୋହନକୁ ଦୟାକର ଭଗବତୀ ।

### ଗ୍ରନ୍ଥସୂଚନ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ନଇମିଷ ଅରଣ୍ୟରେ ଋଷିଙ୍କ ମେଳରେ
ପୌରାଣିକ ସୌତି ମୁନି ବସି ଆନନ୍ଦରେ ।
ବଖାଣ କରନ୍ତି ନାନା ଶାସ୍ତ୍ରରୁ ଉଦ୍ଧାରି
ଶୁଣନ୍ତି ସୌନକ ଆଦି ବହୁ ତପସ୍ୱୀ ।
ପ୍ରେମ ଗଦ୍‌ଗଦେ ସୌନକ ହୋଇ ପୁଲକିତ
ବୋଇଲେ ହେ ମହାଜ୍ଞାତା ସୌତି ତପୋବନ୍ତ
ତବ ଶ୍ରୀମୁଖରୁ ଶୁଣି ଶାସ୍ତ୍ରର ବଖାନ
ପବିତ୍ର ହୋଇଲା ଆମ୍ଭ ମାନଙ୍କର ମନ ।
ବ୍ରହ୍ମବୈବର୍ତ୍ତ ପୁରାଣ ନାମେ ଯେଉଁ ଗ୍ରନ୍ଥ
ଶୁଣାଇଲେ ତୋଷ ହେଲା ସଭଙ୍କର ଚିତ୍ତ ।
ଆଦ୍ୟେ ବ୍ରହ୍ମଖଣ୍ଡ ଶୁଣାଇଲେ ତପୀଧାଇଁ
ଦ୍ୱିତୀୟେ ପ୍ରକୃତିଖଣ୍ଡ ଗାଥା ଗଲେ କହି ।
ଆଉ ଯେବେ ତା ମଧ୍ୟରୁ ରହିଅଛି କିଛି
ଆମ୍ଭମାନଙ୍କୁ ଶୁଣାନ୍ତୁ ସୁତଙ୍କର ବସି ।
ସୌନକ ବଚନେ ସୌତି ହୋଇଣ ହରଷ
ବୋଇଲେ ପୁଚ୍ଛିଲ ଯାହା ଶୁଣ ହୋଇ ତୋଷ
ଏ ପର୍ଯ୍ୟନ୍ତ ଯାହା ଯାହା ମାଇଅଛି କହି
ତାହା ଶ୍ରବଣ କରିଛ ସର୍ବେ ତୋଷ ହୋଇ ।
ଏହାପରେ ଆନ ଗାଥା କହିବା ଗାୟନ
ଧୀରଚିତ୍ତେ ସ୍ଥିରେ ବସି ଶୁଣ ତପୋଧନ ।
ଋଷି ନାରାୟଣ ନାରଦଙ୍କ ଅଗ୍ରତରେ
କହିଥିଲେ ଯେଉଁ ତତ୍ତ୍ୱମାନ ସଂକ୍ଷେପରେ ।
ତାହା ନାରଦଙ୍କଠାରୁ କରିଣ ଶ୍ରବଣ
ତୁମ୍ଭମାନଙ୍କ ଅଗ୍ରତେ କରୁଛି ବଖାଣ ।
ଶୁଣିଛ ଆଦ୍ୟରୁ ଅର୍ଦ୍ଧ ପର୍ଯ୍ୟନ୍ତେ ତୁମ୍ଭେ
ଯେଉଁଠାରୁ ଆନଗାଥା ବଖାଣିବା ଆମ୍ଭେ ।
ଗଣେଶ ଖଣ୍ଡ ଯେ ନାମ ଅଟଇ ଏହାର
ବହୁଜ୍ଞାନମାନ ପୂରିଅଛି ଯା ମଧ୍ୟର ।
ଶ୍ରବଣ କଲେ ଅବା କଲେ ପଠନ
ଜୀବନାନ୍ତେ ବୈକୁଣ୍ଠରେ ଲଭିବ ଆସ୍ଥାନ ।
ଇହକାଳେ ମହାସୁଖେ ବିତାଇବ ଦିନ
ଧନଧାନ୍ୟେ ପରିପୂର୍ଣ୍ଣ ହୋଇବ ସଦନ ।
ଅଭାବ ରାକ୍ଷସ ବହୁ ଦୂରେ ହଟିଯିବ
ମହାଲକ୍ଷ୍ମୀଙ୍କର ଦୟା ସଦାକାଳେ ଥିବ ।
ତେଣୁ ସୁଜ୍ଞ ଜନଙ୍କୁ ମୁଁ କରେ ନିବେଦନ
ବ୍ରହ୍ମନାମ କର ସଦା ଭଜନ ଗାୟନ ।
ଆଦ୍ୟଠାରୁ ପ୍ରାନ୍ତଯାଏ ପଢ଼ିଲେ ଏ ଗ୍ରନ୍ଥ
ବର୍ଦ୍ଧିତ ହୋଇବ ମର୍ତ୍ତ୍ୟମଣ୍ଡଳେ ସୁକୃତ ।
ଏହା କହି ମୁନିବର ହୋଇଲେ ମଉନ
ଗୀତଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।

---

## ପ୍ରଥମ ଅଧ୍ୟାୟ

### କାର୍ତ୍ତିକେୟଙ୍କ ଜନ୍ମ ପୂର୍ବର ବିବରଣ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ଅତ୍ୟନ୍ତ ରହସ୍ୟମୟ ଏ ଗ୍ରନ୍ଥ ଅଟଇ
ନାନା ସୁଧାମୟ ରସ ଏଥି ପୂରିଛଇଁ ।
ଏଥି ଅନ୍ତେ ନାରାୟଣ ସମୀପରେ ବସି
ଆନନ୍ଦିତ ହୋଇ ପୁଣି ନାରଦ ମହର୍ଷି ।

ବୋଇଲେ ଅମୃତମୟ ଗାଥାମାନ ଶୁଣି
ଅପାର ଆନନ୍ଦ ହେଲା ମନେ ମନେ ଗୁଣି ।
ଆଉର କାର୍ତ୍ତିକଙ୍କର ଜନ୍ମ ସମାଚାର
ଶୁଣିବା ପାଇଁକି ମନ ବଳୁଛି ଅପାର ।
ଦେବ ଦେବ ମହାଦେବ ଈଶ୍ୱର ଚରିତ
ଶୁଣାଇ ମୋହର ଶ୍ରୁତି କରନ୍ତୁ ପବିତ୍ର ।
ମହାଦେବୀ ଭଗବତୀ କେଉଁ ପରକାରେ
ତାହାଙ୍କର ଧର୍ମ ପତ୍ନୀ ହୋଇଲେ ସଧିରେ ।
ପୁଣି ଗଣେଶ କାର୍ତ୍ତିକ ନନ୍ଦୀ ଭୃଙ୍ଗୀଙ୍କର
ଜନ୍ମ ବିବରଣ ମାନ କୁହ ମୋ ଆଗର ।
କେଉଁ ପରକାରେ କେହ୍ନେ ଜନମ ଲଭିଲେ
ଦୟାକରି ତାହା ବାରେ ମାତ୍ର ଶୁଣା ଦେଲେ ।
ନାରଦଙ୍କର ବଚନ ଶୁଣି ନାରାୟଣ
ବୋଇଲେ ଅତି ଚନ୍ଦନ ଗାଥା ଏହୁ ଜାଣ ।
ଶିବ ବା ଶୈବ ପୁରାଣ ମଧ୍ୟେ ରହିଅଛି ।
ଯେବେ ଶୁଣିବାକୁ ଇଚ୍ଛା ବୁଝାଇ ଦେଉଛି ।
ଅଗ୍ରଦେବ ଗଣେଶଙ୍କ ଜନ୍ମ ସମାଚାର
ପଶ୍ଚାତେ କହିବି ତାହା ଶୁଣିବ ଶ୍ରୁତିର ।
ଆଗେ ଶିବାଣୀଙ୍କ ଗାଥା ଶୁଣ ମନଦେଇ
କିରୂପେ ଜନମ ହେଲେ କାହାଘରେ ଯାଇ ।
ଦାନବବଳ ମର୍ତ୍ତ୍ୟରେ କରନ୍ତେ ଉତ୍ପାତ
ଦେବତାମାନେ ମନରେ ହୋଇ ମହାଭୀତ ।
କ୍ଷୀର ସିନ୍ଧୁ କୂଳରେ ଯାଇ ପ୍ରବେଶ ହୋଇଲେ
କାତର କଣ୍ଠେ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ ।
ବୋଇଲେ ହେ ଦେବ ଦେବ ଜଗତର ନାଥ
ଆମ୍ଭମାନଙ୍କର ଦୁଃଖ କରନ୍ତୁ ଦୂରିତ ।
ଦୁର୍ଦ୍ଦାନ୍ତ ଦାନବମାନେ ପଶି ସ୍ୱର୍ଗପୁର
ଦେବତାମାନଙ୍କୁ କଷ୍ଟ ଦିଅନ୍ତି ଅପାର ।
ଅମୂଲ୍ୟ ସମ୍ପଦ ଯେତେ ରହିଛି ସ୍ୱର୍ଗରେ
ତାହା ବୋହି ଆଣୁଛନ୍ତି ସେହୁ ବଳକାରେ ।
ଆଉର ସୁରସୁନ୍ଦରୀ ମାନଙ୍କୁ ଧରିଣ
ଅତ୍ୟାଚାର କରୁଛନ୍ତି ସେ ଦାନବଗଣ ।
କେତେକ ଦେବକନ୍ୟାଙ୍କୁ ରଥରେ ବସାଇ ।
ମରତ ପୁରକୁ ନେଇ ଆସୁଛନ୍ତି ସେହି ।
ସେଥିରେ ଯଦ୍ୟପି କେହି କରେ ପ୍ରତିବାଦ
ସାଥେ ସାଥେ କରୁଛନ୍ତି ତାଙ୍କ ଶିରଚ୍ଛେଦ ।

ସେପରି ବନ୍ଦି ଜନ ଅମର ମଣ୍ଡଳେ
ନାନା ଅତ୍ୟାଚାର ସେହୁ କରନ୍ତି ସମୂଳେ ।
ଆପଣ ଯଦ୍ୟପି ନ କରିବେ ପ୍ରତିକାର
ନୋହିଲେ ଯିବବ ସବ ଅମର ନଗର ।
କେତେ କେତେ ଆପଦରୁ ଦେବତାମାନଙ୍କୁ
ରକ୍ଷା କରିଣ ବଞ୍ଚାଇ ଅଛ ଅମରଙ୍କୁ ।
ଆଜି ଯଦ୍ୟପି ନ କର ହୋର ବ୍ୟବସ୍ଥା
ମରିବେ ଦେବତାକୁଳ ଭୋଗିଣ ଦୁରବସ୍ଥା ।
ହେ ଦୟାମୟ ଜଗନ୍ନାଥ ଜନାର୍ଦ୍ଦନ
ଆମ୍ଭମାନଙ୍କର ଦୁଃଖ କରନ୍ତୁ ମୋଚନ ।
ନୋହିଲେ ସକଳେ କ୍ଷୀର ସାଗର ବକ୍ଷରେ
ଝାସ ଦେଇଣ ପରାଣ ହାରିବୁ ଏଠାରେ ।
ଏମନ୍ତ ଭାବେ ଦେବତାମାନେ ହୋଇ ବ୍ୟସ୍ତ
ତାହା ଜାଣିପାରି ପ୍ରଭୁ ଅନ୍ତର୍ଯ୍ୟାମୀ ନାଥ ।
ବିନତା ନନ୍ଦନ ପୃଷ୍ଠେ କରି ଆରୋହଣ
ଦେବତା ମାନଙ୍କ ପାଖେ ମିଳିଲେ ତକ୍ଷଣ ।
ଶଙ୍ଖ ଚକ୍ର ଗଦାପଦ୍ମ ଶୋଭେ ଚାରିକରେ
ନୀଳାମ୍ବୁଦ ବରନ ଜନ ମନ ହରେ ।
କଣ୍ଠତଟେ କୌସ୍ତୁଭ ମଣିମାଳ ଶୋଭେ
ଦେଖି ଆନନ୍ଦ ହୋଇଣ ସବୁ ଦେବତାଏ ।
କରଯୋଡ଼ି ସାଷ୍ଟାଙ୍ଗରେ ହୋଇ ପ୍ରଣିପାତ
ଭକତି ଭରେ ବନ୍ଦନା କରିଲେ ସମସ୍ତ ।
ଦେବଙ୍କ ପ୍ରାର୍ଥନା ଶୁଣି ମହାଲକ୍ଷ୍ମୀ ପତି
ଦରହସି ବୋଇଲେକ ତାହାଙ୍କ ଭାରଥ ।
କାହିଁପାଇଁ ଦେବଗଣ ଏଠାରେ ବସିଛ
କଅଣ ପଥ ବାଉଳା ହୋଇ ଯାଇଅଛ ।
ବିଷ୍ଣୁଙ୍କ ଶ୍ରୀମୁଖୁ ଏହା ଶୁଣନ୍ତେ ଅମରେ
ଧାତାଙ୍କ ଆଗେ କହିଲେ ବ୍ୟାକୁଳେ ଅନ୍ତରେ ।
ଶୁଣି ଆଗନ୍ତର ହୋଇ ପାର୍ବତୀ ରମଣ
ବୋଇଲେ ବିଷ୍ଣୁଙ୍କୁ ସବୁ ଜାଣନ୍ତି ଆପଣ ।
ନ ଜାଣିଲା ପରି କିମ୍ପା ଏମନ୍ତ କୁହନ୍ତି
ଦେବଙ୍କ କଷଣ ଦେଖି ନିରବେ ରହନ୍ତି ।
ବନ୍ଦନ ଯାଚିଲେ ପ୍ରଭୁ ଏହାର ଉପାୟ
ଜଣାଣ ହୋଇବେ ତବ ଆଗରେ ନିଶ୍ଚୟ ।
ବନ୍ଧୁ କଷ୍ଟ ଲେ କଠିନ ସ୍ୱରଗ ଭୁବନ
ଦାନବଙ୍କ ଅତ୍ୟାଚାରେ ହୋଇବ ଶ୍ମଶାନ ।

ତେଣୁ ସବ ଦେବଗଣ କରନ୍ତି ବିନତି
ଆମ୍ଭର କଷଣ ପ୍ରଭୁ ମୋଚନ୍ତୁ ତୁରନ୍ତ ।
ସେମାନଙ୍କ ବଚନେ ସନ୍ତୋଷ ହୋଇଲେ ନାରାୟଣ
ବୋଇଲେ ନିର୍ଭୟେ ରୁହ ସର୍ବ ଦେବଗଣ ।
ଅଳପ ଦିନରେ ଦାନବଙ୍କୁ କରି ଧ୍ୱଂସ
ତୁମ୍ଭ ମାନଙ୍କ କଷଣ କରିବଇଁ ଶେଷ ।
ଏହିପରି କହୁ କହୁ କମଳା ରମଣ
କ୍ରୋଧଭରେ ଗର୍ଜନ ହୋଇ ତତକ୍ଷଣ ।
ଅନାଇ ରହନ୍ତେ ଏକ ଉଲକାସମ ଜ୍ୟୋତି
ଶ୍ରୀଅଙ୍ଗରୁ ଆବିର୍ଭାବ ହୋଇଲା ତୁରନ୍ତ ।
ସେହି ଜ୍ୟୋତିମୟ ଜ୍ୟୋତି ଦେଖି ଦେବଗଣ
ନିଜ ନିଜ ଅଙ୍ଗୁ ତେଜ କରିଲେ ଅର୍ପଣ ।
ସକଳ ଦେବତାଙ୍କର ତେଜ ତହୁଁ ଯାଇ
ବିଷ୍ଣୁଙ୍କର ଜ୍ୟୋତି ସଙ୍ଗତରେ ଏକ ହୋଇ ।
ମହାଜ୍ୟୋତିମୟୀ ମୂର୍ତ୍ତି ଗଠିତ ହୋଇଲା
ବିଦ୍ୟୁତ ସମାନ ତାଙ୍କ ରୂପ ବିକଶିଲା ।
ଦେଖି ସର୍ବ ଦେବତାଏ ଆନନ୍ଦ ହୋଇଲେ
ଯେ ଯାହାର ଅସ୍ତ୍ରଶସ୍ତ୍ରମାନ ଦାନ କଲେ ।
ଅସ୍ତ୍ର ପାଇ ମହାମାୟା ହୋଇ ହରଷିତ
ଶ୍ରୀକୃଷ୍ଣଙ୍କର ପୟରେ ଶିର କରି ନତ ।
ବୋଇଲେ ଯେଉଁ ଆଦେଶ ଦେବ ଦୟାମୟ
ତାହା ଏହି ମହାମାୟା ପାଳିବ ନିଶ୍ଚୟ ।
ଶୁଣି ଜଗନ୍ନାଥ ତାଙ୍କୁ କହିଲେ ବୁଝାଇ
ଦାନବେ କଷଣେ ଦିଅନ୍ତି ଅମରଙ୍କୁ ଯାଇ ।
ତାହାଙ୍କୁ ବେଗେ ବିନାଶ କରିଯାଇ ତୁମ୍ଭେ
ଏଇଥି ଲାଗି ଆଦେଶ ଦେଉଅଛୁ ଆମ୍ଭେ ।
ଏହାଶୁଣି ମହାମାୟା ବିଦାୟ ହୋଇଲେ
ଦାନବ ଦଳକୁ ଯାଇ ବିନାଶ କରିଲେ ।
ଦୁର୍ଗମ ମହିଷ ଆଦି ବଡ଼ ବଡ଼ ଦୈତ୍ୟ
ଧୂମ୍ର ଆଦି ଶିବବରେ ହୋଇ ବଳବନ୍ତ ।
ବାହୁ ବଳେ ତିନିପୁର କରିଥିଲେ ଜୟ
ତାଙ୍କ ନାମ ଶୁଣି ଜନେ ହୁଅନ୍ତି ଅଥୟ ।
ସେମନ୍ତ ବଳିଷ୍ଠ ଦାନବଙ୍କୁ କୌଶଳରେ
ବିନାଶ କରିଲେ ମହାମାୟା କ୍ରୋଧଭରେ ।
ଦେବତାମାନେ ଦେଖିଣ ତାହାଙ୍କ ମହତ
ବନ୍ଦନା କରିଲେ ତାଙ୍କ ପାଦ କରି ନୁତ ।

ଦୁର୍ଗମାସୁର ପରାଣ କରନ୍ତେ ମା ନାଶ
ଦୁର୍ଗାନାମ ତାହାଙ୍କର ରଖିଲେ ତ୍ରିଦଶ ।
ଦେବତାମାନଙ୍କ ମାନ କରିଣ ଉଦ୍ଧାର
ଅନ୍ତର୍ଦ୍ଧାନ ହୋଇଲେ ମହାଶୂନ୍ୟରେ ସତ୍ୱର ।
ତାହାପରେ କିଛିଦିନ ଅନ୍ତେ ମହାଶକ୍ତି
ଦକ୍ଷ ଗୃହେ କନ୍ୟାରୂପେ ଜାତହେଲେ ଯାଇ ।
ସତୀ ନାମ ତାହାଙ୍କର ହୋଇଲା ବିଖ୍ୟାତ
ଶିବଙ୍କୁ ବରଣ କଲେ ଆନନ୍ଦରେ ମାତ ।
କେତେକ ଦିନଅନ୍ତେ ସତୀଦେବୀଙ୍କ ଜନକ
ଯଜ୍ଞ ଏକ ଆରମ୍ଭିଲେ ଘେନି ଦେବଲୋକ ।
ଯେତେକ ଅମରଗଣ ଥିଲେ ତିନିପୁରେ
ତାହାଙ୍କୁ ନିମନ୍ତ୍ରି ସେହୁ ଆଣିଲେ ସତ୍ୱରେ ।
ଶିବଙ୍କୁ ନିର୍ଦ୍ଧନୀ ଭାବି ମନେ ଗର୍ବ ବହି
ସେ ଯଜ୍ଞକୁ ନିମନ୍ତ୍ରଣ ନ କଲେକ ସେହି ।
ତାହାଶୁଣି ସତୀ ମନେ ମହାକ୍ରୋଧ କଲେ
ପିତାଙ୍କ ପୁରରେ ଯାଇ ପ୍ରବେଶ ହୋଇଲେ ।
ଶିବଙ୍କର ଅପମାନ ସେଠାରେ ନ ସହି
ପରାଣ ହାରିଲେ ଯଜ୍ଞ ଅନଳକୁ ଡେଇଁ ।
ତାହାପରେ କେତେକାଳ ହୋଇଯାନ୍ତେ ଗତ
ହିମାଳୟ ଘରେ କନ୍ୟାରୂପେ ହେଲେ ଜାତ ।
ପର୍ବତ ରାଜାଙ୍କ ଘରେ ହୁଅନ୍ତେ ଜନମ
ପାର୍ବତୀ ବୋଲିଣ ହେଲା ତାହାଙ୍କର ନାମ ।
ଶିବଙ୍କୁ ପାଇବା ପାଇଁ ପର୍ବତ ଦୁଲଣୀ
ଘୋର ତପ ଆଚରିଲେ ମନମଧ୍ୟେ ଗୁଣି ।
ତାହାଙ୍କ ତପରେ ଦେବ ଦେବ ମହେଶ୍ୱର
ସନ୍ତୁଷ୍ଟ ହୋଇ ମିଳିଲେ ଯାଇଣ ସେଠାର ।
ଆପଣା ପତ୍ନୀଙ୍କୁ ସେହୁଁ ନୟନେ ଦେଖିଲେ
ଅପାର ଆନନ୍ଦ ପ୍ରଭୁ ମନରେ ହୋଇଲେ ।
ବହୁ କାଳର ବିଚ୍ଛେଦ ହୋଇଲାକ ଦୂର
ବିବାହ କରିଲେ ବେଦ ବିଧାନେ ସତ୍ୱର ।
କୈଳାସ ପୁରକୁ ସଙ୍ଗେ ଘେନି ଚାଲିଗଲେ
ନାନା ପରକାରେ ରତି କ୍ରୀଡ଼ା ଆରମ୍ଭିଲେ ।
ପରମ ସନ୍ତୁଷ୍ଟ ହୋଇ ପର୍ବତ କୁମାରୀ
ପତିଙ୍କ ସହିତେ ସୁଖେ ବାସ କଲେ ଗୌରୀ ।
ଏହିଭଳି କିଛିକାଳ ହୋଇଯାନ୍ତେ ଗତ
ଦେବତାମାନେ ମିଳିଣ କରିଲେ ଚକ୍ରାନ୍ତ ।

ଏକ ସମୟେ ବ୍ରହ୍ମା ସଙ୍ଗେ ହୁଅନ୍ତେ ବିବାଦ
ପଶୁପତି ମାରି ତାହାଙ୍କ ଶିର କଲେ ଛେଦ ।
ଯେହୁ ଛିନ୍ନ ଶିର ଶିବ କରୁ ନ ଛାଡ଼ିଲା
ତେଣୁ ବ୍ରହ୍ମହତ୍ୟା ଦୋଷ ତାହାଙ୍କୁ ଲାଗିଲା ।
ଯେତେ ପ୍ରକାର ଚେଷ୍ଟା କଲେ ମହେଶ୍ୱର
ନ ଛାଡ଼ିଲା ଶିର ତାଙ୍କ ହସ୍ତରୁ ସତ୍ୱର ।
ତେଣୁ ପତ୍ନୀ ସହିତରେ କୈଳାସ ଭୁବନ ।
ତେଜ୍ୟାକରି ନାନାତୀର୍ଥ କଲେ ପର୍ଯ୍ୟଟନ ।
ହଜାର ହଜାର ବର୍ଷ ତପ ଆଚରିଲେ
ସ୍ନାନ ଭୋଜନ ଆଦି ବିସର୍ଜନ କଲେ ।
ତଥାପି ବ୍ରାହ୍ମଣ ଶିର ହସ୍ତୁ ନ ଛାଡ଼ିଲା
ମହାଦେବଙ୍କର ମନେ ବିଷାଦ ଜନ୍ମିଲା ।
ଭାବିଲେ ଯଦ୍ୟପି ଶିର ହସ୍ତୁ ନ ଛାଡ଼ିବ
ଏ ପାପ ଶରୀର ଧରି ହେବ କେଉଁଲାଭ ।
ଏରୂପେ ମନମଧ୍ୟେ ଭାଳି ଭୋଳାନାଥ
ନିରାକାରଙ୍କ ମନମଧ୍ୟେ ହେଲେ ଉପସ୍ଥିତ ।
କରେ ଲାଗିଥିବା ଶିର ପ୍ରଭୁଙ୍କୁ ଦେଖାଇ
ଗୋଟି ଗୋଟିକରି ସବୁକଥା ଗଲେ କହି ।
ତାହାଙ୍କ ବ୍ୟାକୁଳ ଆଉ ଦୁର୍ବଳ ଶରୀର
ଦେଖି ମନମଧ୍ୟେ ଦୟା ହେଲା ବିଷ୍ଣୁଙ୍କର ।
ଉପାୟ ବତାଇ ତାଙ୍କୁ ବୋଇଲେ ବଚନ
ମରତ ଭୁବନେ ଅଛୁ ଏକାମ୍ର କାନନ ।
ଅତ୍ୟନ୍ତ ପବିତ୍ର ସ୍ଥାନ ଅଟଇ ସେ ସେହୁ
ବଇକୁଣ୍ଠ ତା ସଙ୍ଗରେ ସମାନ ନୁହଁଇ ।
ସେଠାରେ ଯଦ୍ୟପି ତୁମ୍ଭେ ଏକାଗ୍ର ଚିତ୍ତରେ
ପରଂବ୍ରହ୍ମଙ୍କୁ ଚିନ୍ତିବ ଅନ୍ତର ମଧ୍ୟରେ ।
ପାପ ତାପମାନ ଅଙ୍ଗୁ ଦୂର ହୋଇଯିବ
ବ୍ରହ୍ମହତ୍ୟା ଦୋଷମାନ ନଷ୍ଟ ନାଶଯିବ ।
ଏମନ୍ତ କହିଲେ ଯହୁଁ ପ୍ରଭୁ ନିରାକାର
ଭକ୍ତିରେ ବନ୍ଦିଣ ଶିବ ତାହାଙ୍କ ପୟର ।
ମେଲାଣି ମାଗି ସେଠାରୁ ବାହାର ହୋଇଲେ
ଏକାମ୍ର ବନ ମଧ୍ୟରେ ଯାଇ ପ୍ରବେଶିଲେ ।
ସେ ବନର ଶୋଭା ନେତ୍ରେ କରି ନିରୀକ୍ଷଣ
ଅପାର ଆନନ୍ଦ ହେଲେ ପାର୍ବତୀ ରମଣ ।
ଅତି ମନୋହର ଲତା ତଳେ ବିଜେକରି
ପଦ୍ମାସନରେ ବସିଣ ଦେବ ତ୍ରିପୁରାରି ।

ମୂଳ କମଳରେ ଜାନୁ ଲଗାଇ ନୟନ
ନିରାକାରଙ୍କର ନାମ ଜପିଲେ ପୁନଃପୁଣ ।
ହଜାର ହଜାର ବର୍ଷ ଏହିଁ ବିତିଗଲା
ବ୍ରହ୍ମାଙ୍କ ଶିର ତାହାଙ୍କ ହସ୍ତରୁ ଛାଡ଼ିଲା ।
ତାହାଦେଖି ମହାଦେବ ମନେ ତୋଷହୋଇ
ଆହାର ମୈଥୁନ ନିଦ୍ରା ସବୁ ଛାଡ଼ିଦେଇ ।
ଏକାଗ୍ର ଚିତ୍ତରେ ପରଂବ୍ରହ୍ମଙ୍କ ପଦ୍ମରେ
ଭଜନ କରିଲେ ଦିବା ନିଶି ସେ ତାବରେ ।
ଅଙ୍ଗରୁ ସକଳ ପାପ ଦହନ ନିମନ୍ତେ
ତପ ଆରମ୍ଭିଲେ ଏହିଁ ଶିବ ଏକ ଚିତ୍ତେ ।
ଏଣେ ତାରକ ନାମରେ ଏକଇ ଅସୁର
ଦେବତାମାନଙ୍କୁ ଦଣ୍ଡ ଦେଲାକ ଅପାର ।
ବାରବାର ସ୍ୱର୍ଗରେ ଯାଇ ଧାଡ଼ିଦେଲା
ତା ଭୟରେ ସୁରପୁରେ ଚହଳ ପଡ଼ିଲା ।
ସକଳ ଦେବତାମାନେ ଇନ୍ଦ୍ରଙ୍କ ସହିତେ
ବିଧାତାଙ୍କ ସନ୍ନିଧିରେ ମିଳିଲେ ତୁରିତେ ।
ବୋଇଲେ ହେ ପିତାମହ ବ୍ରହ୍ମାଣ୍ଡର ନାଥ
ତୁମ୍ଭେ ନ ରଖିଲେ ଦେବେ ହୋଇଲୁ ଅନାଥ
ଏହି ପ୍ରକାରେ କହି ସବୁ କଥାମାନ
ଗୋଟି ଗୋଟି ଦେବଗଣେ କରିଲେ ବର୍ଣ୍ଣନ ।
ବିଧାତା ବୋଇଲେ ଦେବଗଣଙ୍କୁ ଅନାଇ
ଶିବଙ୍କ ବ୍ୟତୀତ ତାକୁ ନ ପାରିବେ କେହି ।
ଆପଣେ ଶଙ୍କର କେବେହେଁ ମାର ନ ପାରିବେ
ତାହାଙ୍କ ଔରସୁ ପୁତ୍ର ଜନମିଲେ ଭବେ ।
ସେହି ସନ୍ତାନ କରିବ ଦୈତ୍ୟକୁ ସଂହାର
କୁହ କୁହ କେଉଁଠାରେ ଅଛନ୍ତି ଈଶ୍ୱର ।
ଦେବତା ବୋଇଲେ ଶୁଣିଅଛୁ ଆମ୍ଭେମାନେ
ଏକାମ୍ର ବନରେ ତପ କରନ୍ତି ବିଧାନେ ।
ବାହ୍ୟ ଜଗତରେ ଭୁଲେ ନାହିଁ ତାଙ୍କ ଲକ୍ଷ୍ୟ
ପରମ ବ୍ରହ୍ମଙ୍କୁ ଭଜୁଛନ୍ତି ଅହରହ ।
କେପରି ଭାବରେ ତାଙ୍କ ତପ ଭଙ୍ଗହେବ
କିଏ ଯାଇ ଅବା ତାଙ୍କୁ ଏକଥା କହିବ ।
ଶୁଣି ଧାତା ଆଜ୍ଞାଦେଲେ କନ୍ଦର୍ପକୁ ଡାକି
ଏକାମ୍ର ବନକୁ ଯାଅ ରତି ସଙ୍ଗେ ନେଇ ।
ଶିବଙ୍କ ଉପରେ ପୁଷ୍ପଶର ନିକ୍ଷେପିଣ
ତପସ୍ୟା ତାଙ୍କର ଭଙ୍ଗ କର ବେଗେ ଜାଣ ।

ଆଦେଶ ପାଇଣ ରତି କନ୍ଦର୍ପ ସହିତେ
ସୁନ୍ଦର ବସନ୍ତଙ୍କୁ ନେଇଣ ସଙ୍ଗତେ ।
ଏକାମ୍ର ବନ ମଧ୍ୟରେ ପ୍ରବେଶ ହୋଇଲେ
ଶଙ୍କରଙ୍କୁ ଲକ୍ଷ୍ୟକରି ବାଣ ବରଷିଲେ ।
ଏଣେ ବିରହ ଜ୍ୱାଳାରେ ହୋଇଣ ବ୍ୟଥିତା
ମହାଦେବୀ କରୁଥିଲେ ସ୍ୱାମୀଙ୍କର ଚିନ୍ତା ।
କୌଣସି ମତେ ତାହାଙ୍କ ସନ୍ଧାନ ନ ପାଇ
ଧାତାଙ୍କ ସନ୍ନିଧେ ଦେବୀ ପ୍ରବେଶିଲେ ଯାଇ ।
ଅତ୍ୟନ୍ତ ବିନୟ ହୋଇ ବୋଇଲେକ ଗିର
ବୁଝ ବୁଝ ମୋ କଥନ ଆହେ ବେଦବର ।
କେତେ ଦିନ ଆଉ ଏହି ଯୁବା ବୟସରେ
ପତିହୀନା ହୋଇ ବଞ୍ଚି ରହିବି ମହୀରେ ।
ଦୟାକରି ମୋର ଦୁଃଖ ବୁଝନ୍ତୁ ଆପଣ
କେଉଁଠାରେ ପତି ଦେବ ଅଛନ୍ତି ରହିଣ ।
ପାର୍ବତୀଙ୍କ ବ୍ୟାକୁଳତା ଦେଖି ପିତାମହ
ବୋଇଲେ କନ୍ୟା ବ୍ୟଥିତା ହେଉଅଛ କହ ।
ଆମ୍ଭେ ମଧ୍ୟ ବହୁମତେ ସନ୍ଧାନ କରିଣ
ତବ ପତିଙ୍କର ପତା ପାଇଅଛୁ ଜାଣ ।
ବ୍ରହ୍ମହତ୍ୟା ଦୋଷରେ ସେ ହୋଇଣ ବ୍ୟଥିତ
ଏକାମ୍ର ବନରେ ତପେ ହୋଇଛନ୍ତି ରତ ।
ଯେବେ ପତି ଲଭିବାକୁ ତବ ଇଚ୍ଛା ଥାଏ
ତାହେଲେ ବହନ ସେଠାବକୁ ଯାଅ ମାଏ ।
ବର୍ତ୍ତମାନ ବ୍ରହ୍ମଲୟ କରିଣ ଶଙ୍କର
ତପସ୍ୟାରେ ରତଛନ୍ତି ଏକାମ୍ର ବନର ।
ସଂସାର ପ୍ରତି ତାହାଙ୍କ ତିଳେ ଦୃଷ୍ଟି ନାହିଁ
ଶୁଷ୍କ କାଠସମ ଖାଲି ଶରୀର ଅଛଇ ।
ତାଙ୍କୁ ଉଧାରିବା ପାଇଁ ବଜ୍ରର ମନକୁ
କନ୍ଦର୍ପ ରତିଙ୍କୁ ପେଷିଅଛୁଁ ସେଠାବକୁ ।
ଫୁଲଶର ମାରି ସେହୁ ଶଙ୍କରଙ୍କ ମନ
ପରିବର୍ତ୍ତନ କରିବେ ପଠାଇଛୁ ବନ ।
ତୁମ୍ଭେ ମଧ୍ୟ ସେହିଠାରେ ରହିବା ଉଚିତ
ତପସ୍ୟା ଭାଙ୍ଗିଣ ଶିବ ହେଲେ ଉନ୍ମତ ।
ସେତିକି ବେଳରେ ତାଙ୍କ ଅଗ୍ରତରେ ତୁମ୍ଭେ
ଉଭାହୋଇ ବୋଲି ଭାବ କହୁଅଛୁଁ ଆମ୍ଭେ ।
ଧାତାଙ୍କ ବଚନ ଶୁଣି ଦେବୀ ତୋଷଭରେ
ପ୍ରବେଶ ହୋଇଲେ ଯାଇ ଏକାମ୍ର ବନରେ ।

ଶିବଙ୍କ ନିକଟେ ଆଢ଼ୁଆଳରେ ଶଙ୍କରୀ
ରହିଲେ ସ୍ୱାମୀଙ୍କ ଗତି ବିଧି ଲକ୍ଷ୍ୟକରି ।
ଏଣେ କନ୍ଦର୍ପ ସଦଳବଳେ ରତି ସଙ୍ଗ
ଫୁଲଶର ପ୍ରୟୋଗିଲେ ହୋଇଣ ନିର୍ଭୟ ।
ସେ ବେଳରେ ଦୃଶ୍ୟ ଗୋଟି ଅତି ମନୋହର
ବର୍ଣ୍ଣନା କରିବା କିବା ସାଧ୍ୟଅଛି ମୋର ।
ଋତୁପତି କାମବାଣ ବଳନ୍ତେ ଭୁଲାଇ
ମନ୍ଦମନ୍ଦ ମଳୟ ଯେ ଅବିରେ ବହଇ ।
କୋକିଳ କାକଳୀ ଆଉ ମୟୂର ମୟୂରୀ
ନର୍ତ୍ତନ କଲେ ହରଷେ ପକ୍ଷୀ ମେଳକରି ।
ଯେତେ ପଶୁ ପକ୍ଷୀମାନେ ସେ ବଣରେ ଥିଲେ
କାମ ବାଣରେ ସକଳେ ଉନ୍ମାଦ ହୋଇଲେ ।
ଶୁଷ୍କ କାଠମାନ ତହିଁ ହେଲେ ପଲ୍ଲବିତ
ନବୀନ ଡାଳ ପତ୍ରରେ ହୋଇଲେ ଶୋଭିତ ।
ଏହାଦେଖି ମହାଦେବୀ ଆନନ୍ଦିତ ହୋଇ
ପତିଙ୍କ ନିମନ୍ତେ ହେଲେ ବ୍ୟାକୁଳିତ ତହିଁ ।
ରତି ପତିଙ୍କୁ ମନରେ ପ୍ରଶଂସା କରିଲେ
କପରି ଧ୍ୟାନ ଭାଙ୍ଗିବ ସ୍ୱାମୀଙ୍କୁ ଗୁଣିଲେ ।
ଏଣେ କାମ ବାଣାଘାତେ ଶଙ୍କରଙ୍କ ମନ
କ୍ରମେ କ୍ରମେ ତପସ୍ୟାରୁ ହୋଇଲା ଭଗନ ।
ଯେତେ ପରକାର ଚିନ୍ତାକରି ଲୟକଲେ
କୌଣସି ମତେ ସେ ସ୍ଥିର ହୋଇ ନ ପାରିଲେ
ନୟନ ମୁଦି ବ୍ରହ୍ମାଙ୍କୁ କରୁଥିଲେ ଧ୍ୟାନ
ପାର୍ବତୀଙ୍କ ରୂପ ଖାଲି ଦିଶିଲା ନୟନ ।
ଏହାଦେଖି ମହାଦେବ ବ୍ୟଥିତ ହୋଇଲେ
କିଏ ସେ ମୋର ତପସ୍ୟା ଭାଙ୍ଗିଲା ଏ ସ୍ଥଳେ ।
ଏହିପରି ଯାଞ୍ଚି କ୍ରୋଧେ ଚାହାନ୍ତି ଅନାଇଁ
ତୃତୀୟ ନୟନ ତାଙ୍କ ଫିଟିଗଲା ତହିଁ ।
କପାଳ ମଧ୍ୟ ଭାଗରେ ଥିଲା ଯେହି ନେତ୍ର
ଖୋଲି ଯାନ୍ତେ ଭସ୍ମ ହୋଇଗଲା କାମ ଗାତ୍ର ।
ସେତିକି ବେଳରେ ଦେବୀ ହସହସ ହୋଇ
ସ୍ୱାମୀଙ୍କର ଅଗ୍ରତରେ ଦେଖାଦ୍ୟନ୍ତେ ଯାଇ ।
ଆସ ଆସ ପ୍ରିୟ ବୋଲି ପ୍ରିୟାରେ ଶଙ୍କର
କୋଳକୁ ଉଠାଇନେଇ ଦେବୀଙ୍କୁ ସତ୍ୱର ।
ଲଜ୍ୟା ସଙ୍କୋଚ ସମସ୍ତ ମନୁଁ ଭୁଲିଯାଇ
ପ୍ରେମେ ଆବଦ୍ଧ ହୋଇଲେ ପତି ପତ୍ନୀ ଦୁଇ ।

ସହସ୍ର ସହସ୍ର ବହୁବର୍ଷ ବିତିଲା ଯେଠାର
ତଥାପି ଶୃଙ୍ଗାର ଭଙ୍ଗ ନୋହିଲା କାହାର ।
ଯୁଗ ଯୁଗର ବିରହ ବେଦନାରେ ଦୁଇ
ଅତି ବ୍ୟାକୁଳିତ ହୋଇ ରହିଥିଲେ ତହିଁ ।
ତାହା ମେଣ୍ଟାଇବା ପାଇଁ ପାଞ୍ଚଶ ମନର
ନାନାବିଧ କାମ ବନ୍ଧରେ କଲେ ଶୃଙ୍ଗାର ।
ଏହା ଦେଖି ଦେବତାଏ ବ୍ୟାକୁଳ ହୋଇଲେ
ସରସ୍ୱତୀଙ୍କୁ ରାଜନୀ ଆଦେଶ କଲେ ।
ଯାଅ ମାତ ଏହିକ୍ଷଣି ଏକାମ୍ର ବନ
ଶଙ୍କର ପାର୍ବତୀ କ୍ରୀଡ଼ା କରନ୍ତି ଯେ ସ୍ଥାନ ।
କପଟ ଭାବେ ବନ୍ଧନ ଛେଦିବେ ପୀରତି
ଦେବତାଙ୍କ ହିତ ଲାଗି କର ଏହା ସତୀ ।
ଏହା ଶୁଣି ସରସ୍ୱତୀ ଆନନ୍ଦେ ଚଳିଲେ
ଶଙ୍କର ପାର୍ବତୀ କ୍ରୀଡ଼ା ସ୍ଥାନରେ ମିଳିଲେ ।
ତାହାଙ୍କ କଣ୍ଠରେ ଯାଇ ବସନ୍ତେ ମାତହିଁ
କ୍ରୀଡ଼ା ଛେଦିବାକୁ ଆଗ୍ରହରେ ହେଲେ ଦୁଇ ।
ରତି ଶେଷେ ବ୍ରହ୍ମବୀର୍ଯ୍ୟ ହୁଅନ୍ତେ ସ୍ଖଳିତ
ଉପୁରେ ସେଠାରୁ ଘୁଞ୍ଚିଗଲେ ମହାମାନ୍ତ ।

ଏହା ଦେଖି ମହାଦେବ କରନ୍ତେ ବାରଣ
ଶିବାଣୀ ବୋଇଲେ ନାହିଁ ଶକତି ମୋ ଜାଣ ।
ଏ ଅକ୍ଷୟ ବ୍ରହ୍ମବୀର୍ଯ୍ୟ ବହି ନ ପାରିବି
କହି ନତମୁଖେ ଉଭାହେଲେ ତହିଁ ଦେବୀ ।
ପାର୍ବତୀ ହଟି ଯାଆନ୍ତେ ଦେଖି ଭୋଳାନାଥ
ହସ୍ତରେ ଧାରଣ କଲେ ସେ ସ୍ଖଳିତ ରେତ ।
ବସୁଧା ବୋଇଲା ପ୍ରଭୁ ଦେବ ସେ ରେତକୁ
ନ ବହିବି ଫିଙ୍ଗି ଦେବେ ମୋହର ବକ୍ଷକୁ ।
କୌଣସି ପ୍ରକାର ତାହା ସହି ନ ପାରିବି ।
ବହୁଥିବା ଧରଣୀକୁ ଶିରୁ ଗ୍ରାହ୍ୟ ଦେବ ।
ଏହି ପ୍ରକାରେ ହୋଇନ୍ତେ ମାତ ବସୁମତୀ
ଶଙ୍କର ବୋଇଲେ ଚିନ୍ତା ନ କର ମା ସତୀ ।
ଏହାଦ୍ୱାରା ବ୍ରହ୍ମକାର୍ଯ୍ୟ ସାଧନ ହୋଇବ
ଦେବତାମାନଙ୍କ ମନ୍ଦ ନ ହୋଇବ ।
ଏତିକି କହି ଶିବ ପବନକୁ ଡାକି
ଟେକି ଦେଲେ ସେହି ବିନ୍ଦୁକୁ ହରଷିତ ହୋଇ ।
ପବନ ଘେନିଣ ତାହା ଆନନ୍ଦେ ଚଳିଲା
ଅଧମ ହେମମୋହନ ଗୀତରେ ଭଣିଲା ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ କାର୍ତ୍ତିକଙ୍କ ଜନ୍ମ ପୂର୍ବର ନାମ ପ୍ରଥମୋଽଧ୍ୟାୟ

## ଦ୍ୱିତୀୟ ଅଧ୍ୟାୟ

### ଶିବଙ୍କ ନିକଟରେ ପାର୍ବତୀଙ୍କର ପ୍ରାର୍ଥନା ଓ ଦେବଗଣଙ୍କର ଏକାନ୍ତରେ କଥୋପକଥନ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ ।
ନାରଦଙ୍କୁ ବୋଇଲେକ ଋଷି ନାରାୟଣ
ଶୁଣ ଏହାପରେ ଯାହା ହୋଇଲା ଘଟଣ ।
ରତି ଶେଷ ଉଭା ହୋନ୍ତେ ପ୍ରଭୁ ଯୋଗେଶ୍ୱର
ଅମରେ ନମିଲେ ଆସି ତାହାଙ୍କ ପୟର ।
ଦେଖିଣ ତାହାଙ୍କୁ ଆଦେଶ ଦେଲେ ଭୋଳାନାଥ
ବହନ ଏଠାରୁ ତୁରନ୍ତେ ଚଳାଅ ସମସ୍ତ ।
ନୋହିଲେ ଦେବୀ ଅତ୍ୟନ୍ତ କୋପିତ ହୋଇବେ
ନାନା ମତେ ଜିଜ୍ଞାସିଣ ବଚନ କହିବେ ।
ଏଣୁ ମୋର କଥାମାନ ସକଳ ଅମରେ
ଚଳାଇ ଯାଅ ଆସିବ ଯଥା ସମୟରେ ।

ଶିବଙ୍କ ଆଦେଶ ମାନେ ସର୍ବ ଦେବଗଣେ
ପଳାଇଗଲେ ତତକ୍ଷଣେ ଭୟେ ଏଣେ ତେଣେ ।
ପାର୍ବତୀଙ୍କ ହୃଦେ ସରସ୍ୱତୀ ବସିଥିଲେ
ପଳାଇ ଯିବାନ୍ତ ଦେଖି ବ୍ୟଥିତା ହୋଇଲେ ।
ସ୍ୱାମୀଙ୍କ ବଦନ ଚାହିଁ କରିଣ କ୍ରନ୍ଦନ
ବୋଇଲେ ମୋହର ଭାଗ୍ୟ ଅଟେ ଅତି ହୀନ ।
ଦେବତାମାନେ ନାନାବିଧ ଚକ୍ରାନ୍ତ ଉଆଇ
ମୋ ମନ ହରିଲେ ସରସ୍ୱତୀଙ୍କୁ ପଠାଇ ।
ତେଣୁ କ୍ରୀଡ଼ା ଛାଡ଼ି ମୁହିଁ ହୋଇଲି ଅନ୍ତର
ରମଣୀ ଜନମ ହେବା ଅଟେ ମୋ ଅସାର ।
ଏହିପରି କହି ଦେବୀ କ୍ରନ୍ଦନ କରିଲେ
ବହୁ ପ୍ରକାରେ ତାଙ୍କୁ ଶିବ ବୁଝାଇଲେ ।

ବୋଇଲେ ଯାହା ଦେବାର ଯାଇଅଛୁ ହୋଇ
ଆଉ ଭାବନା କରିବା ଦରକାର ନାହିଁ ।
ଯେବଣ ଠାବରେ ପୁତ୍ର ଉତ୍ପନ୍ନ ହୋଇବ
ନିଶ୍ଚୟ ତେବେ ସଙ୍କଟେ ସେ ଫେରି ଆସିବ ।
ଏହା ଶୁଣି ମହାଦେବୀ ହରଙ୍କୁ ଅନାଇ
ବୋଇଲେ ତୁମେ ଯେ କିଛି ରହିଅଛ କାହିଁ ।
ତୁମ୍ଭ ପ୍ରଭୁ ଅପୂର୍ବିକ ହୋଇଛୁ କାପର ।
ପାର ହୋଇବାକୁଁ ମୁହିଁ ଯେଶୁ ହୋଇ ନାରୀ ।
ଯେତେବେଳେ କାମ ରସେ ହୃଦୟେ ହେଲି
ମନ ମଧ୍ୟରେ ଅନେକ କଥା ଭାବିଥିଲି ।
ଦେବତାମାନେ ଯେ ସବୁ କଲେ ଖଣ୍ଡନ
ଜାଣି ଜାଣି ରତିରସେ ଘଟାଇଲେ ବିଘ୍ନ ।
ତେଣୁ ଅଭିଶାପ ତାଙ୍କୁ ଦେଉଅଛୁ ମୁହିଁ
ସବୁଦିନେ ରହିଥାନ୍ତୁ ହତବୀର୍ଯ୍ୟ ହୋଇ ।
ଏହା କହି ପତିଙ୍କର ପାଦତଳେ ପଡ଼ି
ବୋଇଲେ ବାରେ ମାହର ତୁମ୍ଭ କାନ୍ତ ଫେଡ଼ି ।
ଯେତେ କ ମୋ ନାରୀ ଜନ୍ମ ସାର୍ଥକ ହୋଇବ
ମାଆ ବୋଲି ଡାକ ମୋର କର୍ଣ୍ଣରେ ବାଜିବ ।
କାନ୍ତ ପାଖେ କାମିନୀର ମନ କଥାମାନ
ବ୍ୟକ୍ତ କରିବାରେ ଦୋଷ ନାହିଁ ତିଳେ ଜାଣ ।
ତୁମ୍ଭେ ମୋ ଜୀବନ ଧନ ଆବର ସର୍ବସ୍ୱ
ତୁମ୍ଭ ଦୟାବହ୍ନି ଦାସୀ ଆଗେ ପ୍ରାଣେଶ୍ୱର ।
ଶିବ ବୋଇଲେ ବ୍ୟଥିତ ନ ହୁଅ ସୁନ୍ଦରୀ
ଉତ୍ତମ ସନ୍ତାନ ଜାତ ହୋଇବ ତୁମ୍ଭର ।
ଆଉ ଅଳ୍ପଦିନ ଦେବୀ ରହ ଧୈର୍ଯ୍ୟ ଧରି
କୋଳେ ଧରିବ କୁମର ଆନନ୍ଦରେ ଗୋରୀ ।
ଯେମନ୍ତ ପ୍ରକାରେ ତାହା ହୋଇବ ସମ୍ଭବ
ଯଥା ସମୟରେ ମୁହିଁ ବତାଇବ ସବ ।
କହିଣ ଶଙ୍କର ତହିଁ ମଉନ ହୋଇଲେ ।
ଅଧମ କ୍ଷେତ୍ର ମୋହନ ଗୀତେ ଭାବ ବୋଲେ

—✱—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶିବ ପାର୍ବତୀଙ୍କ କଥୋପକଥନେ
ନାମ ଦ୍ୱିତୀୟୋଽଧ୍ୟାୟଃ

# ତୃତୀୟ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ ବ୍ରତ ସମ୍ବନ୍ଧେ ହର ପାର୍ବତୀଙ୍କର କଥୋପକଥନ ।

ଶୁଣନ୍ତୁ ବିବୁଧଜନେ ମନକର୍ଣ୍ଣ ଦେଇ
ନାରାୟଣ ବୋଇଲେକ ନାରଦଙ୍କୁ ଚାହିଁ ।
ଦେବ ତ୍ରିଲୋଚନ ଚାହିଁ ପାର୍ବତୀ ବଦନ
ବୋଇଲେ ସଜନି କେବେହେଁ ନ ହୁଅ ବିମନ ।
ଯେମନ୍ତେ ତୁମ୍ଭର କାର୍ଯ୍ୟ ସଫଳ ହୋଇବ
ବତାଇ ଦେବା ତାହାର ଉପାୟ ସରବ ।
ଚେଷ୍ଟା କଲେ କେଉଁ କାର୍ଯ୍ୟ ଅସାଧ୍ୟ ନୁହଇ
ସକଳ କର୍ମରେ ଯେହୁ ଅଗ୍ରଣୀ ହୁଅଇ ।
ବାଞ୍ଛିତ ଦ୍ରବ୍ୟ ଦାୟକ ସୁମଙ୍ଗଳକର
ଉପାୟ କହୁଛି ଏବେ ଶୁଣ ହୋଇ ସ୍ଥିର ।
ପୁଣ୍ୟକ ନାମ ବ୍ରତକୁ ବର୍ଷେ ପର୍ଯ୍ୟନ୍ତେ
ଆଜଠାରୁ କର ତୁମ୍ଭେ ଆନନ୍ଦିତ ଚିତ୍ତେ ।
ଶ୍ରୀହରିଙ୍କ ଉପାସନା ହୁଅଇ ତହିଁରେ
ପୂଜା ସ୍ତୁତି ଆଦି କରି ବିବିଧ ପ୍ରକାରେ ।
ମହାକଠୋର ବୀଜ ସେ ଇଚ୍ଛା କଳ୍ପତରୁ
ଧର୍ମ ଅର୍ଥ କାମ ମୋକ୍ଷ ମିଳଇ ତହିଁରୁ ।
ନଦୀ ମଧ୍ୟେ ଶ୍ରେଷ୍ଠ ଅଟେ ଗଙ୍ଗା ଯେଉଁପରି
ଦେବଙ୍କ ମଧ୍ୟରେ ଯଥା ଅଟନ୍ତି ଶ୍ରୀହରି ।
ବୈଷ୍ଣବଗଣରେ ମୁହିଁ ଅଟେ ଯେହ୍ନେ ସାର
ଦେବୀଙ୍କ ମଧ୍ୟରେ ଖ୍ୟାତ ଯେ ରୂପେ ତୁମ୍ଭର ।
ବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ ଯେଉଁରୂପେ ଶ୍ରେଷ୍ଠ
ପୁଷ୍କର ତୀର୍ଥ ଯେ ସବୁ ତୀର୍ଥରେ ଉତ୍କୃଷ୍ଟ ।
ପାରିଜାତ ପୁଷ୍ପ ଯେହ୍ନେ ସକଳ ପୁଷ୍ପରେ
ଶ୍ରେଷ୍ଠ ବୋଲାଏ ତୁଳସୀ ପତ୍ରମାନଙ୍କରେ ।
ପୁଣ୍ୟପ୍ରଦ ତିଥି ମଧ୍ୟେ ଶୁକ୍ଳ ଏକାଦଶୀ
ବାରମାନଙ୍କରେ ରବିବାରକୁ ବିଶେଷି ।
ମାର୍ଗଶିର ଯେହ୍ନେ ସବୁ ମାସରେ ଉତ୍ତମ
ଋତୁଗଣେ ନୁହଇ କେ ବସନ୍ତର ସମ ।

ବ୍ରତମାନଙ୍କ ମଧ୍ୟରେ ଶ୍ରେଷ୍ଠ ଧର୍ମ୍ମବ୍ରର
ଯୁଗମଧ୍ୟେ କୃତଯୁଗ ଅଟେ ସେ ପ୍ରକାର ।
ପୂଜ୍ୟମାନଙ୍କ ମଧ୍ୟରେ ବିଦ୍ୟାଦାତା ଗୁରୁ
ଅଧିକ ବୋଲନ୍ତି ଯେହ୍ନେ ସମସ୍ତଙ୍କଠାରୁ ।
ଗୁରୁଙ୍କ ମଧ୍ୟେ ଜନନୀ ପୂଜ୍ୟ ସେ ପ୍ରକାରେ
ଅଧିକେ ଯେରୂପେ ପତ୍ନୀ ବିଶ୍ୱସ୍ତ ମଧ୍ୟରେ ।
ଧନ ମଧ୍ୟରେ ଉତ୍ତମ ଅଟେ ଯେହ୍ନେ ରତ୍ନ
ଯେମନ୍ତେ ତାହାଙ୍କୁ ସର୍ବେ କରନ୍ତି ପ୍ରଯତ୍ନ ।
ପ୍ରିୟଗଣ ମଧ୍ୟେ ପତି ଯେରୂପେ ଅଧିକ
ଯେରୂପେ ପୁ. ସମସ୍ତ ବନ୍ଧୁଠାରୁ ଠିକ ।
ବୃକ୍ଷମାନଙ୍କ ମଧ୍ୟରେ କଳ୍ପ ତରୁବର
ଫଳମାନଙ୍କରେ ଚୂତଫଳ ଯେହ୍ନେ ସାର ।
ପ୍ରତ୍ୟେକ ବରଷ ମଧ୍ୟେ ଭାରତ ବରଷ
କାନନ ମଧ୍ୟରେ ବୃନ୍ଦାବନ ଏକ ଶେଷ ।
ସ୍ତ୍ରୀମାନଙ୍କରେ ଶତରୂପା ଯେଉଁପରି
ପୁରୀ ମାନଙ୍କରେ ଯଥା ବାରାଣସୀ ପୁରୀ ।
ସକଳ ତେଜ ମଧ୍ୟରେ ଯାନ ଅଧୀଶ୍ୱର
ସୁଖକର ଦ୍ରବ୍ୟ ମଧ୍ୟେ ଯେହ୍ନେ ଶଶଧର ।
ସୁନ୍ଦର ଲୋକ ମଧ୍ୟରେ ମକରକେତନ
ଶାସ୍ତ୍ରଗଣେ ଯଥା ବେଦଶାସ୍ତ୍ର ଅଟେ ଜାଣ ।
ସିଦ୍ଧ ପୁରୁଷ ଗଣରେ କପିଳ ମହର୍ଷି
କପିଗଣେ ହନୁମାନେ ପବନଙ୍କ ଶିଷି ।
ପ୍ରସିଦ୍ଧ କ୍ଷେତ୍ରମାନଙ୍କେ ଦ୍ୱିଜଙ୍କର ମୁଖ
ଯଶଗଣେ ଯେହ୍ନେ ବିଦ୍ୟା ଅଟଇଟି ମୁଖ୍ୟ ।
ବ୍ୟାପକ ମଧ୍ୟେ ଆକାଶ ଅଙ୍ଗରେ ଲୋଚନ
ବିଭବ ମଧ୍ୟରେ ଶ୍ରେଷ୍ଠ ହରିକଥା ଗାନ ।
ସମସ୍ତ ସୁଖରେ ଯେହ୍ନେ ଶ୍ରୀକୃଷ୍ଣ ଶନ୍ତନ
ସ୍ମରଣ ମଧ୍ୟରେ ପୁନ ଅଙ୍ଗ ସ୍ମରଣନ ।
ହିଂସ୍ରଗଣେ ଖଳଲୋକ ଅଟଇ ଯେପରି
ପାପ ମଧ୍ୟେ ମିଥ୍ୟା ପାପୀଗଣେ ବ୍ୟଭିଚାରୀ ।
ପୁଣ୍ୟ ମଧ୍ୟେ ସତ୍ୟ ତପ ମଧ୍ୟେ ହରିସେବା
ଗୋରସରେ ଯେଉଁରୂପେ ଘୃତ ପାଏ ଶୋଭା ।
ତପସ୍ୱୀମାନଙ୍କ ମଧ୍ୟେ ଯେହ୍ନେ ବେଦବର
ଭକ୍ଷଦ୍ରବ୍ୟରେ ଅମୃତ ଅଟେ ଯେହ୍ନେ ସାର ।
ବିବିଧ ଶସ୍ୟରେ ଧାନ୍ୟ ପବିତ୍ରରେ ଜଳ
ବିଶୁଦ୍ଧ କରଣେ ଶ୍ରେଷ୍ଠ ଯେରୂପେ ଅନଳ ।

ତେଜସ୍କର ଧାତୁଗଣେ ସୁବର୍ଣ୍ଣ ଯେରୂପ
ମିଷ୍ଟ ପଦାର୍ଥ ମଧ୍ୟରେ ମଧୁର ଆଳାପ ।
ପକ୍ଷୀଗଣେ ବୈନତେୟ ଗଜେ ଐରାବତ
ଯୋଗୀଗଣରେ କୁମାର ପ୍ରସିଦ୍ଧ ଯେମନ୍ତ ।
ଦେବର୍ଷିମାନଙ୍କ ମଧ୍ୟେ ନାରଦ ତପସ୍ୱୀ
ଗନ୍ଧର୍ବରେ ଯେହ୍ନେ ଚିତ୍ରରଥଙ୍କୁ ପ୍ରଶଂସି ।
ବୁଦ୍ଧିମାନ ମଧ୍ୟେ ଜୀବ କବିଗଣେ ଶୁକ୍ର
କାବ୍ୟ ମଧ୍ୟରେ ବିବିଧ ପୁରାଣର ବାକ୍ୟ ।
ଜଳାଶୟମାନଙ୍କରେ ସମୁଦ୍ର ଯେପରି
କ୍ଷମାବନ୍ତ ମଧ୍ୟେ ଶ୍ରେଷ୍ଠ ଯେହ୍ନେ ବସୁନ୍ଧରା ।
ଇଷ୍ଟ ଦ୍ରବ୍ୟରେ ମୁକତି ଯେରୂପେ ଉତ୍କୃଷ୍ଟ
ସମ୍ପଦ ମଧ୍ୟରେ ହରିଭକ୍ତି ଯେହ୍ନେ ଶ୍ରେଷ୍ଠ ।
ପବିତ୍ରଜନେ ବୈଷ୍ଣବ ବର୍ଣ୍ଣରେ ପ୍ରଣବ
ସକଳ ମନ୍ତ୍ର ମଧ୍ୟରେ ମନ୍ତ୍ର ବଇଷ୍ଣବ ।
ବୀଜ ମଧ୍ୟରେ ପ୍ରକୃତି ଜ୍ଞାନେ ସରସ୍ୱତୀ
ପ୍ରଶସ୍ତ ଅଟନ୍ତି ଯଥା ଛନ୍ଦରେ ଗାୟତ୍ରୀ ।
ଯକ୍ଷମାନଙ୍କ ମଧ୍ୟରେ ଯେସନେ କୁବେର
ବାସୁକୀ ଅଟନ୍ତି ଶ୍ରେଷ୍ଠ ସର୍ପମାନଙ୍କର ।
ଶଇଲ ଗଣରେ ଯଥା ଭୁମ୍ବର ଜନକ
ଗାଭୀଙ୍କ ମଧ୍ୟେ ସୁରଭି ଯେଉଁରୂପେ ଠିକ ।
ବେଦଗଣେ ସାମବେଦ ତୃଣମଧ୍ୟେ କୁଶ
ସୁଖର ମଧ୍ୟରେ ଲକ୍ଷ୍ମୀ ଅଧିକ ଅବଶ୍ୟ ।
ଶୀଘ୍ରଗତି ବସ୍ତୁରେ ମନଠାରୁ ବଳ
ଯେରୂପେ ଅଧିକ କିଛି ନାହିଁ କହିଦେଲ ।
ଅକ୍ଷର ଶ୍ରେଣୀରେ ଶ୍ରେଷ୍ଠ ମକାର ଯେସନ
ହିତକାରୀ ମଧ୍ୟରେ ସେ ପିତା ଶ୍ରେଷ୍ଠ ଜାଣ ।
ଚତୁଷ୍ପଦ ଜନ୍ତୁଗଣେ ପ୍ରସିଦ୍ଧ କେଶରୀ
ଜୀବ ମଧ୍ୟରେ ମନୁଷ୍ୟ ଉତ୍ତମ ଯେପରି ।
ଇନ୍ଦ୍ରିୟ ମଧ୍ୟରେ ମନ ଯେରୂପେ ପ୍ରଧାନ
ରୋଗ ମଧ୍ୟରେ ମନ୍ଦାଗ୍ନି ଅଧିକଟି ଜାଣ ।
ବଳ ମଧ୍ୟରେ ଶକତି ଅତ୍ୟନ୍ତ ପ୍ରବଳ
ବଳବନ୍ତ ମଧ୍ୟେ ବେଗ ପ୍ରଶଂସ୍ୟ କେବଳ ।
ସ୍ଥୂଳ ମଧ୍ୟରେ ବିରାଟ ସୂକ୍ଷ୍ମ ପରମାଣୁ
ଉତ୍କୃଷ୍ଟ ଅଟନ୍ତି ଅତି ଅଧିକ ସେ ସେଣୁ ।
ଦେବଙ୍କ ମଧ୍ୟରେ ଇନ୍ଦ୍ର ଦୈତ୍ୟଗଣେ ବଳ
ପ୍ରହ୍ଲାଦ ଯେରୂପେ ସାଧୁମାନଙ୍କ ମଣ୍ଡଳ ।

ଦୀପାବଳୀରେ ଦୀପ୍ତି ଯେସନ୍ତ ସୁନ୍ଦରରେ
ଚକ୍ର ମଧ୍ୟରେ ଯେରୂପେ ସୁଦର୍ଶନ ଧାର ।
ମନୁଷ୍ୟ ମଧ୍ୟେ ଶ୍ରୀରାମ ଉତ୍ତମ ଯେସନ୍ତ
ଧନୁର୍ଦ୍ଧର ମଧ୍ୟେ ଯୋଦ୍ଧା ସୁମିନାଙ୍କ ସୁତ ।
ନଈମାନ ଜଳର ଧାର ଯେରୂପେ ଶ୍ରୀପଦ
ଯେରୂପେ ପୁଣ୍ୟକ ବ୍ରତ ମଧ୍ୟେ ଗୋ ସୁନ୍ଦରୀ ।
ଦୁର୍ଲ୍ଲଭ ପବିତ୍ର ଏହି ବ୍ରତ ଏବେ ତୁମ୍ଭେ
କର ଆଜଠାରୁ ଉପଦେଶ ଦେଲୁଁ ଆମ୍ଭେ ।
ଏ ବ୍ରତଯୋଗରେ ଅବଶ୍ୟ କୁମର ପାଇବ
ତିନିଲୋକରେ ପ୍ରଶଂସାଯୋଗ୍ୟ ସେ ହୋଇବ ।
ଶ୍ରୀକୃଷ୍ଣ ଅଟନ୍ତି ଏଥି ଆରାଧ୍ୟ ଦେବତା
କାର୍ଯ୍ୟସିଦ୍ଧି କରିବେ ସେ ନାହିଁ କିଛି ଚିନ୍ତା ।
ଯାହାଙ୍କର ପାଦ ସେବି ଭକତ ନିକର
କରୁଛନ୍ତି କୋଟି କୋଟି ପୁରୁଷ ଉଦ୍ଧାର ।
ହରିମନ୍ତ୍ର ଯେଉଁ ନର ସେବା ଯେ କରଇ
ଭାରତେ ତାହାର ଜନ୍ମ ସଫଳ ଅଟଇ ।
ନିଜଲୋକଙ୍କୁ ଉଦ୍ଧାରି ନର ସେ ନିଶ୍ଚିତ
ବୈକୁଣ୍ଠ ପୁରକୁ ଅନ୍ତକାଳେ ହୁଏ ଗତ ।
ଶ୍ରୀକୃଷ୍ଣ ମାଧବ ହୋଇ ରହେ ଯେଉଁଠାରେ
ସନ୍ଦେହ ଅଛି ବୋଲିଣ ନ ଭାବ ଏଥିରେ ।
ହରିମନ୍ତ୍ର ନିମନ୍ତେ ତ ଚଉଦ ଭୁବନ
ହରିମନ୍ତ୍ରେ ଚଳାଚଳ ଗମନ ପବନ ।
ସେଥି ସକାଶୁ ବୋଲୁଅଛି ଆଗୋ ଗିରିସୁତେ
ଦୁର୍ଲ୍ଲଭ ଶ୍ରୀହରିମନ୍ତ୍ର ଦେନ ତୋର ହିତେ ।
ଜପକର ତାକୁ ମନେ ଭକ୍ତିଭାବ ବହି
ସମସ୍ତ କାମନା ସିଦ୍ଧ ହେବ କହୁଥାଇ ।
ଏମନ୍ତ କହି ଶଙ୍କର ପାର୍ବତୀଙ୍କ ଆଗେ
ଦେଲେ ତାଙ୍କୁ ଗଲେ ଗଙ୍ଗାତଟକୁ ସରାଗେ ।
ଯେଉଁଠାରେ ଶ୍ରୀହରିଙ୍କ ମନ୍ତ୍ର ସ୍ତୋତ୍ର ଆଦି
ଆବର ପୂଜା ବିଧିକୁ ଦେଲେ ସେ ସମାଧି ।
ଆମୂଳ କାରଣ ସବୁ ବିଷୟ କହିଲେ
ତାହାଙ୍କ ପାଦ ସୁମରି କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶ୍ରୀକୃଷ୍ଣଙ୍କ ବ୍ରତ ସମ୍ବନ୍ଧେ ହର ପାର୍ବତୀଙ୍କର କଥୋପକଥନେ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

## ଶିବଙ୍କଠାରୁ ପାର୍ବତୀଙ୍କର ପୁଣ୍ୟବ୍ରତ ବିଧି ଶ୍ରବଣ

ଏଥୁଅନ୍ତେ ଆନ ଗାଥା ଶୁଣ ଦେଇ ମନ
ଗଣେଶଖଣ୍ଡ ଚରିତ ଅଟଇ ମହାନ ।
ନାରଦଙ୍କ ଅଗ୍ରତରେ ବଖାଣିଲେ ମୁନି
ଶିବଙ୍କ ବଚନ ଶୁଣି ପର୍ବତ ଦୁଲଣୀ ।
ବୋଇଲେ ହେ ନାଥ ଯାହା ମୋହର ଅଗ୍ରତରେ
ବର୍ଣ୍ଣନା କଲେଲୁ ବ୍ରତ ବିଧି ସଂକ୍ଷେପରେ ।
ତାହା ବିସ୍ତାର ଭାବରେ କରନ୍ତୁ ବର୍ଣ୍ଣନ
ଶୁଣିବା ନିମନ୍ତେ ମୋର ବଳାଅଛି ମନ ।
ବ୍ରତ ପାଳନରେ କେଉଁ ଦ୍ରବ୍ୟ ଲୋଡ଼ା ହୁଏ
ତାହା ବର୍ଣ୍ଣନା କରିଣ କୁହ ଦେବରାଏ ।
ପୁଣି କେବଣ ସମୟେ ପଡ଼ଇ ସେ ବ୍ରତ
ତହିଁରୁ କେବଣ ଫଳ ଜନେ ହୋନ୍ତି ପ୍ରାପ୍ତ ।
ଏ ସମସ୍ତ କଥା ମୋତେ ବିଶଦ ଭାବରେ
ବତାଇଣ କହ ପ୍ରଭୁ ଦୟାକର ବାରେ ।
ସେ କର୍ମକୁ ଉପଯୁକ୍ତ ଯେଉଁ ପୁରୋହିତ
ହୋଇବ ଅଣାଇ ତାକୁ କରାଅ ନିଯୁକ୍ତ ।
କାମିନୀର ହର୍ତ୍ତା କର୍ତ୍ତା ଅଟଇ ବଲ୍ଲଭ
ବଲ୍ଲଭ ଯୋଗରେ ସ୍ତ୍ରୀଏ ଲଭେ ଶୁଭାଶୁଭ ।
ବାଲ୍ୟ ସମୟରେ ପିତା ଅଟନ୍ତି ରକ୍ଷକ
ପତି ଅଟନ୍ତି ଯୌବନ ସମୟେ ପାଳକ ।
ଶେଷ ଅବସ୍ଥାରେ ପୁତ୍ର କରଇ ରକ୍ଷଣ
ଏରୂପେ ତିନି ଅବସ୍ଥା ସ୍ତ୍ରୀଙ୍କର ଜାଣ ।
କନ୍ୟା ସମୟରେ ପିତା କରନ୍ତି ପାଳନ
ଦୁହିତାକୁ କରି ସ୍ୱାମୀହସ୍ତେ ସମର୍ପଣ ।
ନିଶ୍ଚିନ୍ତ ହୋଇ ଆପଣା ଭବନେ ରହନ୍ତି
ଯଉବନ କାଳେ ରକ୍ଷା କଲାପରେ ପତି ।
ଆପଣା ପୁତ୍ର ପାଖରେ ସମର୍ପଣ କରି
ନିବୃତ୍ତ ହୁଅନ୍ତି ମନେ ସ୍ଥିରଭାବ ଧରି ।

ଯେଉଁ କାମିନୀର ପିତା ପତି ପୁତ୍ର ଥାନ୍ତି
ସଂସାର ମଧ୍ୟରେ ସେହି ଅଟେ ଭାଗ୍ୟବତୀ ।
ଜଣେ ଅବା ଦୁଇଜଣ ଉଣା ହୋଇଥିଲେ
ମଧ୍ୟମା ବୋଲି ତାହାକୁ ବୋଲନ୍ତି ଭଲେ ।
ଯାହାର କେହି ନ ଥାନ୍ତି ସେ ଅଟେ ଅଧମା
ନ ଥାଏ ତାହାର ଦୁଃଖ କଷ୍ଟର ସେ ସୀମା ।
ଏ ତିନି ଜଣଙ୍କ ମଧ୍ୟେ ଜଣକ ପାଖରେ
ରହିଥିଲେ ନାରୀ ଧନ୍ୟ ହୁଅଇ ଲୋକରେ ।
ଅନ୍ୟ ପାଖରେ ରହିଲେ ହୁଅଇ ନିନ୍ଦିତା
ବେଦଶାସ୍ତ୍ରେ ବିବେଚିତ ହୋଇଛି ଏ କଥା ।
ଆପଣ ତ ଅଟ ସର୍ବ ଆତ୍ମା ସର୍ବ ସାକ୍ଷୀ
ପ୍ରସନ୍ନ ହୁଅ ମୋହର ଏ ଦୁର୍ଦ୍ଦଶା ଦେଖି ।
ଉତ୍ତମ କୁମର ମୋତେ ଦିଅ ଦୟାବହି
ଯାହାଯୋଗେ ସୁଖଲାଭ କରିବଇଁ ମୁହିଁ ।
ତୁମ୍ଭେ ସର୍ବର ହୃଦର କଥା ଜାଣିପାର
ଅଧିକ ମାନକ ତୁମ୍ଭ ଆଗେ କହିବାର ।
ଏରୂପେ କହି ପାର୍ବତୀ ହରିଙ୍କ ପାଖରେ
ବସିଲେ ମଉନ ଭାବ ବହି ସେ କାଳରେ ।
ତାହା ଦେଖିଣ ଈଶ୍ୱର ଦୟାଯୁକ୍ତ ହୋଇ
କହିଲେ ପ୍ରିୟାଙ୍କ ମୁଖ-କମଳକୁ ଚାହିଁ ।
ବୋଇଲେ ଗୋ ଦେବୀ ବ୍ରତ ବିଧାନକୁ ଶୁଣ
ଆବର ସେ ବ୍ରତ ସ୍ତୋତ୍ର ଫଳ ଆଦି ପୁଣ ।
ବିଧି ଅନୁସାରେ ଫଳ ପୁଷ୍ପ ଆଦିକରି
ସଂଗ୍ରହ କରିବ ଉପଯୋଗକୁ ବିଚାରି ।
କର୍ମଠ ଶତେ ଦ୍ୱିଜଙ୍କୁ ଡକାଇ ଆଣିବ
ତାଙ୍କ ହସ୍ତେ ଯଥାଯୁକ୍ତ କାର୍ଯ୍ୟ କରାଇବ ।
ଯଜ୍ଞ ଆବଶ୍ୟକ ଦ୍ରବ୍ୟ ଅଣାଇବା ପାଇଁ
ନିଯୁକ୍ତ କରିବେ ଶତେ ଦାସ ଆଣି ତହିଁ ।
ଆବର ଶତେକ ଦାସୀ ଲକ୍ଷ୍ୟେ ସ୍ତ୍ରୀଗଣଙ୍କ
ଆଗନ୍ତୁକ ସେବାପାଏ କରିବ ନିଯୁକ୍ତ ।
ସକଳ ବ୍ରତ ବିଧାନ ଜାଣନ୍ତି ଯେ ଲୋକ
ତାହାକୁ ଆଣି ନିଯୁକ୍ତ କରିବ [illegible] ।
ଏହିମତ ବ୍ରତବିଧି ସମାପନ ଯାଏ
ନାନାବିଧ ଆୟୋଜନ କରିବାକୁ ହୁଏ ।
ନବେଲକ୍ଷ ଜ୍ଞାନଶୀଳ ସୁବିଜ୍ଞ ପ୍ରବର
ଅଟନ୍ତି ଯେ ମୁନିଶ୍ରେଷ୍ଠ ସନତ କୁମାର ।
ଏମାନଙ୍କ ସମାନ ଅନ୍ୟେ ନାହାନ୍ତି ଏ ଭବ
ତାଙ୍କ ଦ୍ୱାରେ ପୁରୋହିତ କରି ଅଣାଇବ ।
ସକଳ ବ୍ରତ ବିଧାନ ତାଙ୍କର ହସ୍ତରେ
କରାଇଲେ ଶେଷ ହେବ ନିର୍ବିଘ୍ନ ପ୍ରକାରେ ।
ମାଘ ଶୁକ୍ଳ ତ୍ରୟୋଦଶୀ ତିଥିରେ ସେ ବ୍ରତ
ଆରମ୍ଭିବ ଶୁଦ୍ଧ ମତି କରି ନିଜଚିତ୍ତ ।
ପୂର୍ବ ଦିବସରେ ଉପବାସ କରିଥିବ
ଅରୁଣ ଉଦୟ ପୂର୍ବେ ଶଯ୍ୟାକୁ ଛାଡ଼ିବ ।
ଶୁଦ୍ଧଜଳ ଆଣି ନେତ୍ର ମୁଖ ପ୍ରକ୍ଷାଳନ
କରିବ ଆବର ଦନ୍ତ ଘର୍ଷଣ ବିଧାନ ।
ପୁଷ୍କରିଣୀ ମଧ୍ୟେ ପଶି ସ୍ନାନବିଧି ସାରି
ଆଚମନ କରିବ ଶ୍ରୀହରିଙ୍କୁ ସୁମରି ।
ଶ୍ରୀହରିଙ୍କ ମନ୍ତ୍ରେ ଅର୍ଘ୍ୟ ଜଳ ଦେବ ତହିଁ
ସେ ଅନ୍ତରେ ଗୃହେ ପରବେଶ ହେବ ଯାଇଁ ।
ଧଉତ ନିର୍ମଳ ବସ୍ତ୍ର କରି ପରିଧାନ
ପକାଇବ ବାଛି କରି ଉତ୍ତମ ଆସନ ।
ତହିଁରେ ବସି ତିଳକ ଆଚମନ ଆଦି
ଆପଣାର ନିତ୍ୟ କାମ୍ୟ କର୍ମକୁ ସମ୍ପାଦି ।
ଫଳ ମଣ୍ଡଳରେ ପୂର୍ଣ୍ଣକୁମ୍ଭ ବସାଇବ
ପୁରୋହିତ ମୁଖେ ସ୍ୱସ୍ତିବାଚନ କରିବ ।
ସେ ଅନ୍ତରେ ବେଦଶାସ୍ତ୍ର ଅନୁସାରେ ପୁଣ
ସଂକଳ୍ପ ବରଣ ପୂଜା କରି ବିଚକ୍ଷଣ ।
ବ୍ରତକର୍ମ ଆରମ୍ଭିବ ଭକ୍ତିଭାବ ଘେନି
ନିଖାଇବ ପାଶେ ନାନା ଉପଚାର ଆଣି ।
ଯୋଗାନ୍ତି ହୋନ୍ତି କରି ଶ୍ରେଷ୍ଠ କରିବ ଅର୍ପଣ
ତାହାର ନାମ ମୁଁ ଏବେ କହୁଅଛି ଶୁଣ ।
ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ଆଚମନ
ମଧୁପର୍କ ସ୍ନାନୀୟକ ବସନ ଭୂଷଣ ।
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ
ଆବର ଯେ ନାନାବିଧ ମଧୁପର୍କ ଖାଦ୍ୟ ।
ନାନାଦି ମଙ୍ଗଳ ମନ୍ତ୍ର ସେ ତାମ୍ବୁଳ କର୍ପୂର
ଆଣି ନବ ସଜ୍ଜନେ ଯେ ଷୋଡ଼ଶ ପ୍ରକାର ।
ପୂଜାର ଅଙ୍ଗସ୍ୱରୂପ ଏ ସର୍ବ ପଦାର୍ଥ
ନ ହେଲେ ସମସ୍ତ ଫଳ ହୋଇଯାଏ ବ୍ୟର୍ଥ ।
ଏଥିରୁ ଗୋଟିଏ ଦ୍ରବ୍ୟ ବିଚ୍ଛିନ୍ନ ହୋଇଲେ
ଅଙ୍ଗହାନି ହୁଅଇଟି ଜାଣିଥାଅ ଭଲେ ।

ସେହିରୂପେ ସକଳାଙ୍କ ମନୁଷ୍ୟ ଜୀବନ
ନିରର୍ଥକ ଅଟେ ତଥା ଅକର୍ମଣ୍ୟ କର୍ମ ।
ଯେବେ ପରମାତ୍ମେ ଜ୍ଞାନ ହୁଏ କର୍ମ ଭଙ୍ଗ ।
ସେତିକ ଅଂଶରେ ମଧ୍ୟ ମଳ ହୁଏ ଭଙ୍ଗ ।
ଅଷ୍ଟୋତ୍ତରଶତେ ପାରିଜାତ ପୁଷ୍ପ ଆଣି
ବିଷ୍ଣୁଙ୍କ ପାଦରେ ସମର୍ପିବ ଗଣି ଗଣି ।
ପ୍ରତିଦିନ ଏହିପରି ଦେବା ସକାଶରୁ
ହୁଅଇଟି ଆପଣାର ରୂପ ଅତି ଚାରୁ ।
ଆବର ଅଷ୍ଟ ଲକ୍ଷ ଶ୍ୱେତ ଚମ୍ପାଫୁଲ
ଶ୍ରୀହରିଙ୍କ ଅଙ୍ଗଦେଶେ କରାଇବ ତୁଲ ।
ତହିଁରେ ବର୍ଣ୍ଣ ସୌନ୍ଦର୍ଯ୍ୟ ଅଧିକ ହୁଅଇ
ପୂଜି ଦେବ ସହସ୍ରେକ ପଦ୍ମ ପୁଷ୍ପ ନେଇ ।
ତାହା ଦେଲେ ସୁଖଭୋଗ ମିଳଇ ଅପାର ।
ଏରୂପେ ଅଟଇ ତନ୍ତ୍ର ଶାସ୍ତ୍ରର ବିଚାର ।
ଅମୂଲ୍ୟ ରତ୍ନ ନିର୍ମିତ ସହସ୍ରେ ଦର୍ପଣ
ଭକ୍ତିଭରେ ପୁଣି ଆଣି କରିବ ଅର୍ପଣ ।
ଦର୍ପଣ ଦେବା ଯୋଗରେ ଦର୍ଶନ ଶକତି
ଅଧିକ ହୁଅଇ ନିଶ୍ଚେ ଜାଣ ଗୋ ପାର୍ବତୀ ।
ଶ୍ରୀକୃଷ୍ଣଙ୍କ ନାମ ଧରି ନୀଳୋତ୍ପଳ ଶତେ
ଦେଲେ ଚକ୍ଷୁ ରୂପବର୍ଣ୍ଣ ବଢ଼ଇ ନିରତେ
ଶୁକ୍ଳ ଚାମର ଲକ୍ଷେ କେଶବଙ୍କୁ ଦେବ
ତେବେ ସେ କେଶ ସୌନ୍ଦର୍ଯ୍ୟ ଅଧିକ ହୋଇବ
ଅମୂଲ୍ୟ ରତ୍ନ ରଚିତ ସହସ୍ରେ ପୁଟିକା ।
ଅର୍ପଣ କଲେ ସୁନ୍ଦର ହୁଅଇ ନାସିକା ।
ବନ୍ଧୁଜୀବକ କୁସୁମ ଲକ୍ଷେ ଅଣାଇବ
ରାଧେଶ୍ୱର ନାମ ଧରି ସମର୍ପିଣ ଦେବ ।
ଅଧର ଓଷ୍ଠ ସୁନ୍ଦର ହୁଏ ସେ ହେତୁରେ
ଦନ୍ତ ସୁନ୍ଦର ହୁଅଇ ମୁକ୍ତା ପ୍ରଦାନରେ ।
ଗୋଲୋକନାଥଙ୍କୁ ତାହା ଦେବ ଭକ୍ତିକରି
ମନଦେଇ ଶୁଣ ଆଗୋ ପର୍ବତକୁମାରୀ ।
ଗଣ୍ଡ ସୌନ୍ଦର୍ଯ୍ୟ ପ୍ରକାଶେ ରତନ ଗଣ୍ଡୁକ
ଶିବେଶ୍ୱରଙ୍କୁ ଅର୍ପଣ କରିବ ଲକ୍ଷେକ ।
ଲକ୍ଷେକ ରତ୍ନପାଶକ ବ୍ରଜେଶ ନାମରେ
ଦେଲେ ଓଷ୍ଠ ଅଧସ୍ଥଳ ଦିବ୍ୟରୂପ ଧରେ ।
ରତ୍ନସାର ବିନିର୍ମିତ କଣ୍ଠ ଆଭରଣ
ସର୍ବେଶ୍ୱରଙ୍କ ନାମରେ କଲେ ସମର୍ପଣ ।
ସୁନ୍ଦର ହୁଅଇ କଣ୍ଠ ଆଗୋ ଗୀବେଶ୍ୱରୀ
ଶ୍ରୁତି ଶକତି ଅଧିକ ହୁଅଇ ସେପରି ।
ରତ୍ନ ନିର୍ମିତ ମାଧ୍ୱୀକ ପୂର୍ଣ୍ଣ ଲକ୍ଷେ ଗୋଟି
କଳସ ଅଣାଇ ବିଶ୍ୱେଶ୍ୱରଙ୍କୁ ଦେବଟି ।
ଯେମନ୍ତ ଦେଲେ ସୁନ୍ଦର ହୁଏ ନିଜ ସ୍ୱର
ବିଶୁଦ୍ଧ ଭାଷାରେ ବାକ୍ୟ ହୁଅଇ ବାହାର ।
ରତ୍ନ ନିର୍ମିତ ସହସ୍ରେ ସୁଧାକୁମ୍ଭ ନେଇ
ଶ୍ରୀକୃଷ୍ଣଙ୍କ ନାମ ଧରି ଦେବ ତୋଷ ବହି ।
ଯେମନ୍ତ ହୋଇଲେ ଭଦ୍ରଲୋକ ସମାଜରେ
ଅଧିକ ହୁଏ କହିବା ଶକ୍ତି ସବୁଠାରେ ।
ଗୋପ ବେଶଧର ଶ୍ରୀକୃଷ୍ଣଙ୍କ ନାମ ଧରି
ରତ୍ନଦୀପ ଲକ୍ଷେ ଗୋଟି ଦେବ ଭକ୍ତିକରି ।
ତେବେ ଦୃଷ୍ଟି ସୁନ୍ଦରତା ହୁଅଇ ଅଧିକ
ଦର୍ଶନ ଶକତି ହୁଏ ତାହାଠାରୁ ଠିକ ।
ଧୁସ୍ତୁର କୁସୁମ ପରି ଅଷ୍ଟ ରତନରେ
ପାନଗୁଡ଼ିଏ ନିର୍ମାଣ କରାଇ ସତ୍ୱରେ ।
ଗୋରକ୍ଷକ ଶ୍ରୀକୃଷ୍ଣଙ୍କ ନାମ ଧରି ଦେବ
ତାହାଦେଲେ ଗଳଦେଶ ସୁନ୍ଦର ହୋଇବ ।
ରତନ ସାର ରଚିତ ସହସ୍ରେ ପଦ୍ମନାଳ
ଚଣ୍ଡ କପାଳଙ୍କ ନାମେ ଦେବ ତତକାଳ ।
ବାହୁ ସୌନ୍ଦର୍ଯ୍ୟ ଅଧିକ ହୁଏ ତହୁଁ ଜାଣ
ରକ୍ତପଦ୍ମ ଲକ୍ଷେ ଆଣି ସମର୍ପିବ ପୁଣ ।
ହସ୍ତ ସୌନ୍ଦର୍ଯ୍ୟର ସେହି କାରଣ ଅଟଇ
ଗୋପାଙ୍ଗନା ବଲ୍ଲଭଙ୍କୁ ଦେବ ମନେ ଧ୍ୟାଇ ।
ରତନ ନିର୍ମିତ ଶତେ ସୁନ୍ଦର ମୁଦ୍ରିକା
ଦେବେଶଙ୍କୁ ଦେବ ମନ ନ କରଣ ଫିକା ।
ତେମନ୍ତ ଦେଲେ ସୁନ୍ଦର ଅଙ୍ଗୁଳି ପାଇବ
ଶ୍ୱେତବର୍ଣ୍ଣ ଦିବ୍ୟମଣି ଲକ୍ଷେକ ଆଣିବ ।
ମୁନୀନ୍ଦ୍ର ନାଥଙ୍କୁ ତାହା ଦେବ ତୋଷଭରେ
ନଖ ସୌନ୍ଦର୍ଯ୍ୟ ଅଧିକ ହୋଇବା ପାଇଁରେ ।
ରତ୍ନହାର ଲକ୍ଷେ ଗୋଟି ଅଣାଇ ଯତନେ
ଦେବ ମଦନମୋହନେ ଆନନ୍ଦିତ ମନେ ।
ତାହାଦେଲେ ସୁରୁଚିର ହେବ ବକ୍ଷସ୍ଥଳ
ଦର୍ପଣ ସମାନ ଅଙ୍ଗ ଦିଶିବ ମଞ୍ଜୁଳ ।
ସୁନ୍ଦର ସୁପକ୍ୱ ବିଲ୍ୱ ଫଳ ଲକ୍ଷେ ଆଣି ।
ସିଦ୍ଧେନ୍ଦ୍ର ନାଥଙ୍କୁ ତୋଷେ ଦେବ ତାହା ପୁଣି ।

ସ୍ତନ ସୌନ୍ଦର୍ଯ୍ୟ ଅଧିକ ହୁଏ ଯେ ତନ୍ତୁରେ
ଶୁଣ ଗୋ ପର୍ବତସୁନ୍ଦରୀ ମନଦେଇ ଧୀରେ ।
ପଦ୍ମାକଣ୍ଠା ବଲ୍ଲଭଙ୍କୁ ଲକ୍ଷେ ସ୍ୱର୍ଣ୍ଣପାତ୍ର
ଦେବ ବିଧି ଅନୁସାରେ ପଢ଼ି ମୂଳମନ୍ତ୍ର ।
ତାହାହେଲେ ଅଙ୍ଗଶୋଭା ହୋଇବ ଦ୍ୱିଗୁଣ
ଏଥିରେ ସନ୍ଦେହ କିଛି ହେଲେ ନାହିଁ ଜାଣ ।
ରତ୍ନସାର ବିରଚିତ ନାଭି ଦଶଶତ
ପଦ୍ମନାଭ ନାମ ଧରି ଦେବ ବହ୍ନି ସ୍ପନ୍ଦ ।
ତେବେ ସେ ନାଭି ହୁଅଇ ଅତି ଶୋଭାବନ
ସତ ବୋଲକରି ଏହା ମାନସରେ ଘେନ ।
ସୁବର୍ଣ୍ଣ ନିର୍ମିତ ଏକସହସ୍ର ନଖ ଚନ୍ଦ୍ର
ଚକ୍ରପାଣିଙ୍କ ନାମରେ ଦେବ ବହ୍ନି ମୁଦ ।
ନିତମ୍ବ ସୌନ୍ଦର୍ଯ୍ୟ ତହୁଁ ଅଧିକ ହୁଅଇ
ବିସ୍ତାରିବାକୁ ଏଥିରେ କଥା କିଛି ନାହିଁ ।
ସୁବର୍ଣ୍ଣ କଦଳୀ ସ୍ତମ୍ଭ ଲକ୍ଷେ ଆଣିକରି
ଦେବ ଶ୍ରୀନିବାସ ରାମ ମୁଖରେ ଉଚ୍ଚାରି ।
ସୁନ୍ଦର ହୁଅଇ ଶ୍ରେଣୀ ସେହି ଦାନଫଳେ
ବିଅର୍ଥ ନୁହଇ ତାହା ଜାଣ କେତେବେଳେ ।
ପାଦ ସୌନ୍ଦର୍ଯ୍ୟ ସକାଶେ ସ୍ଥଳପଦ୍ମ ଲକ୍ଷେ
ପଦ୍ମନେତ୍ରଙ୍କ ନାମରେ ଦେବଟି ପ୍ରତ୍ୟକ୍ଷେ ।
ସ୍ୱର୍ଣ୍ଣ ଖଞ୍ଜରୀଟ ପକ୍ଷୀ ସହସ୍ରେ ସେପରି
ଅର୍ପଣ କରିବ ଲକ୍ଷ୍ମୀଶ୍ୱର ନାମ ଧରି ।
ଗତି ସୌନ୍ଦର୍ଯ୍ୟ ତହିଁରୁ ବଢ଼ଇଟି ଜାଣ
ସନ୍ତୁଷ୍ଟ ହୁଅନ୍ତି ସେଣୁ ଲକ୍ଷ୍ମୀ ନାରାୟଣ ।
ଏ ବାହାରେ ସ୍ୱର୍ଣ୍ଣମୟ ହଂସ ମତ୍ତଗଜ
ହରିଙ୍କୁ ଦେବ ସହସ୍ରେ କରାଇଣ ସଜ ।
ତହିଁରେ ମଧ ଗତିର ସୌନ୍ଦର୍ଯ୍ୟ ବଢ଼ଇ
ବେଦଶାସ୍ତ୍ରରେ ଏରୂପେ ଥାଅଛି ହୋଇ ।
ନାରାୟଣଙ୍କ ନାମରେ ଲକ୍ଷେ ନେତ୍ରମଣ୍ଡନ
ହୋଇ ସେ ଥିବ ବିବିଧ ରଙ୍ଗରେ ରଚନ ।
ସମର୍ପିବ ଆଣି ତାହା ଅତ୍ୟନ୍ତ ଯତ୍ନରେ
ସେ ଦେଖ ମସ୍ତକ ଶୋଭା ବଢ଼େ ନିରନ୍ତରେ ।
ଅମ୍ଳାନ ମାଳତୀ ପୁଷ୍ପ ମାଳା ଲକ୍ଷେ ଗୋଟି
ବୃନ୍ଦାବନ ଈଶ୍ୱରଙ୍କ ନାମରେ ଦେବଟି ।
ଦାସ୍ୟ ସୌନ୍ଦର୍ଯ୍ୟ ଅଧିକ ହୁଅଇ ତହିଁରୁ
ଜାଣ ଆଗୋ ଶୈଳରାଜା ସୁତା ତନ୍ତ୍ରରୁ ।

ନାରାୟଣଙ୍କୁ ଅମୂଲ୍ୟ ରତ୍ନ ଲକ୍ଷେ ଦେବ
ତହିଁରେ ହୁଅନ୍ତି ଜାଣ ଉତ୍ତମ ସ୍ୱଭାବ ।
ମନ ସ୍ୱଚ୍ଛ ହେବାପାଇଁ ସ୍ଫଟିକ ଦର୍ପଣ
ଲକ୍ଷେକ ଉତ୍ତମ ମଣି ଦେବ ବହ୍ନି ତୋଷ ।
ମୁନୀନ୍ଦ୍ରନାଥଙ୍କ ନାମେ ଅର୍ପିତ ଯେ ହେବ
ପ୍ରସନ୍ନ ହୋଇବେ ପ୍ରଭୁ ସ୍ୱୟଂ ବାସୁଦେବ ।
ପ୍ରବାଳ ସମାନ ମଣି ସହସ୍ରେ ଆଣାଇ
ଶ୍ରୀକୃଷ୍ଣଙ୍କ ନାମେ ସମର୍ପିବ ତାହା ନେଇ ।
ତହିଁରେ ଓଷ୍ଠର ସ୍ପନ୍ଦ ଅଧିକ ହୋଇବ
ଇନ୍ଦ୍ର ପର ଦେବ ଲୋକ ଅସ୍ତୁ ନ ପାଇବ ।
ଆବର ମାଣିକ୍ୟ ଏକଲକ୍ଷ ଆଣିଦେଲେ
ସୌଭାଗ୍ୟ ବଢ଼ଇ କୋଟିଜନ୍ମ ଯାଏ ଭଲେ ।
ସ୍ତନ ପାଇବା ସକାଶେ ଜମ୍ବୀର ଶ୍ରୀଫଳ
ଅକ୍ଷତ କୁଷ୍ମାଣ୍ଡ ପୁଣି ଦିବ୍ୟ ନାରିକେଳ ।
ଏହି ଫଳମାନ ଆଣି ଶ୍ରୀହରିଙ୍କୁ ଦେବ
ତେବେ ନିଶ୍ଚୟ ଉତ୍ତମ ପୁତ୍ରଲାଭ ହେବ ।
ଶ୍ରୀକୃଷ୍ଣଙ୍କୁ ଲକ୍ଷେ ରତ୍ନସାର ଆଣିକରି
ଦେବ ପଣ୍ଡିତଙ୍କର ଧନବୃଦ୍ଧି ଇଚ୍ଛାକରି ।
କାଂସ୍ୟତାଳ ଆଦି ନାନାବିଧ ବାଦ୍ୟମାନ
କରନ୍ତୁ ନୃତ୍ୟ ସଙ୍ଗୀତ ମନୋହର ଗାନ ।
ସମ୍ପତ୍ତି ବୃଦ୍ଧି ସକାଶେ ଶ୍ରୀହରିଙ୍କ ଆଗେ
କରାଇବ ମନଦେଇ ତାଙ୍କ ପାଦମୂଳେ ।
ପାୟସ ପିଷ୍ଟକ ଘୃତ ସର୍କରା ସହିତେ
ନାନାରୂପେ ଭୋଗ ଦେବ ହରିଙ୍କ ଅଗ୍ରତେ ।
ସେମନ୍ତ ହେଲେ ସ୍ୱାମୀର ଭୋଜନ ସମ୍ପତ୍ତି
ଅଧିକ ହୁଏ ନିଶ୍ଚୟ ଜାଣ ଗୋ ପାର୍ବତୀ ।
ଅମ୍ଳାନ ସୁଗନ୍ଧ ପୁଷ୍ପମାଳା ଲକ୍ଷେ ନେଇ
ଶ୍ରୀହରିଙ୍କୁ ଦେବ ଭକ୍ତି ବଢ଼ିବାର ପାଇଁ ।
ନୈବେଦ୍ୟ ସକାଶେ ମୁଣ୍ଡି ସ୍ୱାଦୁ ସୁମଧୁର
ପଦାର୍ଥମାନ ସେକାଳେ ଦେବ ହୋଇ ସ୍ଥିର ।
ଶ୍ରୀକୃଷ୍ଣଙ୍କ ପ୍ରୀତି ତହୁଁ ବଢ଼ଇ ବିଶେଷ
ସଦା ହୁଅନ୍ତି ପ୍ରଭୁ ତାଠାରେ ସନ୍ତୋଷ ।
ଭୃଙ୍ଗାମୀ ଦଳ ମିଶ୍ରିତ ନାନାବିଧ ଫୁଲ
ଶ୍ରୀକୃଷ୍ଣ ସନ୍ତୋଷ ଅର୍ଥେ ଦେବ ଲକ୍ଷ ତୁଳ ।
ଯେତେଦିନଯାଏ ବ୍ରତବିଧି ହେଉଥିବ
ସହସ୍ରେ ଦ୍ୱିଜଙ୍କୁ ନିତ୍ୟ ତାଙ୍କ ଭୁଞ୍ଜାଇବ ।

ସେତେଜନ୍ମ ଯାଏ ତହୁଁ ଶସ୍ୟବୃଦ୍ଧି ହୁଏ
ଫଳ ସମ୍ପତ୍ତି ବହୁତ ପ୍ରାପ୍ତ ହୋଇଥାଏ ।
ଭକ୍ତିବୃଦ୍ଧି ସକାଶରେ ପୁଷ୍ପାଞ୍ଜଳି ଶତ
ଦେଇଣ ଦଣ୍ଡ ପ୍ରଣାମ କରୁଥିବ ନିତ୍ୟ ।
ଛଅମାସ ପର୍ଯ୍ୟନ୍ତେ ହବିଷ୍ୟ କରିବ
ପାଞ୍ଚଗୋଟି ମାସ ଫଳ ଭୁଞ୍ଜିଣ ରହିବ ।
ପକ୍ଷେ ଯାଏ କଟାଇବ ଘୃତ ପାନକରି
ରହିବ ପକ୍ଷେକ ପୁଣି ପିଇ ସ୍ୱଚ୍ଛ ବାରି ।
ପ୍ରତିଦିନ ରତ୍ନମୟ ଦୀପ ଜଳାଇବ
କୁଶ ଆସନରେ ବସି ରଜନୀ ପାହିବ ।
ସ୍ମରଣ କୀର୍ତ୍ତନ ଲୀଳା ଚରିତ ଶ୍ରବଣ
ସଙ୍କଳ୍ପ ଯେ ବ୍ୟବସାୟ କାର୍ଯ୍ୟ ସମ୍ପାଦନ ।
କାମିନୀ ସମ୍ଭୋଗ ଏହିପରି ଆଠକଥା
ବ୍ରତକାଳେ ପରିତ୍ୟାଗ କରିବ ସର୍ବଥା ।
ଏହିରୂପେ ବ୍ରତବିଧି ହୋଇଲେ ସମାପତ
ପ୍ରତିଷ୍ଠା ବିଧାନ ତହୁଁ କରିବ ନିଶ୍ଚିତ ।
ତିନିଶ ଷାଠିଏ ଗୋଟି ଲଡ଼ୁ କରାଇବ
ତାହା ସଙ୍ଗେ ଭକ୍ଷ୍ୟଭୋଜ୍ୟ ଦ୍ରବ୍ୟମାନ ଦେବ ।
ବସନ ଭୂଷଣ ତୁଳେ ଯଜ୍ଞ ଉପବୀତ
ମୂଳମନ୍ତ୍ରରେ ସେକାଳେ କରିବ ଅର୍ପିତ ।

ତିନିଶତଷଷ୍ଟି ସହସ୍ର ଉତ୍ତମ ବ୍ରାହ୍ମଣ
ଆମନ୍ତ୍ରଣ କରି ଦେବ ଉତ୍ତମ ଭୋଜନ ।
ଆଉରି ତିନିଶତଷଷ୍ଟି ସହସ୍ର ପ୍ରମାଣେ
ତିଳହୋମ କରାଇବ ଶାସ୍ତ୍ରୋକ୍ତ ବିଧାନେ ।
ସେହି ସଂଖ୍ୟାରେ ସୁବର୍ଣ୍ଣ ମୁଦ୍ରା ଦାନକରି
ସମାପ୍ତ କରିବ ବ୍ରତ ଜାଣ ଗୋ ସୁନ୍ଦରୀ ।
ସେଥିରେ ଦକ୍ଷିଣା ଦେବ ଯେମନ୍ତ ପ୍ରକାରେ
କହିବି ତୁମ୍ଭଙ୍କୁ ତାହା ଅନ୍ୟ ସମୟରେ ।
ଏ ମହାବ୍ରତ ଯେ କରେ ତାର ସବୁବେଳେ
ଶ୍ରୀହରିଙ୍କଠାରେ ଭକ୍ତି ରହଇ ନିଶ୍ଚଳେ ।
ବିଷ୍ଣୁ ତୁଲ୍ୟ ଗୁଣମନୀ ତନୟ ହୁଅଇ
ଜଗତ ମଧ୍ୟରେ ଯଶ ଖ୍ୟାତି ସେ ଲଭଇ ।
ଆଉରି ସୌନ୍ଦର୍ଯ୍ୟ ସ୍ୱାମୀ ସଉଭାଗ୍ୟ ଧନ
ଭୋଗ କରନ୍ତି ଇହଲୋକରେଟି ଜାଣ ।
ସକଳ ବାଞ୍ଛା ହୁଅଇ ସମ୍ପୂର୍ଣ୍ଣ ତାହାର
ବିପଦ ଦୂରରୁ ଦେଖି କରଇ ଜୁହାର ।
ଶୁଣିଲୁ ତ ଭଲକରି ବ୍ରତର ସେ ବିଧି
କଲେ ଉତ୍ତମ କୁମର ହୋଇବ ଆଗୋ ସାଧ୍ୱୀ ।
ଏରୂପେ କହି ଶଙ୍କର ମଉନେ ରହିଲେ
ଦୀନ କ୍ଷେତ୍ରବାସୀ ଏହା ଗୀତରେ କହିଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶିବଙ୍କଠାରୁ ପାର୍ବତୀଙ୍କର ପୁଣ୍ୟକବ୍ରତ ବିଧି ଶ୍ରବଣେ ନାମ ଚତୁର୍ଥୋଽଧ୍ୟାୟଃ ।

---

# ପଞ୍ଚମ ଅଧ୍ୟାୟ

## ପାର୍ବତୀଙ୍କ ଆଗରେ ମହାଦେବଙ୍କର ବ୍ରତକଥା ବର୍ଣ୍ଣନ

ବୋଇଲେକ ନାରାୟଣ ନାରଦ ଅଗ୍ରତେ
ଏଥୁଁ ଅନ୍ତେ ଯାହାହେଲା ଶୁଣ ତୋହରତେ ।
ଶିବଙ୍କ ମୁଖରୁ ଶୁଣି ବ୍ରତର ବିଧାନ
ଆନନ୍ଦେ ପାର୍ବତୀ ପୁଣି ପୁଚ୍ଛିଲେ ବଚନ ।
ବ୍ରତର ବିଧାନ ବାରେ କୁହନ୍ତୁ ବୁଝାଇ
ଶୁଣିବା ନିମନ୍ତେ ମୋର ମନ ବଳାଉଛି ।
କେମନ୍ତ ପ୍ରକାରେ ସେହି ବ୍ରତ ଅଛି ଜାଣ
ବୁଝାଇ ମୋହର ଅଗ୍ରତେ କୁହ ତପୀରାଣ ।

ତାହାଶୁଣି ମହାଦେବ ବୋଇଲେ ଗୋ ସତୀ
କହିବା ସେ ବ୍ରତକଥା ଶୁଣ ଦେଇ ମତି ।
ମନୁଙ୍କର ଶତରୂପା ନାମେ ପତ୍ନୀ ଥିଲେ
ପୁତ୍ର ଦୁଃଖରେ ସେ ନାରୀ ଦୁଃଖିତା ହୋଇଲେ ।
ଦିନକରେ ବ୍ରହ୍ମାଙ୍କର ସମୀପକୁ ଯାଇ
କହିଲେ ବିନମ୍ର ଭାବେ ମସ୍ତକ ନୁଆଇଁ ।
ବୋଇଲେ ଶୁଣିବା ହେଉ ଆହେ ପ୍ରଜାପତି
ନୋହିଲେ ମୋହର କିଛି ସନ୍ତାନ ସନ୍ତତି ।

ବନ୍ଧ୍ୟା ଦୋଷରେ ଦୂଷିତା ହୋଇଅଛି ମୁହିଁ
କିରୂପେ ଏଥୁ ଉଦ୍ଧାର ହେବ ଜଣାନାହିଁ ।
କି ଉପାୟ କଲେ ହୁଏ ବନ୍ଧ୍ୟାର କୁମର
ଦୟାକରି ଏହା ମୋତେ କହ ବେଦବର ।
ମୋହର ଜନମ ଏବେ ହୋଇଲା ନିଷ୍ଫଳ
ଆବର ଐଶ୍ୱର୍ଯ୍ୟ ଧନ ସମ୍ପଦ ସକଳ ।
ଧନବନ୍ତ ଲୋକଙ୍କର ନ ଥିଲେ କୁମର
କଦାପି ସୁନ୍ଦର ନ ଦିଶଇ ତାଙ୍କ ଘର ।
ତପସ୍ୟା ଦାନରୁ ଯେଉଁ ପୁଣ୍ୟଲାଭ ହୁଏ
ଜନ୍ମାନ୍ତରେ ସୁଖଭୋଗ ସମ୍ପଦ ସେ ଦିଏ ।
କିନ୍ତୁ ଯେ ଉତ୍ତମ ସୁତ ମର୍ତ୍ତ୍ୟ ସମୟରେ
ସୁଖ ଦେବାକୁ ସମର୍ଥ ଅଟେ ନିଶ୍ଚୟରେ ।
ଆବର ମୁକତି ପ୍ରୀତି ଦିଅଇଟି ସେହି
ପୁତ୍ରମୁଖ ଦରଶନେ ଯାଗଫଳ ପାଇ ।
ପୁତ୍ରଲାଭର ଉପାୟ ଅଛି ଯେବେ ମୋତେ
କହ ଆହେ ପିତାମହ ଦୟାବନ୍ତ ଚିତ୍ତେ ।
ନୋହିଲେ ପିତାଙ୍କୁ ସଙ୍ଗେ ଘେନି ଘୋରବନେ
ଫଳମୂଳ ଖାଇ ତପ କରିବି ଯତନେ ।
ଗ୍ରହଣ କର ଆମ୍ଭର ଧନ ଐଶ୍ୱର୍ଯ୍ୟ
ପୁତ୍ରବିନୁ ତହିଁରେ ବା ଅଛି କେଉଁ କାର୍ଯ୍ୟ ।
ଅପୁତ୍ରିକ ଲୋକ ମୁଖ ଦେଖି ଜ୍ଞାନୀ ଜନେ
ଅମଙ୍ଗଳକର ବୋଲି ଭାବିଥାନ୍ତି ମନେ ।
ଭଦ୍ର ସମାଜରେ ମୁଖ ଦେଖାଇବା ପାଇଁ
ଅପୁତ୍ରିକ ଲୋକ ଘୋର ଲଜ୍ଜା ପାଇଥାଇ ।
ପୁତ୍ରମୁଖ ଦେଖିବାକୁ ଯେବେ ମୋ କପାଳେ
ନାହିଁ ତେବେ ଅବଶ୍ୟ ମୁଁ ପଶିବି ଅନଳେ ।
ନୋହିଲେ ବା ବିଷଖାଇ ଜୀବନ ତେଜିବି
ହୀନମାନ ହୋଇ ଆଉ ରହି ନ ପାରିବି ।
ଏତେ ବୋଲି ସେ ତରୁଣୀ ବ୍ରହ୍ମାଙ୍କ ପାଦରେ
ପଡ଼ିଣ ରୋଦନ କଲା ଆକୁଳ ଭାବରେ ।
କୃପାମୟ ପ୍ରଜାପତି ଦେଖିଣ ତାହାକୁ
ସାନ୍ତ୍ୱନା କରି କହିଲେ କୋମଳ ବାକ୍ୟକୁ ।
ବୋଇଲେ ଗୋ ପୁତ୍ରୀ ତୁମ୍ଭ ସୁଖର କାରଣ
ପୁତ୍ର ପ୍ରାପତ ଉପାୟ କହୁଅଛି ଶୁଣ ।
ସକଳ ବାଞ୍ଛିତପ୍ରଦ ଅଟେ ଯେଉଁ ବ୍ରତ
ତାହାକୁ କର ଗୋ ତୁମ୍ଭେ ହୋଇ ଭାବରତା ।

ସେ ବ୍ରତ ସ୍ୱରୂପ ଏବେ ଶୁଣ ମନକରି
ସନ୍ତୁଷ୍ଟ ହୁଅନ୍ତି ଯହିଁ ପ୍ରଭୁ ନରହରି ।
ମାଘ ଶୁକ୍ଳ ତ୍ରୟୋଦଶୀ ତିଥି ଯେଉଁଦିନ
କରିବ ସେହିଦିନ ଏହି ବ୍ରତକୁ ପାଳନ ।
ସମ୍ବତ୍ସର ପର୍ଯ୍ୟନ୍ତେ ପ୍ରତ୍ୟେକ ମାସରେ
ପୂଜାକରି ଉଦ୍ଯାପନ କରିବ ଶେଷରେ ।
ବେଦୋକ୍ତ ସମସ୍ତ ଦ୍ରବ୍ୟ ଉପହାର ଦେବ
ସୁବ୍ରାହ୍ମଣଙ୍କୁ ଡକାଇ ପୂଜା କରାଇବ ।
ଏ ବ୍ରତ ବିଧାନ ଅଟେ କାଣ୍ୱ ଶାଖା ଉକ୍ତ
କଲେ ନିଶ୍ଚେ ପ୍ରାପ୍ତ ହେବ ବିଷ୍ଣୁ ତୁଲ୍ୟ ସୁତ ।
ଏରୂପେ ବ୍ରହ୍ମାଙ୍କ ବାକ୍ୟ ଶୁଣି ନାରୀବର
ବ୍ରତ ସମାପନ କଲା ହୋଇ ତତପର ।
ସେ ସକାଶୁ ତାର ଗର୍ଭେ ହେଲେ ଯେଉଁ ସୁତ
ତାହାଙ୍କ ନାମ ଉତ୍ତାନପାଦ ପ୍ରିୟବ୍ରତ ।
ଦେବହୂତି ଏ ପୁଣ୍ୟକ ବ୍ରତ ଆଚରିଲେ
କପିଳମୁନି ତାହାଙ୍କଠାରୁ ଜାତ ହେଲେ ।
ଅରୁନ୍ଧତୀ ଦେବୀ ଏହି ବ୍ରତ ପ୍ରଭାବରେ
ଶକ୍ତି ନାମକ ସୁତକୁ ପାଇଲେ ସତ୍ୱରେ ।
ଶକ୍ତି ମୁନିଙ୍କର ପ୍ରିୟା ଏହି ବ୍ରତ କରି
ଜାତ କରିଥିଲେ ପରାଶରଙ୍କୁ ସାଦରେ ।
ବାମନକ ନାମ ସୁତ ଅଦିତି ପାଇଲେ
ଶଚୀଦେବୀ ଜୟନ୍ତକୁ ଜାତ କରିଥିଲେ ।
ଯତନରେ ଏ ବ୍ରତକୁ କଲେ ଯେ ପାଳନ
ସେ ହେତୁ ତାଙ୍କର ପୁତ୍ର ଲଭି ହେଲେ ଜାଣ ।
ଉତ୍ତାନପାଦଙ୍କ ପତ୍ନୀ କଲେ ଏହି ବ୍ରତ
ଯଥାକାଳେ ପ୍ରସବିଲେ ଧ୍ରୁବ ନାମେ ସୁତ ।
କୁବେର ଭାର୍ଯ୍ୟା ଏହି ବ୍ରତ କରିବାରୁ
ନଳ କୁବେର ଜନମ ହେଲେ ତାଙ୍କଠାରୁ ।
ସୂର୍ଯ୍ୟପ୍ରିୟା ମନୁ ନାମେ ପୁତ୍ର ଯେଉଁପରେ
ଲଭିଥିଲେ ଯତନରେ ଏ ବ୍ରତ ଆଚରେ ।
ଅତ୍ରି ମୁନିଙ୍କର ପତ୍ନୀ ଏହି ବ୍ରତ କଲେ
ଚନ୍ଦ୍ରମା ତାହାଙ୍କ ଗର୍ଭେ ଜନମ ହୋଇଲେ ।
ଅଙ୍ଗିରାଙ୍କ ପତ୍ନୀ ସେ ଏହି ଅନୁଷ୍ଠାନ
କରନ୍ତେ ବୃହସ୍ପତିଙ୍କୁ କଲେ ପୁଣି ଜନ୍ମ ।
ଭୃଗୁ ଋଷିଙ୍କର ଜାୟା ଶୁଭବ୍ରତ ହୋଇ
ଯଥାବିଧି ଏ ବ୍ରତକୁ କଲେ ମନଦେଇ ।

ସେ ପ୍ରକାରେ ନାରାୟଣ ଅଂଶେ ତାହାଙ୍କର
ଗର୍ଭରୁ ଜନ୍ମିଲେ ଶୁଣ ମୁନିବର ।
ଏ ରୂପେ ସୂର୍ଯ୍ୟଙ୍କ ବ୍ରତ ମହିମା ଅଟଇ
କର ଗୋ ପାର୍ବତୀ ତୁମ୍ଭେ ନିରାଶ ନ ହୋଇ ।
ଏ ବ୍ରତ ପାଳନେ ତୁଷ୍ଟ ହେବେ ଲକ୍ଷ୍ମୀପତି
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ପୁଣି ବସୁମତୀ ।
ଗଗନ ପବନ ମହୀଧର ରତ୍ନାକର
ଏହି ବ୍ରତେ ତୋଷଚିତ୍ତ ହୋଇବେ ସକଳ ।
ଦେବପତ୍ନୀ ଅବା ରାଜପତ୍ନୀମାନଙ୍କର
ସାଧ ଏ ଅଟଇ ବ୍ରତ ବୋଲି ମନେକର ।
ସାଧ୍ୱୀମାନେ ଏହାକୁ ପ୍ରାଣଠାରୁ ବଳି
ଆଦର କରନ୍ତି କାର୍ଯ୍ୟ ସିଦ୍ଧି ମନେ ଭାଳି ।
ଏହି ବ୍ରତ ପ୍ରଭାବରେ ନିଜେ ବ୍ରଜେଶ୍ୱର
ପୁତ୍ରରୂପେ ଜାତ ହେବେ ଗର୍ଭରୁ ତୁମ୍ଭର ।
ଏମନ୍ତ କହିଣ ଶିବ ମଉନେ ରହିଲେ
ଶୁଣି ହିମାଳୟସୁତା ଆନନ୍ଦିତା ହେଲେ ।
ପତିଙ୍କ ଅନୁଜ୍ଞା ଶିରେ ଘେନି ମହାମାୟୀ
କଲେ ବ୍ରତ ଅନୁଷ୍ଠାନ ସମ୍ଭାର ଅଣାଇ ।
ଆହେ ନାରଦ ମହର୍ଷି ପଚାରିଲେ ଯାହା
ଆମୂଳ କହିଣ ସବୁ ଶୁଣିଲ ତ ତାହା ।
ଆଉ କେଉଁ କଥା ଯେବେ ଶୁଣିବାକୁ ମନ
ହେଉଅଛି ପଚାର ତା କହିବା ହେନ ।
ଏହିଠାରେ ବ୍ରତକଥା ମହିମା ସମାପ୍ତ
କଲେ କ୍ଷେତ୍ରବାସୀ ଦୀନ ଆହେ ସାଧୁସନ୍ତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପାର୍ବତୀଙ୍କ ଆଗରେ ମହାଦେବଙ୍କର ବ୍ରତକଥା ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।

---

# ଷଷ୍ଠ ଅଧ୍ୟାୟ

## ପାର୍ବତୀ ଦେବୀଙ୍କ ବ୍ରତ ସମ୍ବନ୍ଧେ ହରିହରଙ୍କର କଥୋପକଥନ

ଏଥୁଅନ୍ତେ ସେ ସଉତି ଋଷିଙ୍କୁ ଅନାଇଁ
ବୋଇଲେ ଶୁଣ ଯା ନାରାୟଣ ଥିଲେ କହି ।
ଅତ୍ୟନ୍ତ ଗହନ କଥା ମାନ ସେହି ଜାଣ
ଶ୍ରବଣ ମାତ୍ରକେ ପାପ ହୋଇବ ଦହନ ।
ନାରାୟଣ କହିଥିବା ବଚନ ସଉତି
ଭାଷନ୍ତେ ନାରଦ ମୁନି ତୋଷ ହେଲେ ଅତି ।
ବ୍ରତ ଆରମ୍ଭ ବିଧାନ ପଚାରିବା ପାଇଁ
ବିନୟ ଭାବେ ତାହାଙ୍କୁ କହିଲେ ଗୋସାଇଁ ।
କିରୂପେ ପାର୍ବତୀଦେବୀ ଭର୍ତ୍ତାଙ୍କ ଆଗରେ
ପୁଣ୍ୟକ ବ୍ରତ ବିଧାନ କଲେ କେଉଁଠାରେ ।
କିରୂପେ ତାହାଙ୍କ ଗର୍ଭେ ପ୍ରଭୁ ଗୋପୀନାଥ
ପୁତ୍ରରୂପ ଧରି କେଉଁକାଳେ ହେଲେ ଜାତ ।
ଯେ ସବୁ ଚରିତ ମୋତେ କହ ମୁନିବର
ହୋଇଛି ତ ଆପଣଙ୍କୁ ସମସ୍ତ ଗୋଚର ।
ନାରାୟଣ ବୋଇଲେ ତା ଶୁଣ ମନଦେଇ
ଆମୂଳ କରି କହିବା ସମସ୍ତ ବୁଝାଇ ।
ପାର୍ବତୀଙ୍କ ଆଗେ ଦେବ ବୃଷଭ ବାହନ
କହି ସାରିଣ ଯାବତ ବ୍ରତର ବିଧାନ ।
ଶ୍ରୀହରିଙ୍କୁ ମନେ ମନେ ସୁମରଣା କରି
ତପସ୍ୟା କରିବାପାଇଁ ଗଲେ ସେ ବାହାରି ।
ଶ୍ରୀହରିଙ୍କୁ ମୂର୍ତ୍ତିଭେଦ ଅଟନ୍ତି ତ ସେହି
ବିଷ୍ଣୁ ଆରାଧନା ତାଙ୍କ କର୍ତ୍ତବ୍ୟ ଅଟଇ ।
ସର୍ବଦା ହୃଦରେ ତାଙ୍କୁ ଧ୍ୟାନ କରୁଥାନ୍ତି
ଦିବସ ରଜନୀ କେବେ ହୁଏ ନ ଜାଣନ୍ତି ।
ଭର୍ତ୍ତାଙ୍କଠାରୁ ଅନୁଜ୍ଞା ପାଇଣ ପାର୍ବତୀ
ଆନନ୍ଦ ଲଭି କରିଣ ମାନସରେ ଅତି ।
କିଙ୍କରଗଣଙ୍କୁ ବେଗେ ଡକାଇ ଆଣିଲେ
ଯଜ୍ଞ ସମ୍ଭାର ଆଣିବାପାଇଁ ପଠାଇଲେ ।
ଆବର ଦ୍ୱିଜଗଣଙ୍କୁ କେତେ ଦ୍ରବ୍ୟପାଇଁ
ଅନୁଜ୍ଞା ଦେଇଣ ନିଜେ ଦେଲେ ସେ ପଠାଇ ।
ତାଙ୍କ ଆଜ୍ଞା ପରମାଣେ ସକଳ ପଦାର୍ଥ
ଯଥା ସମୟରେ ଆସି ହେଲା ଉପସ୍ଥିତ ।

ଶୁଭକ୍ଷଣ ଦେଖି ଯଜ୍ଞକର୍ମ ଆରମ୍ଭିଲେ
ଦେବଙ୍କ ସନ୍ନିଧିରେ ମୁନିଋଷିଏ ଆସିଲେ ।
ସନତକୁମାର ମୁନି ବ୍ରହ୍ମା ଚିରଜୀବନ୍ତ
ମୂର୍ତ୍ତିମନ୍ତ ଧର୍ମପର ହେଲେ ସମାଗତ ।
ପ୍ରିୟାଙ୍କୁ ସଙ୍ଗରେ ଘେନି ଦେବ ପିତାମହ
ଆସିଲେ ବ୍ରହ୍ମଲୋକରୁ ବହି ହୃଦେ ସ୍ନେହ ।
ସେ ଅନ୍ତରେ ମହାଦେବ ଉଦବେଗ ହୋଇ
ତକ୍ଷଣେ ଆସିଲେ ଦଣ୍ଡେ ନ ରହିଣ କାହିଁ ।
କ୍ଷୀର ସାଗର ମଧ୍ୟରୁ ପ୍ରଭୁ ରମାପତି
ଲକ୍ଷ୍ମୀଙ୍କୁ ସଙ୍ଗରେ ଘେନି ମିଳିଲେ ଝଟତି ।
ପାରିଷଦଗଣ ମଧ୍ୟ ତାଙ୍କ ସନ୍ନିଧିରେ
ପ୍ରବେଶ ହୋଇଲେ ଯାଇ ସେ ଯଜ୍ଞ ସ୍ଥାନରେ ।
ରତ୍ନବିମାନରେ ବସି ନାରଦ ମହର୍ଷି
ମହା ଆଡ଼ମ୍ବରେ ଉପଗତ ହେଲେ ଆସି ।
ସନକ ସନନ୍ଦ ବୋଢ଼ୁ କପିଳ ଆସୁରି
ସନାତନ କ୍ରତୁ ହଂସୀ ସନ୍ତ ତପସ୍ୱୀ ।
ସୁମନ୍ତ ଅରୁଣ ପଞ୍ଚଶିଖ ସେ ବଶିଷ୍ଠ
ପୁଲସ୍ତ୍ୟ ପୁଲହ ଅତ୍ରି ଭୃଗୁମୁନି ଶ୍ରେଷ୍ଠ ।
ଅଗସ୍ତ୍ୟ ଅଙ୍ଗିରା କାଣ୍ୱ ପ୍ରଚେତା ଚ୍ୟବନ
ଦୁର୍ବାସା ମରୀଚି ଜରତ୍କାରୁ ତପୋଧନ ।
କଶ୍ୟପ ଗୌତମ ବୃହସ୍ପତି ସେ ଉତଥ୍ୟ
ସମ୍ବର୍ତ୍ତ ସୌଭରି ତୁଲେ ହେଲେ ସମାଗତ ।
ଯମଦଗ୍ନି ଜୈଗୀଷବ୍ୟ ଜାବାଳି ଦେବଳ
ଗୋକାମୁଖ ମୁନି ପାରଭଦ୍ର ତପଶୀଳ ।
ପରାଶର ଚନ୍ଦ୍ରରଥ ବିଶ୍ୱାମିତ୍ର ମୁନି
ବାମଦେବ ଋଷ୍ୟଶୃଙ୍ଗ ବେଦ ତତ୍ତ୍ୱଜ୍ଞାନୀ ।
ବିଭାଣ୍ଡକ ମାର୍କଣ୍ଡେୟ ମୃକଣ୍ଡୁ ପୁଷ୍କର
ଲୋମଶ କାଳାଗ୍ନି ଅଘମର୍ଷଣ ଆବର ।
କଣାଦ ପାଣିନି ଦକ୍ଷ ମହାମୁନି କୌତ୍ସ
ଶାକଟାୟନ ଯେ କାତ୍ୟାମୁନି ଋଚିବତ୍ସ ।
ଶଙ୍କୁକର୍ଣ୍ଣ ପିଶଳ ଶଙ୍ଖ ଶାକଲ୍ୟ ସନ୍ନିଧିରେ
ମୁନିଋଷି ଗଣେ ଆସି ମିଳିଲେ ତ୍ୱରିତେ ।
ଆବର ବହୁତ ଶିଷ୍ୟ ଘେନି ସଙ୍ଗତରେ
ଅନ୍ୟ ଋଷିମାନେ ଆସି ମିଳିଲେ ସତ୍ୱରେ ।
ନର ନାରାୟଣ ଆସନ୍ତ ଧର୍ମ ଦେବସୁତ
ସେ ଯଜ୍ଞସ୍ଥାନରେ ଯାଇ ହୋଇଲୁ ଉପସ୍ଥିତ ।

ଦିଗପାଳ ତୁଲେ ଯକ୍ଷ ଗନ୍ଧର୍ବ କିନ୍ନର
ଦେବତା ପନ୍ନଗ ସିଦ୍ଧ ସାଧ୍ୟ ବିଦ୍ୟାଧର ।
ସମସ୍ତେ ଯାଗ ସ୍ଥାନରେ ଆସିଣ ମିଳିଲେ
ସେ ମାନେ ଯାନ ବାହନ ଉପହାର ତୁଲେ ।
ପାର୍ବତୀଙ୍କ ଅନୁରୋଧ ଘେନି ଶୈଳଗଣ
ଯଜ୍ଞସ୍ଥାନରେ ପ୍ରବେଶ ହେଲେ ତତକ୍ଷଣ ।
ହିମାଳୟ ନିଜ ସୁତ ଭାର୍ଯ୍ୟାଙ୍କୁ ଆଗେ
ଚଳାଇଣ ଆଗମନ କଲେ ଅନୁରାଗେ ।
ନିଜ ଅନୁଚରଗଣ ଆସିଥିଲେ ସଙ୍ଗେ
ଦିବ୍ୟ ଆଭରଣ ସର୍ବେ ଭରିଥିଲେ ଅଙ୍ଗେ ।
ନାନାଦ୍ରବ୍ୟ ସମନ୍ୱିତ ବିବିଧ ସମ୍ଭାର
ଘେନାଇଥିଲେ ସାଙ୍ଗରେ ଗିରି ଅଧୀଶ୍ୱର ।
ଦୁର୍ଲ୍ଲଭ ମଣିମାଣିକ୍ୟ ସୁବର୍ଣ୍ଣ ବହୁତ
ଯଜ୍ଞକୁ ଯେ ଉପଯୋଗ ହେବ ସେ ସମସ୍ତ ।
ଦୁହିତାଙ୍କ ଯାଗଶାଳେ କରିଥିଲେ ଠୁଳ
ତିନିଲକ୍ଷ ଅଶ୍ୱ ଲକ୍ଷେ ମତ୍ତ ଦନ୍ତାବଳ ।
ଦଶଲକ୍ଷ କାମଧେନୁ କୋଟିଏ ସୁବର୍ଣ୍ଣ
ନୃତକ ସାରକସ୍ପର୍ଶ ମଣି ଅକଳନ ।
ତ୍ରିଲକ୍ଷ ମୁକ୍ତା ଦଶ ସହସ୍ର କୌସ୍ତୁଭ
ଏ ବାହାରେ ଲକ୍ଷେ ଭାର ସ୍ୱାଦୁ ମିଷ୍ଟଦ୍ରବ୍ୟ ।
ଘେନାଇଁ ଭକ୍ତଙ୍କ ହସ୍ତେ ସୁତାଙ୍କର ଯାଗେ
ଦେଖିବାକୁ ଉପସ୍ଥିତ ହେଲେ ଅନୁରାଗେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦିକରି
ଆସିଲେ ନାନାସ୍ଥାନରୁ ବିଳମ୍ବ ନ କରି ।
ଭସ୍ମତ୍ର ବୈଷ୍ଣବ ବନ୍ଦୀ ସନ୍ନ୍ୟାସୀଙ୍କ ତୁଲେ
କେତେ ନରନାରୀ ଆସି ଉପଗତ ହେଲେ ।
ବିଦ୍ୟାଧରୀ ଅପସରୀ ନର୍ତ୍ତକ ନର୍ତ୍ତକୀ
ଆସିଲେ ସେଠାରେ ନୃତ୍ୟ କଳାବାମାଳିକ ।
ନାନାବିଧ ବାଦ୍ୟ ଘେନି ବାଦ୍ୟକାରଗଣ
ମିଳିଲେ ସତ୍ୱରେ ଆସି କୈଳାସ ଭୁବନ ।
ଚନ୍ଦନ ମିଶ୍ରିତ ଜଳେ ସୁର ବାଳମଣ
ପଥବରମାନ ବେଗେ କଲେ ସୁସଂସ୍କୃତ ।
ନବକଦଳୀସ୍ତମ୍ଭ ସୋପାନ ପ୍ରତ୍ୟେକ ଦ୍ୱାରରେ
ବାନ୍ଧିଲେ ତହୁଁ ମଲ୍ଲିକ ତୋରଣ ମାଳରେ ।
ଦୂର୍ବାଦଳ ଧାନ୍ୟ ଲାଜା ଫଳ ପୁଷ୍ପରାଶି
କାଞ୍ଚନେ ସ୍ଥଳସ୍ଥାନେ ମଙ୍ଗଳ ଉଦ୍ଦେଶି ।

ସ୍ୱର୍ଣ୍ଣମୟ ସିଂହାସନ ଧାଡ଼ି ଧାଡ଼ି କରି
ରଖାଇଲେ ମଣ୍ଡପରେ କେତେ ପରିଶ୍ରମ ।
ପାରିଷଦଗଣ ଯେତେ ଦେବ ନିଳୋଚନ
କଲେ ଆଗନ୍ତୁକ ପ୍ରତି ଉଚିତ ସମ୍ମାନ ।
ସେ ସବାଶୁ ଆନନ୍ଦରେ ବସି ସେ ସମସ୍ତେ
ପରସ୍ପରେ କଥାବାର୍ତ୍ତା ହେଲେ ତୋଷଚିତ୍ତେ ।
କୈଳାସପୁରେ ଯେ ବାସ କରି ରହିଥିଲେ
ସେ ସାବସ୍ଥାନକୁ ଆସି କାର୍ଯ୍ୟରେ ଲାଗିଲେ ।
ଦାନାଧକ୍ଷ ହେଲେ ତହିଁ ନିଦେଶ ଗଜନ
କୁବେର କଲେ ସକଳ ଭଣ୍ଡାର ପାଳନ ।
ସବିତା ଦେବତା ହେଲେ ଆଦେଶଦାୟକ
ଜଳଅଧିପତି ପରିବେଷଣକାରକ ।
ସହସ୍ରେକ ଦଧିନଦୀ ସେ ଯାଗ ପାଶରେ
ରହିଲେ ସହସ୍ରେ ଦୁଗ୍ଧ ନଦୀ ସେ ପ୍ରକାରେ ।
ଘୃତନଦୀ ପୁଣି ଏକ ସହସ୍ର ଜାତହେଲେ
ଶତେନଦୀ ଗୁଡ଼ପୂର୍ଣ୍ଣ ହୋଇଣ ରହିଲେ ।
ଆବର ମାଧ୍ୱୀକ ସହସ୍ରେ ନଦୀ ହୋଇ ଜାତ
ଦେଖାଇଲେ ପୁଣି ତେଲ ନଦୀ ଏକଶତ ।
ଏକଲକ୍ଷ ତକ୍ରନଦୀ ସୁରମ୍ୟ ରୂପରେ
ପ୍ରକାଶିତ ହେଲେ ସେହି ଯଜ୍ଞ ସମୀପରେ ।
ଅମୃତପୂର୍ଣ୍ଣ କୋଟିଏ କୁମ୍ଭ ତହିଁ ଥିଲେ
ବହୁତ ମିଷ୍ଟ ପଦାର୍ଥ ତାହାଙ୍କର ତୁଲେ ।
ରାଶି ରାଶି ହୋଇ ପ୍ରକାଶିଲେ ଦ୍ରବ୍ୟ ଶୋଭା
ଦେଖିବା ମାତ୍ରକେ ମନ କରୁଥିଲେ ଲୋଭା ।
ଗୋଧୂମ ଯବର ଚୂର୍ଣ୍ଣ ଘୃତ ମିଶାହୋଇ
ପ୍ରତ୍ୟେକ ସ୍ଥାନରେ ରଖା ଯାଇଥିଲା ତହିଁ ।
ସ୍ୱସ୍ତିକ ପୁଷ୍ପ ସହିତେ ପିଷ୍ଟକ ବହୁତ
ଗଦା ହୋଇଥିଲେ ଯେହ୍ନେ ବିଶାଳ ପର୍ବତ ।
ସୁରସୁସଂସ୍କୃତ ନାନା ଚାଉଳ ଭାତ ଆଣି
ରଖିଥିଲେ ପାଚକଙ୍କେ ପ୍ରଭୁ ଆଜ୍ଞା ଘେନି ।
ପୃଥୁକ ଶାଳି ସହସ୍ରେକ କୋଟିରାଶି ତହିଁ
ରଖାଯାଇଥିଲା ପାଶେ ଲୋଡ଼ାହେବା ପାଇଁ ।
ନଣ୍ଡୁକ ସେଠାରେ ଥୁଆ ହୋଇଥିଲା ଯେତେ
ସଂଖ୍ୟାକରି କେବା କହି ପାରିବ ସେ କେତେ ।
ସୁବର୍ଣ୍ଣ ରୌପ୍ୟ ପ୍ରବାଳ ମଣିମୁକ୍ତାଗଣ
ଅସଂଖ୍ୟ ପ୍ରମାଣେ ରଖାଯାଇଥିଲା ଜାଣ ।

ପାୟସ ପିଷ୍ଟକଶାଳୀ ଓଦନ ବ୍ୟଞ୍ଜନ
ନିଜେ ମହାଲକ୍ଷ୍ମୀ ସବୁ କରନ୍ତି ରନ୍ଧନ ।
ଆବର ଘୃତସଂପୃକ୍ତ ବହୁତ ପ୍ରକାର
ମିଷ୍ଟଦ୍ରବ୍ୟମାନ ଦେବୀ କଲେ ସେ କାଳର ।
ଦେବର୍ଷିଙ୍କ ସଙ୍ଗରେ ଯେତେ ନାରାୟଣ
ସୁଖେ ବସି କଲେ ନାନା ପଦାର୍ଥ ଭୋଜନ ।
ମହାଲକ୍ଷ୍ମୀଙ୍କ ସଂସ୍କୃତ ମିଷ୍ଟଦ୍ରବ୍ୟ ଯେତେ
ବ୍ରାହ୍ମଣେ ପରିବେଷଣ କଲେକ ତ୍ୱରିତେ ।
ଭୋଜନକରି ସମସ୍ତେ ସନ୍ତୁଷ୍ଟ ହୋଇଲେ
ସେ ଯାହା ଆସନପରେ ସୁଖରେ ବସିଲେ ।
ଦିବ୍ୟ ରତ୍ନସିଂହାସନେ ଦେବ ଜନାର୍ଦ୍ଦନ
ବସିଲେ ସେକାଳେ ତୋଷକରି ନିଜମନ ।
କର୍ପୂରାଦି ଗନ୍ଧଦ୍ରବ୍ୟ ମିଶ୍ରିତ ତାମ୍ବୁଳ
ସମସ୍ତଙ୍କୁ ନେଇ ଦ୍ୱିଜେ ଦେଲେ ତତକାଳ ।
ଏଥିଅନ୍ତେ ମହାଦେବ ଦେଖିଲେ ପାଶରେ
ବସିଛନ୍ତି ନାରାୟଣ ରତ୍ନ ଆସନରେ ।
ପାରିଷଦଗଣ ପାଶେବେଢ଼ି ରହିଛନ୍ତି
ରତ୍ନର ବ୍ୟଜନ ଯେହି ଧୀରେ ଢାଳନ୍ତି ।
ଆବର ସିଦ୍ଧ ମହର୍ଷି ଦେବ ଋଷିଗଣ
ସ୍ତୁତି କରନ୍ତି ମସ୍ତକେ ହସ୍ତକୁ ଯୋଡ଼ିଣ ।
ବିଦ୍ୟାଧରୀ ଅପସରୀ ନିକଟରେ ରହି
ନୃତ୍ୟ କରନ୍ତି ଆନନ୍ଦେ ଗୁଡ଼ିକ ଫୁଲାଇ ।
ମର୍ଦ୍ଦଳ କଂସାଳ ତାଳ ଯେତେ ବିଦ୍ୟାଧରେ
ଗାନ କରୁଛନ୍ତି ତାନଦେଇ ପରସ୍ପରେ ।
ସସ୍ମିତ ବଦନେ ତାଙ୍କ ଆଡ଼କୁ ଅନାଇଁ
ବସିଛନ୍ତି ପ୍ରଭୁ ନୃତ୍ୟ ଗୀତେ ମନଦେଇ ।
ଏମନ୍ତ ସମୟେ ଶିବ ବ୍ରହ୍ମାଙ୍କ ଆଦେଶେ
ପ୍ରବେଶ ହୋଇଲେ ଯାଇଁ ତାହାଙ୍କର ପାଶେ ।
ଭକ୍ତିଭରେ ଶ୍ରୀମୁଖକୁ ଅନାଇଁ ଧୀରେ
ପଚାରିଲେ ଦେବ ଋଷିମାନଙ୍କ ମଧ୍ୟରେ ।
ବୋଇଲେ ଆହେ ଜଗତନିବାସ ଶ୍ରୀହରି
ତୁମ୍ଭେ ଅଷ୍ଟ ମହାସିଦ୍ଧି ଫଳ ଦାନକାରୀ ।
ବ୍ରତ ଯଜ୍ଞ ଜପ ପୂଜା ବିଧି ଯେ ସକଳ
ସମସ୍ତ କାରଣ ତୁମ୍ଭେ ପ୍ରଭୁ ଆଦିମୂଳ ।
ଅଶେଷ ବୀଜସ୍ୱରୂପ ସଂସାର ଭିତରେ
ପ୍ରକାଶିତ ହୋଇଅଛ ପ୍ରତ୍ୟେକ ସ୍ଥାନରେ ।

ଏବେ ତୋର ପଚାରିବା କଥାକୁ ବଖାଣି
କହ ଶୁଣିବାକୁ ଇଚ୍ଛା କରିଅଛି ମୁହିଁ ।
ପୁତ୍ରଲାଭ ଅଭିପ୍ରାୟେ ପର୍ବତକୁମାରୀ
ପୁଣ୍ୟକବ୍ରତ କରନ୍ତି ଭକ୍ତିଭାବ ଧରି ।
ଦେବଙ୍କ ଯୋଗରେ ତତ୍ପରେ ଭଙ୍ଗହେଲା
ସେ ସକାଶୁ ବୀର୍ଯ୍ୟ ମର୍ତ୍ତ୍ୟଦେଶରେ ପଡ଼ିଲା ।
ତା ଦେଖି ପାର୍ବତୀଦେବୀ ଶୋକେ ଅଚେତନ
ହୁଅନ୍ତେ ତାହାଙ୍କୁ ମୁହିଁ କରି ପ୍ରବୋଧନ ।
ପୁତ୍ର ପ୍ରାପତି ସକାଶେ ଏହି ଶୁଭ ବ୍ରତ
କରିବାପାଇଁ ଆଦେଶ ଦେଇଅଛି ସତ୍ୟ ।
ତେଣୁ ସେ ସନ୍ତରେ କରୁଛନ୍ତି ଏହି ଯାଗ
ପାଇବାକୁ ଦିବ୍ୟସୁତ ସ୍ୱାମୀ ସଉଭାଗ୍ୟ ।
ଏ ଦୁଇ କାମନା ସିଦ୍ଧ ନ ହୋଇବ ଯେବେ
ତେବେ ସେ ଅନଳେ ପଶି ଜୀବନ ତେଜିବେ ।
ପୂର୍ବକାଳେ ଜାତ ହୋଇଥିଲେ ସତୀରୂପେ
ମୋହର ନିନ୍ଦାବଚନ ଶୁଣିବାରୁ ଆପେ ।
ପିତାଙ୍କର ଯଜ୍ଞକୁଣ୍ଡେ ପଡ଼ି ସେହିକ୍ଷଣି
ଦେହ ତ୍ୟାଗକରି ଜନ୍ମଲଭି କଲେ ପୁଣି ।
ପର୍ବତରାଜନପ୍ରିୟା ଗର୍ଭୁ ଉତପତି
ହେବାରୁ ତାଙ୍କର ନାମ ଅଟଇ ପାର୍ବତୀ ।
ଆପଣ ତ ସବୁ ଜାଣିଛନ୍ତି ଭଲକରି
କହିବା ବାହୁଲ୍ୟମାତ୍ର ଅଟଇ ମୋହରି ।
ଏଥିରେ ଯେ ପରିମାଣ ଫଳ ହେବ ଯାହା
ବିସ୍ତାରେଣ ମୋ ଆଗରେ କହ ତତ୍ତ୍ୱବାହା ।
କାମିନୀ ସ୍ୱଭାବ ଅଟେ ସହଜେ ଚପଳ
କ୍ଷଣେକେ ବଜ୍ରସଦୃଶ କ୍ଷଣକେ କୋମଳ ।
ସକଳ ମୋହକାରଣ ସ୍ତ୍ରୀଙ୍କ ସ୍ୱରୂପ
ଭଙ୍ଗ କରିପାରେ ହେଲେ ଯୋଗଧ୍ୟାନ ତପ ।
ଜିତେନ୍ଦ୍ରିୟ ତପୋବନ୍ତ ହେଲେ ଆତ୍ମେମାନେ
ଧୈର୍ଯ୍ୟକୁ ରକ୍ଷାକରି ନ ପାରିଲେ ମନେ ।
ଏ ବାହାରେ କତନୋଧ ମୁନି ଋଷିଙ୍କର
କାମିନୀ ରୂପରେ ଚିତ୍ତ ହୁଅଇ ଅସ୍ଥିର ।
ସକଳ ମାୟା ଭଣ୍ଡାର ବନ୍ଧନ କାରଣ
କେବଳ କାମିନୀ ଜାତି ଅଟେ ବୋଲି ଜାଣ ।
କାମଦେବର ଦୁର୍ଭେଦ୍ୟ ବ୍ରହ୍ମଅସ୍ତ୍ର ଯେହୁ
ତା ଯୋଗେ ମକରଧ୍ୱଜ ଜଗତ ଜିଣଇ ।

ମୋହଦ୍ୱାର କବାଟର ଅର୍ଗଳ କାରିଣୀ
ଶ୍ରୀହରି ଭକତିଯୋଗ ଧ୍ୟାନ ବିଧ୍ୱଂସିନୀ ।
ସଂସାର ବନ୍ଧନ ସୂତ୍ର ରଜ୍ଜୁ ବୋଲି କରି
ପରିଚିତ ହୋଇଅଛି ଜଗତରେ ସ୍ତ୍ରୀ ।
ବୈରାଗ୍ୟ ବିନାଶ ପୁଣି ଭୋଗ ବର୍ଦ୍ଧନ
କାମିନୀ ପ୍ରେମ ହେତୁରେ ହୁଅଇଟି ଜାଣ ।
ସାଧନର ଗୁହ ମହାବ୍ୟାପର ଆଳୟ
ଅବିଶ୍ୱାସ କ୍ଷେତ୍ର ଅଟେ କାମିନୀ ହୃଦୟ ।
ଅହଂକାର ଆଶ୍ରମ ଯେ କପଟ ମୂରତି
ଦୁଗ୍ଧମୁଖୀ ବିଷକୁମ୍ଭ ବୋଲି ତାର ଖ୍ୟାତି ।
ସକଳ ଲୋକର ଯେହୁ ଅସାଧ୍ୟ ପଦାର୍ଥ
ଅବଧିବାପାଇଁ ତାକୁ ନୁହେଁ କେ ସମର୍ଥ ।
ଭ୍ରାତୃ ବିରୋଧ କଳହ ସ୍ତ୍ରୀଙ୍କ ହେତୁରେ
ଜାତ ହୁଅଇ ପ୍ରତ୍ୟେକ ଗୃହସ୍ଥଙ୍କ ଘରେ ।
ଏ ସକାଶୁ ଆପଣଙ୍କୁ ପଚାରୁଛି ମୁହିଁ
ଏଥିର ସନ୍ଦେହ ମୋତେ କହନ୍ତୁ ବୁଝାଇ ।
ଏହିରୂପେ ପଚାରନ୍ତେ ବୃଷଭ ବାହନ
କହିଲେ ତାହାଙ୍କୁ ହସି ଦେବ ଜନାର୍ଦ୍ଦନ ।
ବ୍ରହ୍ମା ଇନ୍ଦ୍ର ଆଦି କରି ସକଳ ଦେବତା
ନୀରବ ହେଲେ ଶୁଣିବାପାଇଁ କି ସେ କଥା ।
ସତ୍ୟପ୍ରିୟ ସୁମଧୁର ବଚନ ଛନ୍ଦରେ
ଶିବଙ୍କ ମୁଖକୁ ଚାହିଁ କହିଲେ ସପ୍ରୀତିରେ ।
ବୋଇଲେ ହେ ମହାଦେବ ପଚାରିଲ ଯାହା
କହୁଅଛି ମନଦେଇ ଶୁଣ ଏବେ ତାହା ।
ସକଳ ବ୍ରତରେ ଏହି ବ୍ରତ ଅଟେ ସାର
ସନ୍ତାନକାରକ ଏହା ସତ୍ୟ ସ୍ତ୍ରୀଲୋକଙ୍କର ।
ଆବର ସ୍ୱାମୀ ସୌଭାଗ୍ୟ କାରଣ ଅଟଇ
କଳପ ପାଦପ ତୁଲ୍ୟ ଫଳକୁ ଦିଅଇ ।
ଏ ମହାବ୍ରତରେ ପୂଜା ପାଆନ୍ତି ଶ୍ରୀହରି
ଭକତ ଜନର ମନୋବାଞ୍ଛା ପୂର୍ଣ୍ଣ କରି ।
ସକଳ ଆତ୍ମା ସ୍ୱରୂପ ଅଟନ୍ତି ଯେହୁ
ସାକ୍ଷୀରୂପେ ସର୍ବପ୍ରାଣୀ ଦେହେ ଥାନ୍ତି ରହି ।
ଜ୍ୟୋତିର୍ମୟ ସନାତନ ସକଳ ଆଶ୍ରୟ
ନିର୍ଲିପ୍ତ ଉପାଧିଶୂନ୍ୟ ପ୍ରଭୁ ନିରାମୟ ।
ସର୍ବପ୍ରାଣ ସର୍ବେଶ୍ୱର ଭକତବତ୍ସଳ
ନିତ୍ୟ ଶୁଦ୍ଧ ସଦାନନ୍ଦ ଦେବ ଆଦିମୂଳ ।

ଭକ୍ତିବିନା ଆରାଧ୍ୟ ଯେ ନୁହନ୍ତି କାହାର
ବସିଥାନ୍ତି ଯୋଗୀଗଣ ତାଙ୍କ ରୂପ ସ୍ମରି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଯେତେ ଦେବ
ସେ ମହାପୁରୁଷଙ୍କର ଅଂଶବୋଲି ଭାବ ।
ମହା ବିରାଟ ପୁରୁଷ ତାଙ୍କଠାରୁ ଜାତ
ହୋଇ ଅଛନ୍ତି ପାଳିବା ପାଇଁ ଏ ଜଗତ ।
ତୁମ୍ଭମାନଙ୍କର ସେହି ପାଳନକରତା
ଆବର ଦଣ୍ଡମଣ୍ଡନ ବିଧାନ ବିଧାତା ।
ଆପଣଙ୍କ ବିନା ତିନି ଭୁବନ ମଧ୍ୟରେ
ଆରାଧି ନ ପାରେ ତାଙ୍କୁ କୋଟିଏ ଜନ୍ମରେ ।
ପବିତ୍ର ଭାରତବର୍ଷେ ଜନ୍ମଲାଭ କରି
କ୍ଷୁଦ୍ର ଦେବତାଙ୍କୁ ସେବା କରେ ଯେ ବିପ୍ରରେ ।
ସପ୍ତଜନ୍ମ ଅନ୍ତରେ ସେ ହରିଭକ୍ତି ପାଏ
ସେ ଦେହେ ତାହାର ଦିବ୍ୟଜ୍ଞାନ ଜାତ ହୁଏ ।
ଏସ ଅନ୍ତରେ ପୁଣି ସୂର୍ଯ୍ୟଦେବଙ୍କର ମନ୍ତ୍ର
ପ୍ରଭୁଙ୍କ ପ୍ରସାଦ ବଳେ କରଇ ସ୍ୱତନ୍ତ୍ର ।
ତିନିଜନ୍ମ ଯାଏ ସେହି ମନ୍ତ୍ର ଜପ କଲେ
ତୁମ୍ଭର ମନ୍ତ୍ର ପ୍ରାପତ ହୁଅଇଟି ଭଲେ ।
ଭକ୍ତିଭରେ ପୁଣି ସାତଜନ୍ମ ପର୍ଯ୍ୟନ୍ତେ
ତୁମ୍ଭଙ୍କୁ ସେବା କରଣ ମାନବ କାଙ୍କ୍ଷିତେ ।
ତୁମ୍ଭ ପ୍ରସାଦରେ ମାୟାଦେବୀଙ୍କ ମନ୍ତ୍ରକୁ
ଲଭିକରି ଜପେ ଶତଜନ୍ମ ଯାଏ ତାକୁ ।
ସେ ସକାଶୁ ମହାମାୟା ପରସନ୍ନ ହୋଇ
ପ୍ରଦାନ କରନ୍ତି କୃଷ୍ଣଭକ୍ତି ତୋଷବହି ।
ସେ ମହାଭକତ ଭକ୍ତ ସଂସର୍ଗର ସେତୁ
ବିଷମ ସଙ୍କଟ ଭବସମୁଦ୍ରର ହେତୁ ।
ତାହାକୁ ପାଇଣ ପୁଣ୍ୟ ଭାରତବର୍ଷରେ
ଭ୍ରମଣ କରଇ ଭକ୍ତଜନଙ୍କ ସଙ୍ଗରେ ।
କେତେକାଳ ପରେ ତାହା ପରିପକ୍ୱ ହୁଏ
ଶ୍ରୀକୃଷ୍ଣଙ୍କଠାରେ ଦୃଢ଼ ବିଶ୍ୱାସ ଜନ୍ମାଏ ।
ସକଳ ଦେବତା ତାହାଠାରେ ପରସନ୍ନ
ହୋଇଣ କରନ୍ତି ଶୁଭ ଆଶିଷ ପ୍ରଦାନ ।
ସେ ସକାଶୁ ଶ୍ରୀକୃଷ୍ଣଙ୍କ ମନ୍ତ୍ର ପୁଣ୍ୟବ୍ରତ
କାଙ୍କ୍ଷିତ ମାତ୍ରରେ ତାଙ୍କୁ ହୁଅଇ ପ୍ରାପତ ।
ତହୁଁ ସେ ସର୍ବଦା କୃଷ୍ଣ ପାଦ ପଙ୍କଜରେ
ମନ ନିବେଶ କରଇ ଭକ୍ତି ସହିତରେ ।
କରୁଣାମୟ ଜଗତ ପ୍ରଭୁ ଜନାର୍ଦ୍ଦନ
କାଟନ୍ତି ତାର ସମସ୍ତ ଦୁରିତ ଖଣ୍ଡନ ।
ମହାପ୍ରଳୟ କାଳରେ ସର୍ବ ପ୍ରାଣୀଙ୍କର
ପତନ ହୁଏ ନଷ୍ଟପ୍ରାୟେ ବୋଲି ମନେକର ।
କେବଳ ଶ୍ରୀକୃଷ୍ଣଙ୍କର ଭକ୍ତ ଯେ ଅଟଇ
ପ୍ରଳୟ କାଳରେ ତାର ବିନାଶ ନୁହଇ ।
ଅବିନାଶୀ ଅଟେ ଯେଉଁ ଗୋଲୋକ ଭୁବନ
ତହିଁରେ ବାସକରଇ କୃଷ୍ଣଭକ୍ତ ଜନ ।
ଆହେ ସଦାଶିବ ମହାପ୍ରଳୟ କାଳରେ
ବ୍ରହ୍ମାଦି ଦେବଙ୍କ ନାଶ ଦେଖି ନୟନରେ ।
ଶ୍ରୀକୃଷ୍ଣ ଭକତଗଣ ହସିଣ ତାହାଙ୍କୁ
ବୋଲନ୍ତି କିପାଁ । ଏ ସେବା ନ କଲେ କୃଷ୍ଣଙ୍କୁ ।
ଏହିପରି ଅଟେ କୃଷ୍ଣଭକ୍ତଙ୍କ ମହିମା
ନିଶ୍ଚୟ କରି କେ କହିପାରେ ତାର ସୀମା ।
ସଂହାରକରତା ତୁମ୍ଭେ ସକଳ ଲୋକର
ତୁମ୍ଭଙ୍କୁ ବା କେଉଁ କଥା ଅଟେ ଅଗୋଚର ।
ଶ୍ରୀକୃଷ୍ଣ ଭକତି ବିନା ସମସ୍ତଙ୍କୁ ମୋର
ମୋହିତ କରଇ ମାୟା ବୋଲି ମନେକର ।
ନାରାୟଣୀ ମାୟା ତାର ନାମଟି ଅଟଇ
ଶ୍ରୀକୃଷ୍ଣ ଭକତି ସମସ୍ତଙ୍କୁ ସେ ଦିଅଇ ।
ତାହାର ଅଧୀନ ନ ହୁଅନ୍ତି ଯେଉଁମାନେ
ନ ଦେଖନ୍ତି ଶ୍ରୀକୃଷ୍ଣଙ୍କ ସ୍ୱରୂପ ନୟନେ ।
ସେହି ସେ ଶ୍ରୀକୃଷ୍ଣପ୍ରିୟା ନିତ୍ୟ ସନାତନୀ
ତେଜସ୍ୱରୂପିଣୀ ଇଚ୍ଛାବିଗ୍ରହ ଧାରିଣୀ ।
ଅସୁରଙ୍କୁ ମାରିବାକୁ ଦେବଙ୍କ ତେଜରେ
ଜାତହୋଇ ପ୍ରଭୁଙ୍କର ଇଚ୍ଛା ଅନୁସାରେ ।
ରାକ୍ଷସବଂଶ ନିପାତ କଲା ପରେ ପୁଣି
ଦକ୍ଷ ପ୍ରଜାପତିଙ୍କର ହୋଇଲେ ଦୁଲଣୀ ।
ପିତାର ଯାଗକାଳରେ ତୁମ୍ଭ ନିନ୍ଦା କଥା
ଶୁଣିକରି ମାନସରେ ଉପୁଜଇ ବ୍ୟଥା ।
ହୋମ ଅନଳରେ ପଡ଼ି ଶରୀର ତେଜିଲେ
ଗୋଲୋକରେ ଶ୍ରୀକୃଷ୍ଣଙ୍କ ପାଶରେ ରହିଲେ ।
ତାହାଙ୍କର ରୂପଗୁଣ ସୁମରିଣ ତୁମ୍ଭେ
ଭ୍ରମିଲ ବହୁତ ରହି ନ ପାରିଣ ଦମ୍ଭେ ।
ଶ୍ରୀ ଶୈଳନଦୀ ତଟରେ ଦେଖି ମୁଁ ତୁମ୍ଭଙ୍କୁ
ପ୍ରବୋଧନା କଲି କହି ବିବିଧ କଥାକୁ ।

ଯେ ଅନ୍ତରେ ମହାମାୟା ହିମାଳୟ ଘରେ
କୁମାରୀ ରୂପରେ ଜନ୍ମ ହେଲେ ସ୍ୱଇଚ୍ଛାରେ ।
ଦଇବ ଯୋଗେ ତୁମ୍ଭର ଭାର୍ଯ୍ୟା ହୋଇଲେ
ପୂର୍ବପରି ପାଶେ ରହି ଦିନ ବିତେଇଲେ ।
ଏବେ ଯେ ପୁଣ୍ୟକ ବ୍ରତ କରିବାକୁ ମନ
ବଳାଇ ଅଛନ୍ତି ଜାଣ ଆହେ ତ୍ରିଲୋଚନ ।
ଏ କଥା ଉତ୍ତମରୂପେ ପାଇଲି ମନକୁ
ଅଧିକ ଆଉ କିସ ମୁଁ କହିବି ତୁମ୍ଭଙ୍କୁ ।
ଦଶଶତ ରାଜସୂୟ କଲେ ଯେତେ ଫଳ
ହୁଅଇ ତାହା ପୁଣ୍ୟକ ବ୍ରତରେ କେବଳ ।
ରାଜସୂୟ ସହସ୍ରରେ ଧନବ୍ୟୟ ଯେତେ
ହୁଏ ତହିଁରୁ ଅଧିକ ଏ ପୁଣ୍ୟକ ବ୍ରତେ ।
ସମସ୍ତ କାମିନୀ ଏହା ନ ପାରିବେ କରି
ମୋର କହିବାର ଜାଣ ଆହେ ତ୍ରିପୁରାରି ।
ଏ ମହାବ୍ରତ ସମାପ୍ତ ହେବ ଯେଉଁଦିନ
ଗୋଲୋକ ଭୁବନପତି ସ୍ୱୟଂ ଭଗବାନ ।
ପାର୍ବତୀ ଦେବୀଙ୍କ ଗର୍ଭେ ପୁତ୍ର ରୂପ ଧରି
ଜାତହୋଇବେ ତାହାଙ୍କ ଭକ୍ତିକୁ ସୁମରି ।
ଗଣମାନଙ୍କର ସେହି ହେବେ ଅଧୀଶ୍ୱର
ଯେ ହେତୁ ଗଣେଶ ନାମ ହେବଟି ତାଙ୍କର ।
ତାହାଙ୍କୁ ସ୍ମରଣ କଲେ ବାଧାବିଘ୍ନ ଯେତେ
ସମୂଳେ ବିନାଶ ପ୍ରାପ୍ତ ହୋଇବେ ଭୂତେ ।
ଜଗତ ବିଘ୍ନ ବିନାଶ କରିବା ହେତୁରେ
ବିଘ୍ନେଶ୍ୱର ନାମ ଖ୍ୟାତ ହୋଇବ ଲୋକରେ ।
ପୁଣ୍ୟକ ବ୍ରତରେ ନାନାବିଧ ଦ୍ରବ୍ୟମାନ
ଦେବାରୁ ସେ ସନ୍ତୋଷରେ କରନ୍ତେ ଭୋଜନ ।
ତାହାଙ୍କ ଉଦର ଗୋଟି ଲମ୍ବ ହୋଇଯିବ
ସେ ସକାଶୁ ଲମ୍ବୋଦର ନାମ ଖ୍ୟାତ ହେବ ।
ଶନିଙ୍କର ଦୃଷ୍ଟି ଯୋଗେ ତାଙ୍କ ଶିର ଛିଡ଼ି
ଯିବ ମହାମହିଳାର ବକ୍ଷଦେଶେ ଗଡ଼ି ।
ଗଜ ମସ୍ତକରେ ତହିଁ ଯୁକ୍ତହେବ ଜାସୁ
ସେ ଦିନୁ ହୋଇବେ ଗଜବକ୍ତ୍ର ନାମଧେୟ ।
ପରଶୁରାମଙ୍କ ତୀକ୍ଷ୍ଣ ପରଶୁ ଘାତରେ
ଛିଡ଼ିବ ଗୋଟିଏ ଦନ୍ତ ବାଲ୍ୟ ସମୟରେ ।

ଯେ ସକାଶୁ ଏକଦନ୍ତ ନାମକୁ ବହିବେ
ସକଳ ଲୋକରେ ମହାପ୍ରଭୁ ବୋଲାଇବେ ।
ସମସ୍ତ ଦେବତାଙ୍କର ଅଗ୍ରଭାଗେ ରହି
ତିନିଲୋକେ ଆଗେ ପୂଜା ପାଇବେଟି ସେହି ।
ସନ୍ତୋଷରେ ଏବେ ମୁହିଁ ଦେଉଅଛି ବର
ପ୍ରଥମେ ପୂଜ୍ୟ ହୁଅନ୍ତୁ ତୁମ୍ଭର କୁମର ।
ସମସ୍ତଙ୍କ ଆଗେ ତାଙ୍କୁ ପୂଜାକରି ଜନ
ନିର୍ବିଘ୍ନରେ କାର୍ଯ୍ୟସିଦ୍ଧି କରିବେଟି ଜାଣ ।
ଯେଉଁ ଲୋକ ମୂର୍ଖପଣେ ଆଗେ ଗଣେଶଙ୍କୁ
ପୂଜା ନ କରି ଆରମ୍ଭ କରିବ କର୍ମକୁ ।
ତାହାର ସମସ୍ତ କର୍ମ ହୋଇବ ନିଷ୍ଫଳ
ଆବର ଘଟିବ ମଧ୍ୟ ବିପରୀତ ଫଳ ।
ଗଣେଶ ଦିନେଶ ବିଷ୍ଣୁ ଶମ୍ଭୁ ହୁତାଶନ
କ୍ରମରେ ଏହାଙ୍କୁ ଆଗେ କରିବ ପୂଜନ ।
ତାଙ୍କ ପଶ୍ଚାତରେ ଦୁର୍ଗାଦେବୀଙ୍କୁ ପୂଜିବ
ସେ ଅନ୍ତେ ଅନ୍ୟ ଦେବଙ୍କୁ ଅର୍ଚ୍ଚନା କରିବ ।
ଗଣେଶ ପୂଜାରେ ବିଘ୍ନ ବିନାଶ ହୁଅଇ
ସୂର୍ଯ୍ୟଙ୍କ ଅର୍ଚ୍ଚନା ଯୋଗେ ରୋଗ ନଷ୍ଟ ଯାଇ ।
ଶୁଚିମନ୍ତ ହୁଏ ଲୋକ ବିଷ୍ଣୁଙ୍କ ପୂଜାରେ
ପାପ ବିନାଶନ ମୁକ୍ତ ହୁଏ ସେ ପ୍ରକାରେ ।
ଯଶ ସୁଖ ଅଇଶ୍ୱର୍ଯ୍ୟ ସମ୍ପଦ ମିଳଇ
ଆପଣଙ୍କୁ ପୂଜାକଲେ ଜ୍ଞାନଲାଭ ହୋଇ ।
ସୁବୁଦ୍ଧି ଉତ୍ତମ ସ୍ତ୍ରୀ ଭୂମି ବନ୍ଧୁ ପ୍ରଜା
ପୁଣି କୃଷ୍ଣଭକ୍ତି ମିଳେ କଲେ ଦୁର୍ଗାପୂଜା ।
ଶଙ୍କର ଦୁର୍ଗାଙ୍କ ପୂଜା ଯୋଗେ ମନୁଷ୍ୟର
ସୁଲଭ ହୁଅଇ ମୃତ୍ୟୁଜ୍ଞାନ ନିରନ୍ତର ।
ଷଡ଼ ଦେବତାଙ୍କ ପୂଜା ବିନା ଯେତେ କର୍ମ
ବୃଥା ହୁଏ ସବୁ ଏହା ଶାସ୍ତ୍ରର ନିୟମ ।
ଜଳବିନା ଅନ୍ନଦାନ ଅଟେ ଅକାରଣ
ପାର୍ଶ୍ୱ ଦେବ ପୂଜା ବିନା ଯାଗ ସେହ୍ନେ ଜାଣ ।
ଆନେ ଶିବ ଏହିରୂପେ ପ୍ରତ୍ୟେକ ଯୁଗରେ
ପୂଜା କରାଯାଏ ବ୍ରତ ଯାଗମାନଙ୍କରେ ।
ଦେବଙ୍କ ସଭା ମଧ୍ୟରେ ଦେବ ନାରାୟଣ
ଏମନ୍ତ କହି ଯେକାଳେ ହୋଇଲେ ମଉନ ।

ଶଙ୍କର ପାର୍ବତୀ ଶୁଣିଲେ ସକଳ ଦେବତା
ଆନନ୍ଦିତ ହୋଇଲେ ଶୁଣି ସ୍ତୁତି ମନୁ ଶାସ୍ତା ।
ବୋଇଲେ ପରେ ଶେଷବାସୀ ଆହେ ବିଜ୍ଞଜନେ
ଶ୍ରୀକୃଷ୍ଣଙ୍କ ପାଦେ ମନ ଦିଅ ଅନୁକ୍ଷଣେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପାର୍ବତୀଦେବୀଙ୍କ ବ୍ରତ ସମ୍ବନ୍ଧେ
ସର୍ବ ସୁରଙ୍କର କଥୋପକଥନେ ନାମ ଷଷ୍ଠୋଽଧ୍ୟାୟଃ ।

—*—

# ସପ୍ତମ ଅଧ୍ୟାୟ

## ଶିବ ବିଷ୍ଣୁ ପ୍ରଭୃତି ଦେବଙ୍କର ଓ ମୁନିଋଷିମାନଙ୍କର ପାର୍ବତୀଙ୍କ ପ୍ରତି ଯଜ୍ଞଦକ୍ଷିଣା ସମ୍ବନ୍ଧେ ନାନାପ୍ରକାର ଉପଦେଶ ପ୍ରଦାନ କରିବା

ଏଥୁଅନ୍ତେ ପାଦାନ୍ତେ ଶୁଣି ଦେଇ ମନ
ନାରଦ ଆଗେ କହିଲେ ଋଷି ନାରାୟଣ ।
ଶ୍ରୀ ବିଷ୍ଣୁଙ୍କଠାରୁ ଏହା ଶୁଣି ତ୍ରିପୁରାରି
ମହାଦେବୀଙ୍କ ଅଗ୍ରତେ କହିଲେ ବିଧାତା ।
ଆବର ହରିଙ୍କ ଉପାସନା ବିଧିମାନ
କରିବା ପାଇଁ ଆଦେଶ ଦେଲେକ ବନ୍ଦନ ।
ଶ୍ରବଣ ମାତ୍ରେ ପାର୍ବତୀ ଆନନ୍ଦ ହୋଇଲେ
ସ୍ନାନକରି ଧୌତବସ୍ତ୍ର ପରିଧାନ କଲେ ।
ଶୁକ୍ଳ ଧାନ୍ୟ ଉପରେ ସୁବର୍ଣ୍ଣ କଳସ
ସ୍ଥାପନ କଲେ ବ୍ରତରେ ଦେଇଣ ମାନସ ।
ରତ୍ନପତ୍ର ନାରିକେଳ ଫଳ ତାହା ପରେ
ଥୋଇଲେ ଅତ୍ୟନ୍ତ ଯତ୍ନକରି ସେ କାଳରେ ।
କସ୍ତୁରୀ କୁଙ୍କୁମ ଗନ୍ଧ ଚନ୍ଦନ ଅକ୍ଷତ
ଦେଇଣ ନୂତନ ବସ୍ତ୍ରେ କଲେ ବିଭୂଷିତ ।
ସମ୍ଭାବନା କରି ମୁନି ଋଷିଙ୍କୁ ସତ୍ୱରେ
ବସାଇଲେ ନେଇ ରତ୍ନ ସିଂହାସନ ପରେ ।
ପୁରୋହିତଙ୍କୁ ଉତ୍ତମ ଆସନେ ବସାଇ
ପୂଜାକଲେ ଗନ୍ଧପୁଷ୍ପ ଅଳଙ୍କାର ଦେଇ ।
ନିଜେ ରତ୍ନ ସିଂହାସନ ଉପରେ ବସିଲେ
ପୂଜାଦ୍ରବ୍ୟ ଆଣି ସବୁ ପାଶେ ରଖାଇଲେ ।
ଇନ୍ଦ୍ର ଆଦି ଦଶଦିଗପାଳଙ୍କୁ ଆଗରେ
ବସାଇ ଭୂଷିତ କଲେ ବସ୍ତ୍ର ଅଳଙ୍କାରେ ।
ଅନ୍ୟ ଦେବତାମାନଙ୍କୁ ତାହାଙ୍କର ପାଶେ
ସ୍ଥାପନା କରିଣ ପୂଜା କଲେ ସେ ହରଷେ ।
ସମସ୍ତଙ୍କ ମଧ୍ୟେ ବ୍ରହ୍ମା ବିଷ୍ଣୁ ଶଙ୍କରଙ୍କୁ
ବସାଇ ଅର୍ଚ୍ଚନା କଲେ ପ୍ରକାଶି ଭକ୍ତିକୁ ।
ଚନ୍ଦନ କୁସୁମ ବହ୍ନି ଶୁଦ୍ଧ ଦିବ୍ୟବାସ
ନାନାରତ୍ନ ନିର୍ମିତ ଭୂଷଣ ବିଶେଷ ।
ସମର୍ପଣ କରି ଦେବୀ ଅତି ଆନନ୍ଦରେ
ଆରମ୍ଭ କଲେ ପୁଣ୍ୟକ ବ୍ରତ ସୁମନରେ ।
ପ୍ରଥମେ ବରୁଣ ପୂଜା କରି ସମାପନ
ସେ ଅନ୍ତରେ କଲେ ପୁଣି ସ୍ୱସ୍ତିକ ବାଚନ ।
ଇଷ୍ଟଦେବ ଶ୍ରୀକୃଷ୍ଣଙ୍କୁ ମଙ୍ଗଳ ଘଟରେ
ଆବାହନ କଲେ ଶାସ୍ତ୍ର ବିଧି ଅନୁସାରେ ।
କ୍ରମରେ ଦେଇ ଷୋଡଶ ଉପଚାରମାନ
କଲେ ପୁଣି ନାନାବିଧ ସ୍ତୁତି ସ୍ତୋତ୍ର ଗାନ ।
ସମର୍ପଣ କରିବାକୁ ଥିଲା ଯେତେ ଦ୍ରବ୍ୟ
ଉପହାର ସହିତରେ ଦେଲେ ତାହା ସର୍ବ ।
ସେ ଅନ୍ତରେ ବେଦମନ୍ତ୍ର ବାକ୍ୟ ଅନୁସରି
ହୋମ କରାଇଲେ ଅନଳରେ ଘୃତ ଭରି ।
ଦ୍ୱିଜଙ୍କୁ ଡକାଇ ଦିବ୍ୟ ଭୋଜନକୁ ଦେଲେ
ଦେବତାମାନଙ୍କୁ ଯଥାବିଧି ପୂଜା କଲେ ।
ଉପସ୍ଥିତ ଥିଲେ ତହିଁ ଯେତେ ଅଭ୍ୟାଗତ
ତୋଷ କରାଇଲେ ସତୀ ସବୁଙ୍କର ଚିତ୍ତ ।
ଏରୂପେ ସମସ୍ତ ଭାବେ ବରଷେ ପର୍ଯ୍ୟନ୍ତ
ପୂଜା କରିଣ ସମ୍ପୂର୍ଣ୍ଣ କଲେ ସେହି ବ୍ରତ ।
ସମାପନ ଦିବସରେ ପୁରୋହିତ ଦ୍ୱିଜ
ବୋଇଲେ ହେ ଗୋ ଦେବୀ ବ୍ରତ ପୂର୍ଣ୍ଣହେଲା ଆଜ ।
ଦକ୍ଷିଣା ସ୍ୱରୂପେ ଏବେ ପତିଙ୍କୁ ତୁମ୍ଭର
ଦିଅ ମାନସରେ କିଛି ନ କରି ବିଚାର ।
ଏରୂପେ ପୁରୋହିତଙ୍କ ବଚନକୁ ଶୁଣି
କାତର ହୋଇଣ ଦେବୀ ପର୍ବତ ଦୁଲଣୀ ।

ବିଳାପ କରି ଶୋକରେ ମୂର୍ଚ୍ଛିତା ହୋଇଲେ
ତାହା ଦେଖି ମୁନିଗଣ ହାସ ପ୍ରକାଶିଲେ ।
ବ୍ରହ୍ମା ବିଷ୍ଣୁ ଆଦିକରି ଦେବତା ସମସ୍ତେ
ଶଙ୍କରଙ୍କୁ ପଠାଇଲେ ବୋଧିବା ନିମନ୍ତେ ।
ସମ୍ମତ କରି ଦେବ ଗଲେ ତତକ୍ଷଣ
ପାର୍ବତୀଙ୍କ ସମୀପରେ ମିଳିଲେ ତହନ ।
ସଚେତନା କରାଇ ତାଙ୍କୁ ବସାଇ ପାଶରେ
ପ୍ରବୋଧନା କଲେ କହି ନାନା ପ୍ରକାରେ
ବୋଇଲେ ଗୋ ଦେବୀ ତୁମ୍ଭେ ନ ହୁଅ ଚାଟିକା
ମଙ୍ଗଳ ନୋହିବ କଷ୍ଟେଁ ଶୁଣ ସନ୍ତୁଷ୍ଟା ।
ମୋର କହିବା ବଚନ ଶୁଣ ମନଦେଇ
କ୍ଲେଶ ବିନା ଶୁଭଫଳ କେବେ ନ ମିଳଇ ।
ବେଦ ଶାସ୍ତ୍ର ଯାହା ହୋଇଅଛି ନିରୂପିତ
ଆଚର ଯେ ଧର୍ମତତ୍ତ୍ୱ ଜ୍ଞାନୀଙ୍କ ସମ୍ମତ ।
ଏବେ ମୋହଠାରୁ ତାହା ଶୁଣି ସ୍ଥିର ହୁଅ
ଶୁଣିବା ମାତ୍ରକେ ଦୂର ହୋଇବ ସନ୍ଦେହ ।
ସକଳ କର୍ମର ସାର ଅଟଇ ଦକ୍ଷିଣା
ଦକ୍ଷିଣା ନ ଦେଲେ ପୂର୍ଣ୍ଣ ନୁହଇ କାମନା ।
ଦକ୍ଷିଣା ଯୋଗରେ ସର୍ବ ଧର୍ମ ବୃଦ୍ଧି ହୁଏ
ନୋହିଲେ ସକଳ ବୃଥା ହୁଅଇ ନିଶ୍ଚୟେ ।
ଦେବତା ପୈତୃକ ଅବା ନିତ୍ୟ ନୈମିତ୍ତିକ
ମଙ୍ଗଳ ସକାଶେ କର୍ମ ହୁଅଇ ଯେତେକ ।
ଦକ୍ଷିଣାହୀନ ହୋଇଲେ ତାର ଫଳ କିଛି
ପ୍ରାପତ ନୁହଇ କେବେ ଜାଣ କହୁଅଛି ।
କର୍ମ କରାଇବା ଲୋକେ କାଳସୂତ୍ରେ ଯାଇ
ପଡ଼ି ନାନା ପ୍ରକାରେ ଦୁଃଖ ଭୋଗୁଥାଇ ।
ଇହଲୋକେ ଶାପ ପୀଡ଼ା ଦୈନ୍ୟ ଅପମାନ
ଭୋଗ କରଇ ଦକ୍ଷିଣା ନ ଦିଏ ଯେ ଜନ ।
ଯେଉଁ ମୁହୂର୍ତ୍ତରେ କର୍ମ ସମାପନ ହେବ
ସେହିକ୍ଷଣି ଦ୍ୱିଜହସ୍ତେ ଦକ୍ଷିଣାକୁ ଦେବ ।
ଘଡ଼ିଏ ବିଳମ୍ବ ହେଲେ ତହିଁର ଦ୍ୱିଗୁଣ
ଦେବାପାଇଁ ଅଟେ ଶ୍ରୁତିଶାସ୍ତ୍ରର ପ୍ରମାଣ ।
ଗୋଟିଏ ଦିନ ବିଳମ୍ବ ହୁଅଇଟି ଯେବେ
ଶତଗୁଣ କରି ତାହା ଦେବ ଜାଣ ତେବେ ।
ପକ୍ଷେ ବିଳମ୍ବ ହୋଇଲେ ଦେବ ଶତଗୁଣ
ମାସକରେ ପଞ୍ଚଶତ ଗୁଣ ହୁଏ ପୁଣ ।
ସମ୍ବତ୍ସର ବିଳମ୍ବେ ତାର [illegible] ହୁଏ
ବର୍ଷେ ହୋଇଲେ କର୍ମଫଳ ନାଶଯାଏ ।
ସହସ୍ରେ ବର୍ଷେ ଦାତା ପଡ଼ଇ ନରକେ
ନାନା ଦୁଃଖ କଷ୍ଟ ଭୋଗ କରି ଯମଲୋକେ ।
ପୁତ୍ର ପୌତ୍ର ଧନ ଐଶ୍ୱର୍ଯ୍ୟ ସବୁ ତାର
ବିନାଶ ହୁଅଇ ଏଥି ସନ୍ଦେହ ନ କର ।
ଏରୂପେ କହନ୍ତେ ଶିବ ନୀରବ ହୋଇଲେ
ପାର୍ବତୀଙ୍କୁ ବ୍ରହ୍ମା ବିଷ୍ଣୁ ବଚନ କହିଲେ ।
ବୋଇଲେ ଗୋ ଧର୍ମଶୀଳେ ଧର୍ମ ଅନୁଷ୍ଠାନ
କାର୍ଯ୍ୟରେ କଦାପି ତୁମ୍ଭେ ନ ହୁଅ ବିମନ ।
ନିଜ ଧର୍ମ ପାଳନରେ ଜଗତ ଲୋକର
ମଙ୍ଗଳ ହୁଅଇ ଜାଣ ରମଣୀଙ୍କ ବର ।
ବ୍ରହ୍ମା ବୋଇଲେ ପାର୍ବତୀ କାହିଁପାଇଁ ଚିନ୍ତା
କରୁଅଛ ତୁମ୍ଭର କି ନାହିଁ ବିବେକତା ।
ନିଜ ଧର୍ମ ରକ୍ଷାକରି ନ ପାରିଲେ ସେହି
ସକଳ କାର୍ଯ୍ୟ ତାହାର ନିଷ୍ଫଳ ହୁଅଇ ।
ସେ ଅନ୍ତରେ ଧର୍ମଦେବ ବୋଇଲେକ ଦେବୀ
ମୋତେ ରକ୍ଷାକର ତୁମ୍ଭେ ମାନସରେ ଭାବି ।
ମୁହିଁ ଥିଲେ ସର୍ବଶୁଭ ହୋଇବଟି ଜାଣ
ଦକ୍ଷିଣା ସ୍ୱରୂପେ କର ପତିଙ୍କୁ ପ୍ରଦାନ ।
ସେ ଅନ୍ତରେ ଦେବଗଣ ଏକମତ ହୋଇ
ବୋଇଲେ ଆମ୍ଭର ବାକ୍ୟ ଶୁଣ ମହାମାୟୀ ।
ସକଳ ଯୁଗରେ ତୁମ୍ଭେ ଅଟ ପରିପୂର୍ଣ୍ଣ
ଦକ୍ଷିଣା ଦେଇଣ କର ସ୍ୱଧର୍ମ ପାଳନ ।
ବ୍ରତ ଶେଷ ହେଲେ ଆମ୍ଭେ ତୁମ୍ଭ ମନୋରଥ
ସମ୍ପୂର୍ଣ୍ଣ କରିବୁ ଏହା ଅଟଇ ଯଥାର୍ଥ ।
ମୁନିଏ ବୋଇଲେ ଦେବୀ ଋତ୍ୱିକଙ୍କ ଦକ୍ଷିଣା
ଦିଅ କାହିଁପାଇଁ ଆଉ ହେଉଛ ବିମନା ।
ଆମ୍ଭେମାନେ ପ୍ରତାପରେ ତୁମ୍ଭର ଅହିତ
ହେବ ବୋଲି କରି କେବେ ନ ଧରୁଁ ଚିତ୍ତ ।
ସେ ଅନ୍ତରେ ପୁରୋହିତ ସନତ୍କୁମାର
ବୋଇଲେ ଗୋ ମାତ କିଛି ଭାବନା ନ କର ।
ଶିବଙ୍କୁ ଦକ୍ଷିଣାରୂପେ ଦିଅ ଏବେ ମୋତେ
ପ୍ରାପତ ହୋଇବ ବ୍ରତ ଫଳାଫଳ ଯେତେ ।
ନୋହିଲେ ସମସ୍ତ ମୋର ସଙ୍ଗେ ସଙ୍ଗେ ଯିବ
ତୁମ୍ଭେ ମାତ୍ର ଯଜମାନ ନାମଟି ପାଇବ ।

ଯେ ଲୋକ କର୍ମ କରଇ ଦକ୍ଷିଣା ନ ଦିଏ
ସେ କର୍ମର ଫଳ ସବୁ ପୁରୋହିତ ନିଏ ।
ତା ଶୁଣି ପାର୍ବତୀ ଦେବୀ ହୋଇଣ ବିମନ
ବୋଇଲେ ମୋଠାରୁ ଶୁଣ ଦେବଋଷିଗଣ ।
ଦକ୍ଷିଣା ସ୍ୱରୂପେ ଯେବେ ପତିଙ୍କୁ ମୁଁ ଦେବି
ବ୍ରତ କରିବାରେ କେଉଁ ଯଶ ଅରଜିବି ।
କର୍ମରେ ବା ଦକ୍ଷିଣାରେ ଅଛି କେଉଁ କାର୍ଯ୍ୟ
ସକଳ ବ୍ୟର୍ଥ ବୋଲି ଭାବୁଅଛି ଆଜ ।
ଭୂମି ବର୍ଷଣରେ ଅବା ବୃକ୍ଷ ବର୍ଦ୍ଧନରେ
ଶସ୍ୟ ପୁଷ୍ପଫଳ ଜାତ ହୁଏ ଯେଉଁଠାରେ ।
ଆପଣା ଇଚ୍ଛାରେ ଯେବେ ତେଜିବି ଜୀବନ
ଦେହ ଥାଇ କରି କିବା ହେବ ପ୍ରୟୋଜନ ।
ଦେଖିବା ପାଇଁକି ଯେବେ ଶକତି ନ ଥିବ
ଚକ୍ଷୁ ପାଇକରି ଅବା କି କାର୍ଯ୍ୟ ହୋଇବ ।
ଜାଣି ଜାଣି ପତିଙ୍କୁ ମୁଁ ହରାଇବି ଯେବେ
କି କାର୍ଯ୍ୟ ହୋଇବ ଜୀବ ଥାଇକରି ତେବେ ।
ପତିତ ଅଟନ୍ତି ଶତ ପୁତ୍ରର ସମାନ
ପତିହୀନ ହେଲେ ବୃଥା ସତୀର ଜୀବନ ।
ବ୍ରତର ଦକ୍ଷିଣା ଯେବେ ହେବେ ପ୍ରାଣେଶ୍ୱର
କି ହେବ ସେ ବ୍ରତଫଳ ପାଇକରି ମୋର ।
ପତି ସକାଶରୁ ସିନା ହୁଅଇ ସନ୍ତାନ
ମୂଳନଷ୍ଟ ହେଲେ ବୃଦ୍ଧି ହେବ କାହୁଁ ଧନ ।
ବିଷ୍ଣୁ ବୋଇଲେ ପାର୍ବତୀ କର କର୍ପଁ । ଶନ୍ତା
ମୁଁ ଜାଣଇ ପୁତ୍ରଠାରୁ ଶ୍ରେଷ୍ଠ ଅଟେ ଭର୍ତ୍ତା ।
ଭର୍ତ୍ତାଠାରୁ ଶାସ୍ତ୍ରେ ଅଧିକ ଧରମ
ଧର୍ମନାଶ ହେଲେ ବୃଥା ହୁଏ ସବୁ କର୍ମ ।
ବିଧାତା ବୋଇଲେ ଶୁଣ ସଦାଶିବ ପ୍ରିୟେ
ସ୍ୱାମୀଠାରୁ ହେଲେ ଧର୍ମ ଅଧିକ ବୋଲାଏ ।
ଧର୍ମଠାରୁ ସତ୍ୟ ଅଟେ ଅତ୍ୟନ୍ତ ଉତ୍କୃଷ୍ଟ
ସତ୍ୟ ନ ଦେଖିଲେ କର୍ମଫଳ ଯାଏ ନଷ୍ଟ ।
ଏଥି ସକାଶରୁ ତୁମ୍ଭେ ସତ୍ୟରକ୍ଷା କର
ସକଳକାର୍ଯ୍ୟ ସଫଳ ହୋଇବ ତୁମ୍ଭର ।
ପାର୍ବତୀ ବୋଇଲେ ଆହେ ବେଦଅଧିପତି
କହୁଅଛ ଯାହା ମୁହିଁ ଶୁଣ ଦେଇ ମତି ।
ବେଦରେ ତ ଲେଖାଅଛି ସ୍ୱଣବଦ ଅର୍ଥ
ଧନକୁ ବୁଝାଏ ଏହା ନୁହେ କି ଯଥାର୍ଥ ।
ପୁତ୍ର ଭାର୍ଯ୍ୟା ସୁବର୍ଣ୍ଣ ରତ୍ନ ଆଦିକରି
ଧନନାମେ ଜଗତରେ ବିଖ୍ୟାତ ସେସରି ।
ଯାହାଠାରେ ଧନଥାଏ ସ୍ୱାମୀ ସେ ବୋଲାଏ
ତାର ଅଧୀନରେ ସେହି ଧନ ରହିଥାଏ ।
ଯେତେବେଳେ ଇଚ୍ଛାହୁଏ ଦାନ ଉପଭୋଗ
କରଇ ନିଶ୍ଚିନ୍ତଭାବେ ଆହେ ମହାଭାଗ ।
ଏମନ୍ତ ଅଟଇ ସିନା ଶାସ୍ତ୍ରର ବିଧାନ
ଧନ କି କରି ପାରଇ ସ୍ୱାମୀକୁ ପ୍ରଦାନ ।
ଏ ସକାଶୁ ଜାଣୁଅଛି ଶାସ୍ତ୍ରର ବ୍ୟବସ୍ଥା
ନିଶ୍ଚିତି ହୋଇ ତହିଁରେ ନାହିଁ କେଉଁ କଥା ।
ତାହା ଶୁଣି ପୁଣି ଧର୍ମ ଦେବତା କହିଲେ
ଶୁଣ ଗୋ ପାର୍ବତୀଦେବୀ ମୋହଠାରୁ ଭଲେ ।
ପତ୍ନୀ ବିନା ଆଉ ଯେତେ ଧନ ଜଗତରେ
ସ୍ୱାମୀକୁ ପ୍ରଦାନ କେହି କରିଣି ନ ପାରେ ।
ପତିପତ୍ନୀ ଦୁହେଁ ଏକ ଅଙ୍ଗ ଏକ ପ୍ରାଣ
ହେବାରୁ ଦୁହିଁଙ୍କୁ ଦୁହେଁ କରନ୍ତି ପ୍ରଦାନ ।
ପାର୍ବତୀ ବୋଇଲେ ପିତା କନ୍ୟା ସଂପ୍ରଦାନ
କଲାବେଳେ ପତି ତାକୁ କରନ୍ତି ଗ୍ରହଣ ।
ସେହି କନ୍ୟା ପୁଣି ନିଜ ପତିକୁ ଦେବାକୁ
ସମର୍ଥ ହୋଇବ କେହି ନ ଆସେ ମନକୁ ।
ଶ୍ରୁତିଶାସ୍ତ୍ର ପରାୟଣ ହୋଇ ତୁମ୍ଭେମାନେ
ବିପରୀତ କଥା କହୁଅଛ ଅକାରଣେ ।
ତାହାଶୁଣି ଦେବଗଣ ଆଶ୍ଚର୍ଯ୍ୟ ହୋଇଲେ
ପାର୍ବତୀଙ୍କୁ ଅନାଇଣ ବଚନେ କହିଲେ ।
ବୋଇଲେ ଗୋ ଦେବୀ ତୁମ୍ଭେ ବୁଦ୍ଧି ସ୍ୱରୂପିଣୀ
ବୁଦ୍ଧିମନ୍ତ ଅଟୁ ଆମ୍ଭେ ତୁମ୍ଭ କୃପା ଘେନି ।
ବେଦଶାସ୍ତ୍ର ଜାଣିବାରେ ତୁମ୍ଭକୁ ଅଧିକ
ହେଲାପରି ଜଗତରେ ନାହିଁ କେଉଁ ଲୋକ ।
ଶାସ୍ତ୍ରରେ ତ ଲେଖାଅଛି ଏ ପୁଣ୍ୟକବ୍ରତେ
ପତିଙ୍କୁ ଦକ୍ଷିଣାରୂପେ ଦେବ ତୋଷଚିତ୍ତେ ।
ନ ଦେଲେ କର୍ମର ସବୁ ଫଳଯାଏ ନାଶ
ତୁମ୍ଭେ କି ନ ଜାଣ ଆମ୍ଭେ ବତାଉବୁ କିସ ।
ପାର୍ବତୀ ବୋଇଲେ ବେଦ ଶାସ୍ତ୍ର ଅନୁସାରେ
କିଏ ଅବା ସବୁବେଳେ କାର୍ଯ୍ୟ କରିପାରେ ।
ବେଦଠାରୁ ଲୋକାଚାର ଅଟଇ ପ୍ରବଳ
ଜଗତ ମଧ୍ୟରେ ତାହା ଅଧିକ ପ୍ରଚଳ ।

ପ୍ରକୃତିଠାରୁ ପୁରୁଷ ପ୍ରଧାନ ଅଟଇ
ଏହିରୂପେ ମଧ୍ୟ ବେଦଶାସ୍ତ୍ର ଅଛି କହି ।
ବୃହସ୍ପତି ବୋଇଲେ ମୁଁ ଜାଣେ ଭଲ କରି
ପ୍ରକୃତି ପୁରୁଷ ଦୁହେଁ ଦୁହିଁଙ୍କର ସରି ।
ଶ୍ରୀକୃଷ୍ଣ ବୋଇଲେ ଦୁହେଁ ଜାତ ହୋଇଛନ୍ତି
ଦୁହିଙ୍କ ଯୋଗରେ ହୁଏ ସଂସାର ଉତ୍ପତ୍ତି ।
ପାର୍ବତୀ ବୋଇଲେ ସବୁ ଲୋକଙ୍କ ସର୍ଜ୍ଜନା
କରିଛନ୍ତି ଯେଉଁ କୃଷ୍ଣ ନିତ୍ୟ ସନାତନ ।
ଅଂଶରେ ସ୍ୱରୂପ ରୂପ ହୋଇ ସେ ଅଛନ୍ତି
ପ୍ରକୃତିଠାରୁ ଅଧିକ ସେହି ତ ବୋଲନ୍ତି ।
ଏରୂପେ ପାର୍ବତୀ ଦେବୀ କହିବା କାଳରେ
ଦେବଋଷିଗଣ ଯେତେ ଥିଲେ ସେ ସଭାରେ ।
ଦେଖିଲେ ଆକାଶେ ଏକ ରଥ ଆସିକରି
ଦେଖାଗଲା ବାଳସୂର୍ଯ୍ୟ ଉଦେ ହେଲା ପରି ।
ସେ ରଥ ମଧ୍ୟରେ ଦେବ ଶଙ୍ଖଚକ୍ରଧର
ବିଜେ କରିଛନ୍ତି ସେନି ପାର୍ଷଦ ନିକର ।
ସମସ୍ତେ ଅଟନ୍ତି ବନମାଳାରେ ଭୂଷିତ
ଚତୁର୍ଭୁଜେ ନାନା ଅଳଙ୍କାର ବିରାଜିତ ।
କ୍ରମେ କ୍ରମେ ରଥ ଆସି ମିଳିଲା ପାଶରେ
ପ୍ରବେଶ ହୋଇଲେ ପ୍ରଭୁ ଦେବଙ୍କ ମଧ୍ୟରେ ।
କୋଟି କନ୍ଦର୍ପ ସମାନ ଦିଶନ୍ତି ସୁନ୍ଦର
ନିନ୍ଦା କରୁଅଛି କାନ୍ତି କୋଟି ଚନ୍ଦ୍ରକର ।
ଅମୂଲ୍ୟ ରତ୍ନଖଚିତ ଶ୍ରେଷ୍ଠ ବିଭୂଷଣ
ସକଳ ଅଙ୍ଗରେ ଥାଇ ଦିଶେ ଶୋଭାବନ ।
ତାହାଙ୍କୁ ଦେଖି ଦେବତା ଋଷି ଥିଲେ ଯେତେ ।
ଆସନରୁ ଉଠି ସ୍ତୁତି କଲେ ସେ ସମସ୍ତେ ।
ବ୍ରହ୍ମାଆଦି ସୁରଗଣେ ବିନୟ ଭାବରେ
ବସାଇଲେ ନେଇ ରତ୍ନସିଂହାସନପରେ ।
ତାହାଙ୍କ ତେଜରେ ସର୍ବେ ଲୁଚିଗଲା ପରି
ହେଲେ ସେ କାଳରେ ଜାଣ ଆହେ ତପସ୍ୱୀ ।
ମସ୍ତକରେ କରଯୋଡ଼ି ସେ ସାନା ମତରେ ।
ସ୍ତୁତି କଲେ ପୁଣି ଭକ୍ତ ସେନି ହୃଦପୁରେ ।
ତାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ନାରାୟଣ
ହସି କହିଲେ ମଧୁର କୋମଳ ବଚନ ।
ଆହେ ଦେବଗଣ ତୁମ୍ଭେ ଶକ୍ତି ସାହାଯ୍ୟରେ
ବଳବନ୍ତ ହୋଇଅଛ ଜାଣ ଏ ସଂସାରେ ।

ଆବର କୀଟ ପତଙ୍ଗ ଆଦି ଯେତେ ପ୍ରାଣୀ
ଶକ୍ତିମନ୍ତ ଅଟନ୍ତି ଶକ୍ତି ବଳ ସେନି ।
ବ୍ରହ୍ମା ଆଦି ସୃଷ୍ଟି ଅଟେ ପ୍ରକୃତି ଅଧୀନ
ପ୍ରକୃତି ବିନା କିଛିହିଁ ନ ହୁଅଇ ଜାଣ ।
ସୃଷ୍ଟି ଆରମ୍ଭରେ ଆମ୍ଭ ଇଚ୍ଛାରେ ସେ ଜାତ
ହୋଇଣ ସର୍ଜନା କରିଥାନ୍ତି ଏ ଜଗତ ।
ଯେତେବେଳେ କରେ ମୁହିଁ ସୃଷ୍ଟି ସଂହରଣ
ସେ ସମୟେ ପୁଣି ସେହି ହୁଅନ୍ତି ବିଲୀନ ।
ସୃଷ୍ଟିର କାରଣ ସେ ତ ସକଳ ଜନନୀ
ମୋହର ମାୟା ସ୍ୱରୂପା ଦେବୀ ନାରାୟଣୀ ।
ପୂର୍ବକାଳେ ମହାଦେବ ବହୁ ତପ କଲେ
ଦିନରାତି ବସି ମୋତେ ଧ୍ୟାନରେ ଭଜିଲେ ।
ସେ ସକାଶୁ ଫଳରୂପେ ଏ ମହାମାୟାଙ୍କୁ
ଦେଲି ମୁହିଁ ସନ୍ତୋଷରେ ପତ୍ନୀରୂପେ ତାଙ୍କୁ ।
ଲୋକ ଶିକ୍ଷା ପାଇଁ ବ୍ରତ କରୁଛନ୍ତି ଏହି
ଏହାଙ୍କୁ ଦୁର୍ଲ୍ଲଭ କିଛି ଜଗତରେ ନାହିଁ ।
ଅନ୍ୟ କେହି ଉପବାସ ବ୍ରତ ଆଦି କଲେ
ତାହାଙ୍କୁ ଫଳ ପ୍ରଦାନ କରନ୍ତି ଏ ଭଲେ ।
ମାୟାରେ ମୋହିତ ହୋଇଅଛନ୍ତି ସମସ୍ତେ
ଏହାଙ୍କର ପ୍ରୟୋଜନ ନାହିଁ କିଛି ବ୍ରତେ ।
ଦେବତାଙ୍କ ଅଧିପତି ବ୍ରହ୍ମା ବିଷ୍ଣୁ ଶିବ
ମୋହର ଅଂଶରେ ହୋଇଅଛନ୍ତି ସମ୍ଭବ ।
କଳାଅଂଶ ସେନି ଦେବ ମନୁଷ୍ୟ ସମସ୍ତେ
ଜାତ ହୋଇ ବାସ କରିଅଛନ୍ତି ଜଗତେ ।
ଯେଉଁରୂପେ କୁମ୍ଭକାର ସ୍ୱର୍ଣ୍ଣକାର ଦୁହେଁ
ମୃତ୍ତିକା ସୁବର୍ଣ୍ଣ କାହିଁ ନ ପାଇବା ଯାଏ ।
ଘଟ ଅବା ଅଳଙ୍କାର କରି ନ ପାରନ୍ତି
ସେ ରୂପେ ମୋହ ସଙ୍ଗରେ ନ ଥିଲେ ପ୍ରକୃତି ।
ସୃଷ୍ଟି ସରଜନା ମୁହିଁ କରି ନ ପାରଇ
ଆହେ ଦେବଗଣ ତୁମ୍ଭେ ଶୁଣ ମନଦେଇ ।
ପ୍ରକୃତି ପ୍ରଧାନ ଅଟେ ସକଳ ଶରୀର
ତହିଁରେ ମୁଁ ଆତ୍ମାରୂପେ ଥାଏ ନିରନ୍ତର ।
ପଞ୍ଚ ମହାଭୂତରେ ସେ ଶରୀର ଗଠିତ
କାଳବଶେ ପୁଣି ତାହା ହୁଅଇ ନିପାତ ।
କେବଳ ମୁଁ ନିତ୍ୟ ସନାତନ ରୂପେ ଥାଇ
ଶରୀର ପତନ କାଳେ ଯାଏ ଆଡ଼ହୋଇ ।

ମୁଁ ଅଟଇ ଆତ୍ମା ଜ୍ଞାନ ଅଟନ୍ତି ଶଙ୍କର
ମନରୂପେ ବିରାଜିତ ଦେବ ଅର୍ଦ୍ଧୀଶ୍ୱର ।
ପଞ୍ଚପ୍ରାଣ ରୂପେ ବିଷ୍ଣୁ ପ୍ରକାଶ ହୁଅନ୍ତି
ବୁଦ୍ଧି ସ୍ୱରୂପ ଧାରଣ କରନ୍ତି ପ୍ରକୃତି ।
ମେଧା ନିଦ୍ରା କ୍ଷମା ଆଦି ଯେତେ ଦେବୀଗଣ
ପ୍ରକୃତି କଳାରୁ ଜନ୍ମିଛନ୍ତି ବୋଲି ଜାଣ ।
ଯେ ମୂଳପ୍ରକୃତିଦେବୀ ହିମାଳୟ ଘରେ
ଜନମ ହୋଇଅଛନ୍ତି କନ୍ୟା ସ୍ୱରୂପରେ ।
ଗୋଲୋକର ଅର୍ଦ୍ଧୀଶ୍ୱର ଅଟଇଟି ମୁହିଁ
ଆବର ଅଟଇ ବୈକୁଣ୍ଠ ପୁର ସାଇଁ ।
ଦ୍ୱିଭୁଜ କୃଷ୍ଣ ସ୍ୱରୂପ ଗୋଲୋକରେ ବହେ
ଚତୁର୍ଭୁଜ ରୂପ ଧରି ବୈକୁଣ୍ଠେ ରହେ ।
ଗୋଲୋକେଗୋପାଳ ଗୋପୀଗଣରେ ବେଷ୍ଟିତ
ବୈକୁଣ୍ଠପୁରେ ବୋଲାଏ ଲକ୍ଷ୍ମୀଦେବୀ କାନ୍ତ ।
ବୈକୁଣ୍ଠରୁ ପଞ୍ଚାଶତକୋଟି ଯୋଜନରେ
ଗୋଲୋକ ଅଛଇ ତାର ଊର୍ଦ୍ଧ୍ୱ ଆକାଶରେ ।
ଯେ ଆସ୍ଥାନେ ରାଧିକାଙ୍କ ସଙ୍ଗତରେ ଯେନ
ରହିଛୁ ସର୍ବଦା ମୁହିଁ ଆହେ ପଦ୍ମଯୋନ ।
ଏ ପୁଣ୍ୟକ ବ୍ରତେ ମୋର ଦ୍ୱିଭୁଜ ରୂପକୁ
ଆରାଧନା କରି ଲୋକେ କରନ୍ତି ପୂଜାକୁ ।
ମୋର ଯେଉଁ ରୂପକୁ ଯେ ଭାବନା କରଇ
ସେହିରୂପେ ତାହାରେ ମୁହିଁ ପ୍ରସନ୍ନ ହୁଅଇ ।
ଏରୂପେ ଦେବଙ୍କୁ କହି ଦେବ ସନାତନ
ପାର୍ବତୀଙ୍କୁ ଅନାଇଣ କହିଲେ ବଚନ ।
ବ୍ରତ ପୂର୍ଣ୍ଣକର ଦେବୀ ନ ବିଳମ୍ବ କରୁ
ଶିବଙ୍କୁ ଦକ୍ଷିଣାରୂପେ ଦିଅ ମୁଁ ବୋଲୁଛୁ ।
ସେ ଅନ୍ତରେ ସମୁଚିତ ମୂଲ୍ୟ ଦେଇ ପୁଣି
ପୁରୋହିତଙ୍କ ପାଶରୁ ନେବ ତାଙ୍କୁ କିଣି ।
ସେଉଁରୂପେ ଗୋବ୍ରାହ୍ମଣ ବୈଷ୍ଣବ ଶରୀର
ସେ ରୂପେ ଅଟନ୍ତି ଶିବ ବୋଲି ମନେକର ।
ଗାଭମୂଲ୍ୟ ଦେଇ ତୁମ୍ଭେ ଆପଣା ସ୍ୱାମୀଙ୍କୁ
ମୁକୁଳାଇ ନେବ ଏଥି ନ କର ଶଙ୍କାକୁ ।
ଯଜ୍ଞକାଳେ ପତ୍ନୀକୁ ଯେ ପତି ଦାନ କରେ
ସେହିରୂପେ ସ୍ୱାମୀକୁ ନିଜ ପତ୍ନୀ ଦେଇପାରେ ।
ଏମନ୍ତ ଅଟଇ ଶ୍ରୁତି ଶାସ୍ତ୍ରର ବିଧାନ
ଏରୂପେ କହିଣ ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ।
ବ୍ରହ୍ମବୈବର୍ତ୍ତ ପୁରାଣ ଅମୃତ ଚରିତ
କ୍ଷେତ୍ରବାସୀ କହେ ସେବି ଉମା ଉମାକାନ୍ତ ।

—*—

## ପାର୍ବତୀ ତାଙ୍କର ସ୍ୱାମୀଙ୍କୁ ଦକ୍ଷିଣା-ରୂପେ ପ୍ରଦାନ କରିବା

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଶ୍ରବଣ ମାତ୍ରକେ ପାପ ହୋଇବ ଦହନ ।
ପାର୍ବତୀ ଦେବୀ ମନରେ ହରଷ ହୋଇଲେ
ପତିଙ୍କୁ ଦେବାକୁ ମନେ ମନେ ସ୍ଥିର କଲେ ।
ପୂର୍ଣ୍ଣାହୁତି ଦେଇ ବ୍ରତ ସମାପନ କରି
ସ୍ୱାମୀଙ୍କୁ ଦେଲେ ଦକ୍ଷିଣା ସ୍ୱରୂପରେ ଗୋରୀ ।
ସନତ କୁମାର ସ୍ୱସ୍ତି ସ୍ୱସ୍ତି ଉଚ୍ଚାରିଣ
ଶିବଙ୍କୁ ଗ୍ରହଣକଲେ ହରଷ ମନେଣ ।
ତାହାଦେଖି ଦେବଗଣ ହୋଇ ଆନନ୍ଦିତ
ବିଚାରିଲେ ଶୁଭେ ଯାଗ ହେଲା ସମାପତ ।
ଏଥୁଅନନ୍ତରେ ଦେବୀ ପର୍ବତ ନନ୍ଦିନୀ
ସନତକୁମାର ପାଶେ ଯୋଡ଼ି କର ବେନି ।
ବୋଇଲେ ଶୁଣିବା ହେଉ ଆହେ ମୁନିବର
ଗୋମୂଲ୍ୟ ସମାନ ମୂଲ୍ୟ ସଦାଶିବଙ୍କର ।
ବେଦ ଶାସ୍ତ୍ରରେ ଏରୂପେ ହୋଇଛି ନିଶ୍ଚୟ
ଏ ସକାଶୁ ଲକ୍ଷେ ଗାଈ ଦେଉଅଛୁ ନିଅ ।
ତାର ବଦଳରେ ମୋତେ ପତିଙ୍କୁ ପ୍ରଦାନ
କର ଆହେ ମୁନିକୁଳ ମସ୍ତକମଣ୍ଡନ ।
ପତିଙ୍କୁ ପାଇଲେ ମୁହିଁ ଅନ୍ୟ ବ୍ରାହ୍ମଣଙ୍କୁ
ଡକାଇଣ ଦେବି ନାନା ପ୍ରକାର ଦାନକୁ ।
ପତି ଯେ ଆତ୍ମା ସ୍ୱରୂପ ଅଟଇ ପତ୍ନୀର
ପତିବିନା କେଉଁ କାର୍ଯ୍ୟ ନୁହଇ ତାହାର ।
ଯେରୂପେ ଶରୀର ଜୀବଶୂନ୍ୟ ହୋଇଥିଲେ
କେଉଁକାର୍ଯ୍ୟ ହେଲେ କରି ନ ପାରଇ ଭଲେ ।
ତେମନ୍ତ ଅଟଇ ସିନା ପତିହୀନା ସ୍ତିରୀ
ପତିଙ୍କୁ ମୋତେ ଅର୍ପଣ କର ତପସ୍ୱୀ ।
ତାହା ଶୁଣି ମୁନିବର ବୋଇଲେ ପାର୍ବତୀ
ଦେଖୁଛ ତ ସ୍ୱଭାବରେ ଅଟଇ ମୁଁ ପତି ।
ଲକ୍ଷେ ଗାଈ ନେଇ ମୋର କି କାର୍ଯ୍ୟ ହୋଇବ
ତାହା ବଦଳରେ କେବା ଧନ ମୋତେ ଦେବ

ତପସ୍ୱୀ ଶ୍ରେଷ୍ଠ ଅଟନ୍ତି ଦେବ ତ୍ରିଲୋଚନ
ତାଙ୍କ ପାଖେ ରହି ଯେବେ କଟାଇବି ଦିନ ।
ଅବଶ୍ୟ ମୁକତି ଲଭି ହୋଇବି ଅମର
ସର୍ବ ଫଳଦାତା ପ୍ରଭୁ କୈଳାସ ଈଶ୍ୱର ।
ଏତେବୋଲି ଶଙ୍କରଙ୍କୁ ଆପଣା ପାଶରେ
ବସାଇଲେ ନେଇ ମୁନି ହରଷ ମନରେ ।
ତା ଦେଖି ପାର୍ବତୀ ଅତି ଦୁଃଖିତା ହୋଇଲେ
ଶରୀର ତେଜିବା ପାଇଁ ନିଶ୍ଚୟ ସେ କଲେ ।
ଭାବିଲେ ଇଷ୍ଟଦେବଙ୍କୁ କେବେ ନ ଦେଖିଲି
ଏତେ ଶ୍ରମପାଇ ବ୍ରତଫଳ ନ ଲଭିଲି ।
ବିପରୀତ ଫଳସବୁ ଘଟିଲା ମୋହର
କିଛି ଲଭ ନାହିଁ ଆଉ ଜୀଇଁ ରହିବାର ।
ଏହି ସମୟରେ ଦେଖ ଦେବଗଣ ଭୁଲେ
ଆକାଶ ମଧ୍ୟରେ ତେଜପୁଞ୍ଜକୁ ଦେଖିଲେ ।
କୋଟିସୂର୍ଯ୍ୟ ପ୍ରଭାପରି ଦିଶଇ ଉଜ୍ଜ୍ୱଳ
ପୂରିଅଛି ଦଶଦିଗ ବ୍ରହ୍ମାଣ୍ଡ ମଣ୍ଡଳ ।
ଅତ୍ୟନ୍ତ ବିସ୍ତୀର୍ଣ୍ଣ ସେହୁ ମଣ୍ଡଳ ଆକୃତି
କୈଳାସ ଗିରି ଶିଖକୁ ଆସଇ ଝଟତି ।
ସେଠାରେ ତ ଦେବଗଣ ରୁଣ୍ଡ ହୋଇଥିଲେ
ବ୍ରହ୍ମତେଜ ଦେଖି ସେହ୍ୟାମନେ ସ୍ତୁତି କଲେ ।
ପ୍ରଥମରେ ନାରାୟଣ ଶିରେ କରଦେଇ
ବୋଇଲେନମସ୍ତେ ଦେବତ୍ରୈଲୋକ୍ୟ ଗୋସାଇଁ
ଆପଣ ଅଟ ମହତ ବିରାଟ ପୁରୁଷ
ଲୋମମୂଳେ ରଖିଅଛ ବ୍ରହ୍ମାଣ୍ଡ ଅଶେଷ ।
ତୁମ୍ଭର ସ୍ତୁତି ପଢିବା ପାଇଁ ଆମ୍ଭେମାନେ
ସମରଥ ହେବୁ ଅବା କବୁରୂପେ ଯତନେ ।
ବ୍ରହ୍ମା ବୋଇଲେ ହେଦେବ ବେଦର ଜନକ
ଅଟ ଯେଉଁରୂପେ ତାହା କଲି ମୁଁ ସାକ୍ଷାତ ।
ଆପଣଙ୍କ ସେ ରୂପକୁ ବର୍ଣ୍ଣିବାକୁ ମୁହିଁ
ସକଳ ପ୍ରକାରେ ପ୍ରଭୁ ଅଶକ୍ତ ଅଟଇ ।
ଶଙ୍କର ବୋଇଲେ ମୁହିଁ ଜ୍ଞାନ ଅଧୀଶ୍ୱର
ଆପଣ ଅଟନ୍ତି ସର୍ବଜ୍ଞାନଠାରୁ ପର ।
ଆପଣଙ୍କୁ ସ୍ତୁତି ଅବା କରିବଇଁ କିସ
ଅନୁଗ୍ରହ କର ଆହେ ଦେବଗଣ ଈଶ ।
ଧର୍ମ ବୋଇଲେ ହେଦେବ ଅଦୃଶ୍ୟ ସ୍ୱରୂପ
ହୋଇ ପୁଣି ପ୍ରକାଶିତ କର ନିଜ ରୂପ ।

ତେଜୋମୟ ନିରାକାର ଅଟ ତୁମ୍ଭେ ହରି
ଆପଣଙ୍କ ସ୍ତୁତି ମୁହିଁ କିବା କରିପାରି ।
ଏଥିଅନ୍ତେ ଦେବଗଣ ଏକମୁଖ ହୋଇ
ବୋଇଲେ ଆହେ ଈଶ୍ୱରତ୍ରୈଲୋକ୍ୟ ଗୋସାଇଁ
ଦେବଗଣ ଅବା କିଜେ ଦେବୀ ସରସ୍ୱତୀ
କରି ନ ପାରିବେ କେବେ ଆପଣଙ୍କ ସ୍ତୁତି ।
ଆପଣଙ୍କ କଳାଂଶରେ ଜନମ ଆମ୍ଭର
ସମର୍ଥ ହୋଇବୁ ଆମ୍ଭେ ଅବା କି ପ୍ରକାର ।
ମୁନି ଋଷିମାନେ ତହୁଁ ବୋଇଲେ ହେ ନାଥ
ବେଦ ଶାସ୍ତ୍ର ପଢି ଆମ୍ଭେ ବୋଲାଉ ପଣ୍ଡିତ ।
ସେହି ବେଦର କାରଣ ଅଟନ୍ତି ଆପଣ ।
ଆପଣଙ୍କ ସ୍ତୁତି ଆମ୍ଭେ କି କରିବୁ ପୁଣ ।
ସରସ୍ୱତୀ ବୋଇଲେ ମୁଁ ଅଟେ ବାକ୍ୟ ଦେବୀ
ତଥାପି ତୁମ୍ଭର ସ୍ତୁତି କରି ନ ପାରିବି ।
ବଚନ ମନର ତୁମ୍ଭେ ଅଟ ଅଗୋଚର
ତୁମ୍ଭଙ୍କୁ ଚିହ୍ନିବାପାଇଁ ଶକତି କାହାର ।
ସେ ଅନ୍ତରେ ମହାଲକ୍ଷ୍ମୀ କରଯୋଡ଼ି ଶିରେ
କହିଲେ ବଚନ ଅତି କୋମଳ ମଧୁରେ ।
ତୁମ୍ଭ ଅଂଶ ବିଷ୍ଣୁଙ୍କର କାନ୍ତା ମୁଁ ଅଟଇ
ସର୍ବଦା ଜଗତ ଜୀବଗଣଙ୍କୁ ପୋଷଇ ।
ଜାତ ହୋଇଅଛି ତୁମ୍ଭ ଅଂଶ କଳା ଯେବେ
ସ୍ତୁତି ସକାଶେ ସମର୍ଥ ହେବି କାହୁଁ ପୁଣି ।
ସେ ଅନ୍ତରେ ହିମାଳୟ ବୋଇଲେ ହେନାଥ
ଜନ୍ମରୁ ଅଟେ ମୁଁ ହିମମୟ ପରବତ ।
ମୋତେ ଦେଖି ଉପହାସ କରନ୍ତି ସମସ୍ତେ
କି ଅବା ସ୍ତୁତି କରିବି ତୁମ୍ଭର ଅଗ୍ରତେ ।
ଏରୂପେ କ୍ରମରେ ସବୁ ଦେବଦେବୀ ଗଣ
ମୁନି ଋଷି ସହିତରେ କହି ପୁଣ ପୁଣ ।
ସେ ଯାହା ମତରେ ସ୍ତୁତି କରି ତୁନି ହେଲେ
ସମସ୍ତଙ୍କ ଶେଷେ ଦେବୀ ପାର୍ବତୀ ଉଠିଲେ ।
ବ୍ରତନିୟମରେ ଯୌତ ବାଧ ଜଟାଭାର
ଧାରଣ କରି ସେ ଦିଶୁଅଛନ୍ତି ସୁନ୍ଦର ।
ଜ୍ୱଳନ୍ତ ଅନଳ ଶିଖା ପରି ତାଙ୍କ ତେଜ
କରୁଥିଲା ଦଶଦିଶ ଅତିଶୟ ଉଜ ।
ଏମନ୍ତ ରୂପରେ ଦେବୀ ଶ୍ରୀକୃଷ୍ଣଙ୍କୁ ସ୍ମରି
ବୋଇଲେ ନମସ୍ତେ ଦେବ ଜଗତ ଗୋସାଇଁ ।

ମୋହର ସ୍ୱରୂପ ତୁମ୍ଭେ ହଲକର ଜାଣ
ତୁମ୍ଭଙ୍କୁ ଜାଣିବାପାଇଁ ନାହିଁ ମୋର ଜ୍ଞାନ ।
ତୁମ୍ଭ ଅଂଶ ଜାତ ଯେବା ଅଛନ୍ତି ଜଗତେ
ସେ ତ ଜାଣି ନ ପାରନ୍ତି ତୁମ୍ଭଙ୍କୁ କଦାଚେ ।
କଳାରେ ଜନମ ହୋଇଛନ୍ତି ଯେଉଁମାନେ
ସେ ଅବା ଚିହ୍ନିବେ ତୁମ୍ଭ ରୂପକୁ କେସନେ ।
ତୁମ୍ଭ ବିନା ଜଗତରେ ତତ୍ତ୍ୱ ଜାଣିବାକୁ
ଅନ୍ୟ କେଉଁଠାରେ ମୁହିଁ ନ ଦେଖେ କାହାକୁ
ସୂକ୍ଷ୍ମଠାରୁ ସୂକ୍ଷ୍ମ ପୁଣି ସ୍ଥୂଳଠାରୁ ସ୍ଥୂଳ
ବିଶ୍ୱରୂପ ବିଶ୍ୱବୀଜ ଅଟ ଆଦିମୂଳ ।
କାର୍ଯ୍ୟର କାରଣ ପୁଣି କାରଣର କାର୍ଯ୍ୟ
ଅଟ ତୁମ୍ଭେ ଆହେ ପ୍ରଭୁ ଦେବ ଅଧିରାଜ ।
ତେଜସ୍ୱରୂପ ଆକାର ଶୂନ୍ୟ ନିରାଶ୍ରୟ
ନିର୍ଲିପ୍ତ ନିର୍ଗୁଣ ସର୍ବ ସାକ୍ଷୀ ନିରାମୟ ।
ପ୍ରକୃତି ଈଶ୍ୱର ମହା ବିରାଟ ପୁରୁଷ
ପରାତ୍ପର ପରମାତ୍ମା ତିନିଲୋକ ଈଶ ।
ସୃଷ୍ଟି ସକାଶରେ ତୁମ୍ଭେ ପ୍ରକୃତି ସହିତ
କଲା ଯେବେ ଜଗତରେ ହୁଅ ପ୍ରକାଶିତ ।
ସକଳ ଦେହରେ ଜୀବ ରୂପେ ଥାଅ ରହି
ତୁମ୍ଭ ବିନା କ୍ଷଣେ ବଞ୍ଚି ନ ପାରନ୍ତି କେହି ।
କର୍ମ ରୂପ କର୍ମ ସାକ୍ଷୀ କର୍ମଫଳ ଦାତା
ତୁମ୍ଭେ ଏକା ଅଟ ଦେବ ଭୁବନ କରତା ।
ତୁମ୍ଭର ସେ ନିରାକାର ତେଜ ତାକୁ ବସି
ଧ୍ୟାନ କରୁଥାନ୍ତି ଯୋଗୀଜନେ ଅହର୍ନିଶି ।
କେତେ ବୈଷ୍ଣବମାନେ ଭକ୍ତିଭାବ ବହି
ଭାବନା କରନ୍ତି ମନେ ଲକ୍ଷ୍ମୀଦେବୀ ସାଇଁ ।
ଚତୁର୍ଭୁଜ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ
ପୀତାମ୍ବର କମନୀୟ ସ୍ୱରୂପ ମାଧୁରୀ ।
କେଉଁମାନେ ସୁଶ୍ୟାମଳ ଶ୍ରୀକୃଷ୍ଣ ରୂପକୁ
ଧ୍ୟାନ କରନ୍ତି ସର୍ବଦା ଦେଇଣ ମନକୁ ।
ଦ୍ୱିଭୁଜ କିଶୋର ଶାନ୍ତ ସୁରମ୍ୟ ମୂରତି
ରତ୍ନଭୂଷଣ ଭୂଷିତ ପ୍ରଭୁ ରାଧାପତି ।
ଏରୂପେ ଭକତଗଣ ତୁମ୍ଭଠାରେ ମନ
ଦେଇଥାନ୍ତି ସବୁବେଳେ ଆହେ ଜନାର୍ଦ୍ଦନ ।
ପୂର୍ବକାଳେ ମୁହିଁ ସର୍ବଦେବଙ୍କ ତେଜରେ
ଜାତ ହୋଇଥିଲି ଦୈତ୍ୟ ନାଶନ ଅର୍ଥରେ ।
ଏକାଗ୍ର ଚିତ୍ତରେ ଯହୁଁ ବ୍ରହ୍ମା ସ୍ତୁତି କଲେ
କାମିନୀରୂପ ଧାରଣ କଲି ମହୀତଳେ ।
ତୁମ୍ଭର ମାୟାସ୍ୱରୂପା ହେବାରୁଟି ଜାଣ
ମୋହିତ ହେଲେ ମାୟାରେ ସବ ଦୈତ୍ୟଗଣ ।
ସେ ଅନ୍ତରେ ସେମାନଙ୍କୁ କରିଣ ନିହତ
ହିମାଳୟ ପର୍ବତରେ ହେଲି ଉପସ୍ଥିତ ।
କେତେକାଳ ପରେ ପୁଣି ଦେବତା ନିକର
ପୀଡ଼ା ପାଇଣ ତାରକା ଦୈତ୍ୟଠାରୁ ଘୋର
ସ୍ତୁତି କରିବାରୁ ମୋତେ ଦକ୍ଷପତ୍ନୀଠାରେ
ଜାତ ହେଲି ଯାଇ ପୁଣି କନ୍ୟା ସ୍ୱରୂପରେ ।
ଶିବଙ୍କୁ ପତି ସ୍ୱରୂପେ କଲି ସଂବରଣ
ହିନେ ତାଙ୍କ ନିନ୍ଦାବାକ୍ୟ କରନ୍ତେ ଶ୍ରବଣ ।
ଦେହ ତେଜି ହିମାଳୟ ଘରେ ଜାତ ହେଲି
ବହୁ ତପ କରି ପୁଣ ଶିବଙ୍କୁ ବରିଲି ।
ବ୍ରହ୍ମାଙ୍କ ବଚନେ ମୋର ପାଣିକୁ ଶଙ୍କର
ଗ୍ରହଣ କଲେ କିନ୍ତୁ ନ କରି ବିଚାର ।
ସମ୍ଭୋଗ କାଳରେ ଦେବଗଣ ମାୟାକଲେ
ଶିବଙ୍କ ତେଜ ମୋଠାରେ ରଖାଇ ନ ଦେଲେ
ସେ ସକାଶୁ ପୁତ୍ର ଦୁଃଖେ ଅଟେ ମୁଁ ଦୁଃଖିତା
ଦୟାକର ମୋହଠାରେ ଜଗତ କରତା ।
ଲଭିବାପାଇଁ କି ପୁତ୍ର ତୁମ୍ଭର ସମାନ
ପୁଣ୍ୟକ ବ୍ରତ କର୍ମରେ ବଳାଇଛି ମନ ।
ଏ ବ୍ରତେ ନିଜ ପତିଙ୍କୁ ଦକ୍ଷିଣା ରୂପରେ
ଦେବାର ନିୟମ ଲେଖା ହୋଇଛି ବେଦରେ ।
ଆହେ କୃପାମୟ ତୁମ୍ଭ ଆଗେ ସବୁ ମୁହିଁ
କହିଲି ଉଚିତ ଯାହା କର ମନଦେଇ ।
ଏମନ୍ତ କହି ସେକାଳେ ପାର୍ବତୀ ସୁନ୍ଦରୀ
ବିରତ ହୋଇଲେ ଜାଣ ଆହେ ତପସ୍ୱୀ ।
ପାର୍ବତୀ ରଚିତ ଏହି ବିଷ୍ଣୁଙ୍କର ସ୍ତୋତ୍ର
ଶୁଣଇ ଯେ ଲୋକ ସେହି ହୁଅଇ ପବିତ୍ର ।
ବିଷ୍ଣୁ ତୁଲ୍ୟ ପରାକ୍ରମୀ ପୁତ୍ର ହୁଏ ତାର
ଆଉର ଐଶ୍ୱର୍ଯ୍ୟ ଧନ ସମ୍ପଦ ଅପାର ।
ପୁଣ୍ୟକ ବ୍ରତରେ ଯେଉଁ ଫଳ ଲାଭ ହୁଏ
ଏହାକୁ ଶୁଣିବା ଲୋକ ଲଭଇ ନିଶ୍ଚୟେ ।
ଶ୍ରୀକୃଷ୍ଣଙ୍କଠାରେ ପୁଣି ନିଶ୍ଚଳ ଭକତି
ହୁଅଇ ତାହାର ଜାଣ ଆହେ ଦ୍ୱିଜପତି ।

ବରଷେ ଯାଏ ହବିଷ୍ୟ କରି ଯେବେଁ ନାରୀ
ଶୁଣଇ ଏ ସ୍ତୋତ୍ର ମନେ ଶ୍ରୀକୃଷ୍ଣ ସୁମରି ।
ଧନ ଜନ ସଉଭାଗ୍ୟ ବଢ଼ଇ ତାହାର
ସନ୍ଦେହ ନାହିଁ ଏଥିରେ ବୋଇଲେ ମହେଶ୍ୱର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶିବ ବିଷ୍ଣୁ ପ୍ରଭୃତି ଦେବଙ୍କର ଓ ମୁନି ଋଷିମାନଙ୍କର ପାର୍ବତୀଙ୍କ ପ୍ରତି ପୁଣ୍ୟକବ୍ରତ ସମ୍ବନ୍ଧେ ନାନାପ୍ରକାର ଉପଦେଶ ପ୍ରଦାନ କରିବା ବର୍ଣ୍ଣନେ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ

## ଗଣେଶଙ୍କର ଉତ୍ପତ୍ତି ବର୍ଣ୍ଣନ

ନାରାୟଣ ମୁନିବର ନାରଦ ଆଗରେ
କହନ୍ତି ଗଣେଶଖଣ୍ଡ ଚରିତ ସାଦରେ ।
ଆହେ ମୁନିବର ଶୁଣ ସାବଧାନ ହୋଇ
ଏଥିଅନନ୍ତରେ ଯାହାହେଲା କହୁଥାଇ ।
ପାର୍ବତୀ ବଚନ ଶୁଣି କରୁଣାସାଗର
ଶ୍ରୀକୃଷ୍ଣ ନିଜରୂପକୁ ଦେଖାନ୍ତେ ସତ୍ୱର ।
କରଯୋଡ଼ି ଦେବୀ ତାଙ୍କୁ ବହୁସ୍ତୁତି କଲେ
ସେ ଅନ୍ତରେ ଧ୍ୟାନମଗ୍ନ ହୋଇ ଅନାଇଲେ
ଦେଖିଲେ ସେ ମହାତେଜ ମଧ୍ୟେ ଦିବ୍ୟମୂର୍ତ୍ତି
ମଧ୍ୟାହ୍ନ ଆଦିତ୍ୟ ପ୍ରାୟେ ଦିଶୁଅଛି ଜ୍ୟୋତି ।
ସୁବର୍ଣ୍ଣ ହୀରକ ରତ୍ନ ନିର୍ମିତ ରଥରେ
ବିଜେ କରିଛନ୍ତି ଦିବ୍ୟ ସୁନ୍ଦର ବେଶରେ
ବହ୍ନି ଶୁଦ୍ଧ ପୀତବାସ ପରିଧାନ କରି
ହସ୍ତରେ ମଧୁର ସ୍ୱର ବଂଶୀ ଛନ୍ତି ଧରି ।
ଶ୍ୟାମଳ ବରନ ଗଳେ ଶୋଭେ ବନମାଳ
ଶରୀର ଶୋଭିତ ରତ୍ନ ବିଭୂଷଣ ଜାଳ ।
କିଶୋର ବୟସ ଚାରୁ ସସ୍ମିତ ବଦନ ।
ଶରଦଚନ୍ଦ୍ର ପରାୟେ ଦିଶେ ଶୋଭାବନ ।
ମାଳତୀ କୁସୁମମାଳା ମୟୂର ଚନ୍ଦ୍ରିକା
ଥିବାରୁ ବେଶ ଦିଶଇ ଶୋଭାରେ ଅଧିକା ।
କୋଟିଏ କନ୍ଦର୍ପ ଜିଣି ଶରୀର ସୁଷମା
ଦିଶୁଥିଲା ଯେସନେ ନବ ଉଦିତ ଚନ୍ଦ୍ରମା ।
ଗୋପାଳ ଗୋପିକାଗଣେ ଅଛନ୍ତି ବେଷ୍ଟିତ
ଦିବ୍ୟରୂପ ହୃଷ୍ଟପୁଷ୍ଟ ଅଙ୍ଗ ବିରାଜିତ ।
ତାଙ୍କୁ ଦେଖି ତାହାଙ୍କର ସମାନ କୁମର
ହେଉବୋଲି ଦେବୀ ମନେ ବାଞ୍ଛାକଲେ ବର ।

ତାଙ୍କ ମନକଥା ଜାଣି ପ୍ରଭୁ ନରହରି
ବୋଇଲେ ଯା ଭାବୁଅଛ ହେଉ ସେହିପରି ।
ଏରୂପେ ବର ଦେଇଣ ଅନ୍ତର୍ଦ୍ଧାନ ହେଲେ
ପାର୍ବତୀ ଦେବୀ ତା ଶୁଣି ସନ୍ତୋଷ ପାଇଲେ ।
ଏଥୁଅନ୍ତେ ଦେବଗଣ ଏକତ୍ରିତ ହୋଇ
ସନତ୍କୁମାରଙ୍କର ସମୀପକୁ ଯାଇ ।
ପ୍ରବୋଧନା କରି ତାଙ୍କୁ ଶଙ୍କରଙ୍କୁ ନେଲେ
ପାର୍ବତୀ ଦେବୀଙ୍କ ପାଶେ ସମର୍ପଣ କଲେ ।
ପତିଙ୍କୁ ପାଇ ପାର୍ବତୀ ହେଲେ ମହାତୋଷ
ବ୍ରାହ୍ମଣଙ୍କୁ ଧନରତ୍ନ ଦେଲେ ସେ ବିଶେଷ ।
ଭିକ୍ଷୁକ ବନ୍ଦି ଯେତେକ ସେହିଠାରେ ଥିଲେ
ସୁବର୍ଣ୍ଣ ରତନ ବାସ ସମସ୍ତଙ୍କୁ ଦେଲେ ।
ବ୍ରାହ୍ମଣଙ୍କୁ ଭୁଞ୍ଜାଇଣ ନାନା ପରକାରେ
ଭୋଜନ ପଦାର୍ଥ ଦେଲେ ଆନନ୍ଦ ମନରେ ।
ନାନା ଉପଚାର ଦେଇ ଶଙ୍କରଙ୍କୁ ପୂଜା
କଲେ ହରଷ ରସରେ ମଜ୍ଜାଇଣ ମଜ୍ଜା ।
ଦୁନ୍ଦୁଭି ମୃଦଙ୍ଗ ତାଳ ଆଦି ବାଦ୍ୟମାନ
ବଜାଇଣ କରାଇଲେ ନୃତ୍ୟ ପୁଣି ଗାନ ।
ଏହିରୂପେ ବ୍ରତକର୍ମ ସମାପନ କରି
ପୁଣି କେତେ ଦାନ କଲେ ପର୍ବତକୁମାରୀ ।
ଯେତେ ଦେବତା ଋଷିଙ୍କୁ ନେଇ ଆଣିଥିଲେ
ସମସ୍ତଙ୍କୁ ସ୍ନାନରେ ଭୁଞ୍ଜିବାକୁ ଦେଲେ ।
ସେ ଅନ୍ତେ ପତି ପାଶରେ ଆନନ୍ଦେ ଭୁଞ୍ଜି ସାରି
କର୍ପୂର ମିଶା ତାମ୍ବୁଳ ନିଜ ହସ୍ତେ ଧରି ।
ସମସ୍ତଙ୍କୁ ଦେଇ ପ୍ରିୟ ଭରତାଙ୍କୁ ଦେଲେ
ସେ ଅନ୍ତରେ ପୁଣି ନିଜେ ଭୋଜନ କରିଲେ ।

ବିହାରୁ ଦେଖିଣ ସବୁ ଦେବତା ଋଷିଙ୍କୁ
ପତିଙ୍କୁ ଘେନି ଚଳିଲେ ଏକାନ୍ତ ସ୍ଥାନକୁ ।
ଦୁଗ୍ଧଫେନ ତୁଲ୍ୟ ଦିବ୍ୟ ତଳପ ପକାଇ
ପୁଷ୍ପ ଚନ୍ଦନ ବିଞ୍ଚିଲେ ତାହାପରେ ନେଇ ।
କସ୍ତୁରୀ କୁଙ୍କୁମ ଆଦି ନାନା ଗନ୍ଧଦ୍ରବ୍ୟ
ପକାଇଲେ ତାହା ସଙ୍ଗେ ମିଶାଇଣ ସର୍ବ ।
ପତିଙ୍କ ସଙ୍ଗରେ ତହିଁ କଲେକ ଶୟନ
ନ ଜାଣିଲେ ଏହିପରି ଗଲା କେତେଦିନ ।
ପୁଣି ଏକ ସମୟରେ କୈଳାସ କନ୍ଦରେ
ଚନ୍ଦନ ପାଦପମୟ ସୁନ୍ଦର ସ୍ଥାନରେ ।
ସୁଗନ୍ଧ କୁସୁମ ଆଦି ବହେ ସମୀରଣ
ଭ୍ରମର କୋକିଳଶବ୍ଦ ସହିତରେ ପୁଣ ।
ସୁଖକର ହୋଇଥାଏ ସେହିଠାରେ ସଦା
ଖେଳା କରୁଥାନ୍ତି ପକ୍ଷିସମୂହ ସର୍ବଦା ।
ଏମନ୍ତ ସ୍ଥାନରେ ଦେବୀ ପତିଙ୍କ ସହିତେ
ବିହାର କରିଣ ପ୍ରବର୍ତ୍ତିଲେ ସେ ସୁରତେ ।
ଯେତେବେଳେ ହେଲା ବୀର୍ଯ୍ୟ ପତନ ସମୟ
ଜାଣି ତାହା ଜନାର୍ଦ୍ଦନ ପ୍ରଭୁ ଦୟାମୟ ।
ମାୟାରେ ବ୍ରାହ୍ମଣରୂପ ଧରି ସେହିକ୍ଷଣି
ମିଳିଲେ ଅଛନ୍ତି ଯହିଁ ଦେବ ଶୂଳପାଣି ।
ସାମାନ୍ୟ ଭିକ୍ଷୁକବେଶ ଧରିଥିଲେ ସେହି
ତୈଳ ବିନା ରୁକ୍ଷମୟ ଦିଶୁଥିଲା ଦେହି ।
ମଳିନ ବସନ ଶୁକ୍ଳଦନ୍ତ ବିକଟାଳ
କ୍ଷୁଧା ତୃଷା ଘେନି ହେଉଅଛନ୍ତି ଆକୁଳ ।
କୃଶ ହୋଇବାରୁ ଅଙ୍ଗ କମ୍ପେ ଥରହର
ଦୀନବାକ୍ୟ ହେଉଅଛି ମୁଖରୁ ବାହାର ।
ରତିଗୃହ ଦ୍ୱାରେ ଯାଇ ପ୍ରବେଶ ହୋଇଲେ
ଶିବଙ୍କ ନାମ ଧରିଣ ବହୁତ ଡାକିଲେ ।
ବୋଇଲେ ଆହେ ଶଙ୍କର କରୁଅଛ କସ
ଭିକ୍ଷୁକ ଆସି ପ୍ରବେଶ ହେଲା ଦ୍ୱାରଦେଶ ।
ସାତଦିନ ହେଲା ବ୍ରତ କରିଥିଲି ମୁହିଁ
କାଲି ସମାପତ ହେଲା ଆହେ ଉମାସାଇଁ ।
ପାରଣା କରିବାପାଇଁ ଆପଣଙ୍କଠାକୁ
ଆସିଅଛି ଦିଅ ମୋତେ ଭୋଜନ ପାନକୁ ।
ଦେଖ ଜରା ଅବସ୍ଥାରେ ଶରୀର ମୋହର
କ୍ଷଣେମାତ୍ର ରହିପାରୁନାହିଁ ହୋଇସ୍ଥିର ।
ଆଗୋ ମାତା ଶୈଳପୁତ୍ରୀ ବେଗହୋଇ ଆସ
ଉପବାସୀ ବ୍ରାହ୍ମଣକୁ ଦିଅ ଆଣି ଗ୍ରାସ ।
ଶରଣ ପଶିଲି ତୁମ୍ଭ ପାଶେ ମୁହିଁ ଆସି
ଦିଅ ହେ ଭୋଜନ ପାନ ମୋର ମନ ତୋଷି ।
ତୁମ୍ଭେ ପିତାମାତା ହୋଇ ଥିବାଠାରେ ମୋର
କ୍ଷୁଧାରେ ବିନଷ୍ଟ ହୋଇ ଯିବ କି ଶରୀର ।
ଏରୂପେ କାକୁସ୍ଥ ବାକ୍ୟ ଶୁଣି ଦେବହର
ଉଠିଲେ ରତିଶଯ୍ୟାରୁ ହୋଇ ତରତର ।
ଯେତେବେଳେ ତାହାଙ୍କର ବୀର୍ଯ୍ୟ ଖସିଯାଇ
ପଡ଼ିଲା ଶଯ୍ୟା ଉପରେ ଆହେ ଋଷିସାଇଁ ।
ପାର୍ବତୀ ମଧ୍ୟ ସେପରି ଉଠି ତତକାଳ
ଆସିଲେ ପିନ୍ଧି ଉତ୍ତମ ଶୁକ୍ଳମୟ ଚେଲ ।
ଦୁହେଁ ଆସି ରତିଗୃହ ଦୁଆରେ ମିଳିଲେ
ବୃଦ୍ଧ ବ୍ରାହ୍ମଣ ଗୋଟିଏ ଅଛନ୍ତି ଦେଖିଲେ ।
ହୋଇଛନ୍ତି ତାହାଙ୍କ ଦେହ ଜରାରେ ପୀଡ଼ିତ
ତଥାପି ଦିଶୁଛନ୍ତି ଅତି ସୁନ୍ଦର ଲଳିତ ।
ଦଣ୍ଡ ପରେ ଭଗବତ୍ତେଜ ଉଗ୍ର ହୋଇଛନ୍ତି
ତପସ୍ୱୀଜନ ସଦୃଶ୍ୟେ ବିରାଜିଲ କାନ୍ତି ।
କ୍ଷୁଧା ତୃଷାରେ ପୀଡ଼ିତ ହେବାରୁ ତାଙ୍କର
ଶୁଷ୍କ ଯାଉଅଛି କଣ୍ଠ ତାଳୁ ନିରନ୍ତର ।
ଭକ୍ତିଭରେ ପୁନଃ ପୁନଃ ପ୍ରଣାମ ସେ କରି
ସ୍ତୁତି କରୁଛନ୍ତି ଶିରେ ବେନିକର ଭରି ।
ତାହା ଶୁଣି ମହାଦେବ ପ୍ରସନ୍ନ ହୋଇଲେ
ଦ୍ୱିଜଙ୍କୁ ଅନାଇଁ ପ୍ରିୟ ବଚନ କହିଲେ ।
ବୋଇଲେ ହେ ବିପ୍ରବର ଆପଣଙ୍କ ଗୃହ
କେଉଁଠାରେ ତାହା ଆମ୍ଭେ ପଚାରୁଛୁ କହ ।
କି ଅବା ତୁମ୍ଭର ନାମ ଅଟେ ସେହି କଥା
ଶୁଣିବା ପାଇଁକି ମନ ବଳୁଛି ସର୍ବଥା ।
ପାର୍ବତୀ ବୋଇଲେ ଆଜ ଆମ୍ଭ ଭାଗ୍ୟବଳେ
କେଉଁ ସ୍ଥାନରୁ ଆପଣ ଆସିବା ହୋଇଲେ ।
ମୋହର ଜନମ ଆଜ ସଫଳ ହୋଇଲା
ଅତିଥି ଦ୍ୱିଜଙ୍କ ପାଦ ଗୃହେ ଯା ପଡ଼ିଲା ।
ପୂଜିତ ହୁଅନ୍ତି ତାହାଠାରେ ଅଭ୍ୟାଗତ
ସନ୍ତୁଷ୍ଟ ହୁଅନ୍ତି ତାହାଠାରେ ବିଜଗତ ।
ଯେଉଁଠାରେ ଦେବତା ଦ୍ୱିଜ ଗୁରୁଜନଙ୍କର
ସନ୍ତୋଷ ପ୍ରକାଶ ହୋଇଥାଏ ନିରନ୍ତର ।

ଅଶ୍ୱତ୍ଥ ପାଦରେ ସବୁ ତୀର୍ଥ ରହିଥାନ୍ତି
ଧୋଇ ସ୍ନାନକଲେ ଲବ୍ଧ ହୁଅଇ ସଦ୍‌ଗତି ।
ସକଳ ଯଜ୍ଞରେ ଯେତେ ଫଳ ପ୍ରାପ୍ତି ହୁଏ
ଅଶ୍ୱତ୍ଥ ପାଦ ଭଜନ ସ୍ଥାନରେ ସେ ଥାଏ ।
ଯଥାଶକ୍ତି ଅଶ୍ୱତ୍ଥକୁ ପୂଜା ଯେ କରଇ
ସକଳ ଦାନ ପୁଣ୍ୟର ଫଳ ସେ ଲଭଇ ।
ବ୍ରତ ଉପବାସ ତୀର୍ଥସ୍ନାନ ଆଦି କରି
ନୁହଇ ଅଶ୍ୱତ୍ଥସେବା କଳାଂଶିକୁ ସରି ।
ନିର୍ଗଣ ହୋଇ ଅଶ୍ୱତ୍ଥ ପଳାଏ ଯା ଘରୁ
ଦେବ ପିତୃଗଣ ପୂଜା ନ ପାନ୍ତି ତାହାରୁ ।
ଆବର ବ୍ରାହ୍ମଣ ହତ୍ୟା ଆଦି ଯେ ପାତକ
ଲଭଇ ଅଶ୍ୱତ୍ଥ ପୂଜା ନ କରିବା ଲୋକ ।
ବ୍ରାହ୍ମଣ ବୋଇଲେ ଦେବ ବେଦତନ୍ତ୍ର କଥା
ଜାଣିଲ ତୁମ୍ଭଙ୍କୁ ଜଣା ହୋଇଛି ସର୍ବଥା ।
କ୍ଷୁଧା ତୃଷାରେ ତ ମୁହିଁ ହୋଇଛି ପୀଡ଼ିତ
ବେଦ ଅନୁସାରେ ମୋତେ ତୋଷକର ମାତ ।
ଯେଉଁଲୋକ ବ୍ୟାଧିମୁକ୍ତ ଅନଶନ ବ୍ରତୀ
ପ୍ରଥମେ ସନ୍ତୋଷ କରାଇବ ତାର ମତି ।
ଏମନ୍ତ ଅଟଇ ବେଦଶାସ୍ତ୍ରର ବିଧାନ
କାର୍ଯ୍ୟକର ବିଚାରିଣ ଆପଣାର ମନ ।
ପାର୍ବତୀ ବୋଇଲେ ଆହେ ଦ୍ୱିଜକୁଳବର
କେଉଁ ଦ୍ରବ୍ୟ ଭୁଞ୍ଜିବାକୁ ମାନସ ତୁମ୍ଭର ।
ଫିଟାଇ ମୋହ ଆଗରେ କହ ଶୁଭବ୍ରତ
ବିଳମ୍ବ ନ କର ଆଣି ଦେବଇଁ ଭରତ ।
ବ୍ରାହ୍ମଣ ବୋଇଲେ ଦେବୀ ବ୍ରତଶେଷେ ତୁମ୍ଭେ
ସବୁଦ୍ରବ୍ୟ ଦେଇଅଛ ଶୁଣିଅଛୁ ଆମ୍ଭେ ।
ନାନାବିଧ ମିଷ୍ଟଅନ୍ନ ଭୁଞ୍ଜିବାର ପାଇଁ
ତୁମ୍ଭର ପାଶକୁ ମୁହିଁ ଆସିଅଛି ଧାଇଁ ।
ତୁମ୍ଭର ସନ୍ତାନ ମୁହିଁ ଅଟେ ଗୋ ଜନନୀ
ମୋତେ ତୋଷକର ନାନା ମିଷ୍ଟଦ୍ରବ୍ୟ ଘେନି ।
ଜଗତ ମଧ୍ୟରେ ପାଞ୍ଚ ପ୍ରକାରେ ଜନକ
ଜନନୀ ଅଟନ୍ତି ପୁଣି ସଂଖ୍ୟାରେ ଅନେକ ।
ପୁତ୍ର ଅଟେ ପଞ୍ଚବିଧ ଶ୍ରୁତି ସନମତ
କହୁଅଛି ତାହା ଏବେ ଶୁଣ ଦେଇ ଚିତ୍ତ ।
ବିଦ୍ୟାଦାତା ଅନ୍ନଦାତା ଭୟତ୍ରାଣକାରୀ
ଜନ୍ମଦାତା କନ୍ୟାଦାତା ଜନକ ଏପରି ।
ଅଟନ୍ତି ପାଞ୍ଚ ପ୍ରକାର ଜାଣ ଆଗୋ ମାତ
ଶୁଣ ମାତଙ୍କର ସଂଖ୍ୟା ଅଟଇ ଯେମନ୍ତ ।
ଗୁରୁପତ୍ନୀ ଗର୍ଭଧାତ୍ରୀ ସ୍ତନ୍ୟପ୍ରଦାୟିନୀ
ପିତୃମାତୃ ସ୍ୱସା ଯେବା ମାତାର ସପତ୍ନୀ ।
ଅନ୍ନଦାତ୍ରୀ ଆଦିକରି ଅନେକ ପ୍ରକାର
ଅଛନ୍ତି ଗଣନା କରିପାରେ କେ ତାଙ୍କର ।।
ପୁତ୍ରମାନଙ୍କର କଥା ଶୁଣ ମନଦେଇ
ଭୃତ୍ୟ ଶିଷ୍ୟ ପୋଷ୍ୟ ପୁଣି ବୀର୍ଯ୍ୟଜାତ ଯେହି ।
ଶରଣାଗତ ଯେ ହୁଏ ତାକୁ ମିଶି କରି
ପଞ୍ଚପ୍ରକାର ତନୟ ଅଟନ୍ତି ଏପରି ।
କ୍ଷୁଧାରେ ପୀଡ଼ିତ ମୁହିଁ ଅଟେ ବୃଦ୍ଧ ଦ୍ୱିଜ
ତୁମ୍ଭର ପୁତ୍ର ସମାନ ବୋଲି ମନେ ବୁଝ ।
ଏବେ ତ ଅପୂର୍ବ ହୋଇଅଛ ତୁମ୍ଭେ ସତୀ
ତୁମ୍ଭର ମୁଁ ପୁତ୍ରବୋଲି ଭାବ ନିଜ ମତି ।
ପିଷ୍ଟକ ପରମ ଅନ୍ନ ସ୍ୱାଦୁ ଫଳମୂଳ
ଲଡ଼ୁକ ପିଷ୍ଟକ ମିଷ୍ଟ-ପଦାର୍ଥ ସକଳ ।
ଦଧି ଦୁଗ୍ଧ ଘୃତ ପକ୍ୱ ସୁସ୍ୱାଦୁ ବ୍ୟଞ୍ଜନ
ଆବର ତରଳ ଭକ୍ଷ୍ୟ ଦ୍ରବ୍ୟ ଫଳମାନ ।
ଏରୂପେ ଭୋଜନ ଆଗ ଦିଅ ମୋତେ ଆଣି
ସେ ଅନ୍ତରେ ସୁବାସିତ ସୁନିର୍ମଳ ପାଣି ।
କର୍ପୂର ନିବାକ ମୁକ୍ତା ତାମ୍ବୁଳ ଅଣାଇ
ଦେବ ପୁଣି ମୁଖ ଶୁଦ୍ଧି କରିବାର ପାଇଁ ।
ଯେଉଁ ଯେଉଁ ଦ୍ରବ୍ୟମାନ ଖାଇଲେ ମୋହର
ସୁନ୍ଦର ପୂର୍ଣ୍ଣକ ହୋଇ ଭରିବ ଉଦର ।
ସେହି ସମସ୍ତ ପଦାର୍ଥ ଦେବ ଆଗୋ ମାତ
ଅନାଦୃଷ୍ଟ ହେବ ମାନ କଲେ ବିପରୀତ ।
ତୁମ୍ଭର ସ୍ୱାମୀ ଅଟନ୍ତି ନିଜଗତକର୍ତ୍ତା
ଲକ୍ଷ୍ମୀରୂପ ଅଟ ତୁମ୍ଭେ ସର୍ବଲୋକ ମାତା ।
ସକଳ ପଦାର୍ଥ ଜାଣେ ଦେଇପାର ତୁମ୍ଭେ
ତୁମ୍ଭର ଗୁଣ ବର୍ଣ୍ଣନା କରିବୁ କି ଆମ୍ଭେ ।
ଅମୂଲ୍ୟ ରତ୍ନ ଭୂଷଣ ସ୍ୱର୍ଣ୍ଣ ସିଂହାସନ
ବହ୍ନି ଶୁଦ୍ଧ ସୁକୋମଳ ସୂକ୍ଷ୍ମ ବସନ ।
ଆବର ଶ୍ରୀକୃଷ୍ଣମନ୍ତ୍ର ଶ୍ରୀକୃଷ୍ଣ ଭକତି
ମୃତ୍ୟୁଞ୍ଜୟ ଜ୍ଞାନ ମଧ୍ୟ ଦେବ ମହାସତୀ ।
ତୁମ୍ଭର ତ କେଉଁଦ୍ରବ୍ୟ ନୁହଇ ଦୁର୍ଲ୍ଲଭ
କାଞ୍ଚନ ମାଣିକ ଏହା ବଳିଲେ ଦେବ ।

ସୁନନ୍ଦ ଅଧିକ ଏବେ ଅଛଇ ତ ମୁହିଁ
କହିବ ନ ହୁଅ ମାତ ମୋତେ ଦେବାପାଇଁ ।
ଉତ୍ତମ ଲୋକ ଯେ ସ୍ୱଚ୍ଛ କରି ନିଜ ମନ
ଦାନଦେଇ କରେ ମୁଖ୍ୟ ଧନ ଉପାର୍ଜ୍ଜନ ।
ଜନମ ମରଣ ହେତୁ ଅଟେ ଯେଉଁ କାମ
ତହିଁରେ କଦାପି ନ କରିବ ମନଭ୍ରମ ।
କାମରୁ ଜାତ ହୁଅଇ କର୍ମ ନିରଙ୍କୁଶ
କର୍ମଫଳ ମାନେ ଜନ୍ମେ ଭୋଗ ଅଭିଳାଷ ।
ଭୋଗରୁଟି ଶୁଭାଶୁଭ ଜାତ ହୋଇଥାଏ
ସୁଖ ଦୁଃଖ ପୁଣି ତାହା ପଛରେ ଗୋଡାଏ ।
କେଉଁଠାରୁ ସୁଖ ଅବା ଦୁଃଖ ନ ଆସଇ
କେବଳ ଆପଣା କଲ କର୍ମ ଉପୁଜଇ ।
ସେ ସକାଶୁ କର୍ମ ପୁଣି ଭୋଗରେ ଆସକ୍ତ
କେତେବେଳେ ନ ହୁଅଇ ଯେ ଅଟେ ପଣ୍ଡିତ ।
ସାଧୁଜନେ ହରିଭକ୍ତି ତପ ଆଚରଣେ
କର୍ମ ନିର୍ମୂଳନ କରୁଥାନ୍ତି ଅନୁକ୍ଷଣେ ।
ଇନ୍ଦ୍ରିୟ ସନ୍ତୋଷକର ସୁଖଭୋଗ ଯେତେ
ରହଇ ସେ ଦେହ ଧ୍ୱଂସ ହେବା ପର୍ଯ୍ୟନ୍ତେ ।
କିନ୍ତୁ ଯେ ଶ୍ରୀହରି କଥା ଆଳାପ ସନ୍ତୋଷ
ଜନ୍ମ ଜନ୍ମାନ୍ତରେ ତାହା ନୁହଇ ବିନାଶ ।
ଶ୍ରୀହରି ସ୍ମରଣ କରୁଥାନ୍ତି ଯେଉଁମାନେ
ତାହାଙ୍କ ଆୟୁଷ କ୍ଷୟ ନୁହେ ଅଳ୍ପଦିନେ ।
ଜଗତ ସଂହାରକର୍ତ୍ତା କାଳ ଅଗ୍ନି ରୁଦ୍ର
କରି ନ ପାରନ୍ତି ତାହାଙ୍କରଟି ଅଭଦ୍ର ।
ଭାରତବରଷେ ଚିରଜୀବୀ ସେ ହୁଅନ୍ତି
ସକଳ ସିଦ୍ଧି ତାହାଙ୍କୁ ହୁଅଇ ପ୍ରାପତ ।
ସବୁଠାକୁ ଇଚ୍ଛାମତେ ପାରନ୍ତି ସେ ଯାଇ
ଜନମ ହୁଅନ୍ତି ପୁଣି ଜାତିସ୍ମର ହୋଇ ।
କୋଟିଏ ଜନ୍ମ ପର୍ଯ୍ୟନ୍ତେ ପୂର୍ବାପୂର୍ବ କଥା
ତାହାଙ୍କର ମନେ ରହି ପାରଇ ସର୍ବଥା ।
ନିଜ ଇଚ୍ଛାରେ ଜନମ ମୃତ୍ୟୁ ତାହାଙ୍କର
ହୁଅଇ ନିଶ୍ଚୟ ଆଗୋ ଦେବୀ ମନେ କର ।
ତାଙ୍କ ଦେହ ପରଶରେ ପୁଣ୍ୟତୀର୍ଥମାନ
ପବିତ୍ରଭାବକୁ ଲଭ କରନ୍ତି ଦ୍ୱିଗୁଣ ।
ତାହାଙ୍କର ପାଦ ଧୂଳି ପଡ଼ି ବସୁମତୀ
ସକଳ କଳୁଷ ମୁକ୍ତ ହୁଅଇ ଝଟତି ।
ହତେ ମାନ ଯେଉଁଠାରେ ବସନ୍ତି ସେମାନେ
ପୁଣ୍ୟତୀର୍ଥ ସମାଗତ ହୁଅନ୍ତି ସେ ସ୍ଥାନେ ।
ଗୀ ଗୁରୁମୁଖ ବିଷ୍ଣୁ ମନ୍ତ୍ର କରେ ଯେ ଗ୍ରହଣ
ବୈଷ୍ଣବ ବୋଲନ୍ତି ତାକୁ ଶାସ୍ତ୍ରଜ୍ଞାନୀଗଣ ।
ଶତେ ପୁରୁଷଙ୍କୁ ସେହି କରଇ ଉଦ୍ଧାର
ଆବର ଯେ ବନ୍ଧୁ ମିତ୍ର ସହାୟ ସୋଦର ।
ମାତାମହକୁଳ ପୁଣି ଶ୍ୱଶୁରଙ୍କ ବଂଶ
ସପ୍ତପୁରୁଷ ଉଦ୍ଧାର କରଇ ଅବଶ୍ୟ ।
ବିଷ୍ଣୁଭକ୍ତଙ୍କୁ ଦର୍ଶନ କରଇ ଯେ ନିତ୍ୟ
ତୀର୍ଥସ୍ନାନ ଯାଗଫଳ ଲଭଇ ନିଶ୍ଚିତ ।
ଶ୍ରୀହରିଙ୍କ ଭକ୍ତମାନେ ପାତକ ପଙ୍କରେ
ଲିପ୍ତ ନ ହୁଅନ୍ତି କେବେ କେବଣ ପ୍ରକାରେ ।
ତିନିକୋଟି ଜନ୍ମରେ ଜନ୍ତୁ ନରରୂପ ହୁଏ
କୋଟିଜନ୍ମେ ପୁଣି ହରିଭକ୍ତ ସଙ୍ଗ ପାଏ ।
ଭକ୍ତ ସଙ୍ଗ ଯୋଗେ ଭକ୍ତି ହୁଏ ଅଙ୍କୁରିତ
କ୍ରମରେ ବଢ଼ଇ ଶୁକ୍ଳ ଚନ୍ଦ୍ରକଳା ବ୍ରତ ।
କିନ୍ତୁ ଯେବେ ଅଭକ୍ତଙ୍କ ଦରଶନ ପାଏ
ଗ୍ରୀଷ୍ମକାଳେ ନଦୀପ୍ରାୟେ ଶୁଷ୍କ ହୋଇଯାଏ ।
ପୁଣି ବୈଷ୍ଣବ ସଙ୍ଗ ପାଇଲେ ଜୀବିତ
ହୋଇ କ୍ରମେ କ୍ରମେ ବୃଦ୍ଧି ଲଭଇ ନିଶ୍ଚିତ ।
ବହୁତ ଜନମ ଅନ୍ତେ ମହାବୃକ୍ଷ ହୋଇ
ଶ୍ରୀହରିଙ୍କ ଦାସ୍ୟରୂପ ଫଳକୁ ଫଳଇ ।
ଶେଷରେ ସେ ମହାବୃକ୍ଷ ଯୋଗରେ ମନୁଷ୍ୟ
ପାରିଷଦ ହୋଇ ରହେ ଶ୍ରୀହରିଙ୍କ ପାଶ ।
ମହାପ୍ରଳୟକାଳରେ ବିନାଶ ତାହାର
କେବେ ମାତ୍ର ନ ହୁଅଇ ବୋଲଣ ବିସ୍ତର ।
ଭକତି ବଳରେ ଚଳାଚଳ ନିଃସାର
ମାୟାମୋହ ନାଶଯାଏ ପାଇ ଭକ୍ତିବଳ ।
ଜଗତରେ ଦ୍ରବ୍ୟଗୁଣ ରହିଅଛି ଯେତେ
ମୂଲ ତାର କରିଯାଇ ଥାଏ କେତେମତେ ।
ମାତର ଭକତି ମୂଲ୍ୟ କରିବାକୁ କ୍ଷମ
ହୋଇ ନ ପାରିବେ କେବେ ଲକ୍ଷ୍ମୀ ନାରାୟଣ
ସେ ସକାଶୁ ଆଗୋ ମାତ ବୋଲୁଅଛି ମୁହିଁ
ଶ୍ରୀହରି ଭକତି ମୋତେ ଦିଅ କୃପାବହି ।
ବିଷ୍ଣୁମାୟା ସ୍ୱରୂପିଣୀ ଅଟ ତ ଆପଣ
ଆପଣଙ୍କ ବିନା ଭକ୍ତି ନ ମିଳିବ ଜାଣ ।

ଲୋକ ଶିକ୍ଷା ପାଇଁ ସିନା ବ୍ରତ ଉପବାସ
ଆଦର ପୂଜା ବିଧାନ କଲ ପାଇ କ୍ଲେଶ ।
ସକଳ କର୍ମର ଫଳଦାତ୍ରୀ ଅଟ ତୁମ୍ଭେ
ତୁମ୍ଭର ମହିମା ଆଉ କହିବୁଁ କି ଆମ୍ଭେ ।
ଶ୍ରୀକୃଷ୍ଣ ଗଣେଶରୂପ ହୋଇ ତୁମ୍ଭ କୋଳେ
ପୁତ୍ରଭାବେ ଉପସ୍ଥିତ ହେବେ ଅଳ୍ପକାଳେ ।
ଏମନ୍ତ କହିଣ ଦ୍ୱିଜରୂପୀ ନରହରି
ଅନ୍ତର୍ଦ୍ଧାନ ହେଲେ ବ୍ୟୋମେ ବିଦ୍ୟୁଲ୍ଲତାପରି ।
ସେ ଅନ୍ତରେ ନିଜ ବାଳରୂପକୁ ଧଇଲେ
ପାର୍ବତୀ ଦେବୀଙ୍କ ଶଯ୍ୟା ଗୃହରେ ମିଳିଲେ ।
ଶିବଙ୍କର ବୀର୍ଯ୍ୟ ପଡ଼ିଥିଲା ତଳପରେ
ମିଶ୍ରିତ ହୋଇଲେ ଯାଇ ସେ ବୀର୍ଯ୍ୟ ସଙ୍ଗରେ
ସେରୂପେ ନବପ୍ରସୂତ ବାଳକ ହିଣଇ
ତେମନ୍ତ ରୂପ ପ୍ରକାଶ କଲେ ଭବଗ୍ରାହୀ ।

ଶୁକଳ ଚମ୍ପକପୁଷ୍ପ ପରାଏ ଶରୀର
କୋଟିଚନ୍ଦ୍ର ପ୍ରଭା ଜିଣି ଦିଶେ ମନୋହର ।
ସୁଖଦୃଶ୍ୟ ସର୍ବଲୋକ ଆନନ୍ଦ ବର୍ଦ୍ଧନ
କନ୍ଦର୍ପ ସୁନ୍ଦର ତନୁ ରୂପ ବିମୋହନ ।
ଶରଦଚନ୍ଦ୍ରମା ତୁଲ୍ୟ ଶ୍ରୀମୁଖ ମଣ୍ଡଳ
ନୀଳୋତ୍ପଳଦଳ ଶୋଭି ନୟନ ଯୁଗଳ ।
ପାଚିଥିବା ବିମ୍ବଫଳ ସମ ବେନି ଓଷ୍ଠ
ଅଷ୍ଟମୀ ଚନ୍ଦ୍ର ସଦୃଶ୍ୟ ରମ୍ୟ ଭାଲପଟ ।
ସର୍ବାଙ୍ଗ ସୁନ୍ଦର ତିନିଲୋକ ନିରୁପମ
ସର୍ବଶୁଭ ଲକ୍ଷଣରେ ଅଟନ୍ତି ଉତ୍ତମ ।
ଏମନ୍ତ ରୂପରେ ଦେବ ବାଳକ ଭାବରେ
ହସ୍ତପାଦ ହଲାଇଣ ଶୋଇଲେ ଶଯ୍ୟାରେ ।
ବୋଲେ ଧ୍ୟାନ କ୍ଷେତ୍ରବାସୀ ଶ୍ରୀକୃଷ୍ଣଙ୍କ ପାଦେ
ମୋହର ମନ ସର୍ବଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପାର୍ବତୀଙ୍କ ଉତ୍ପତ୍ତି ବର୍ଣ୍ଣନେ
ନାମ ଅଷ୍ଟମୋଽଧ୍ୟାୟଃ ।

---

# ନବମ ଅଧ୍ୟାୟ

## ଗଣେଶଙ୍କ, ଶିବ ଓ ପାର୍ବତୀଙ୍କର ଅବଲୋକନ

ନାରଦଙ୍କୁ ବୋଇଲେକ ନାରାୟଣ ଋଷି
ଅନ୍ତର୍ଦ୍ଧାନ ହୋଇଯାନ୍ତେ ପ୍ରଭୁ ବ୍ରହ୍ମରାଶି ।
ଶଙ୍କର ପାର୍ବତୀ ଦୁହେଁ ତାହାଙ୍କୁ ନ ପାଇ
ନିରେଖି ଚାହିଁଲେ ଚଉଦିଗକୁ ଅନାଇଁ ।
ମହାଦେବୀ ବୋଇଲେ ସେ ବୃଦ୍ଧ ଦ୍ୱିଜବର
କ୍ଷୁଧାଭରେ ହୋଇଥିଲେ ଅତ୍ୟନ୍ତ ଆତୁର
ଏକ୍ଷଣି ଲୁଚିଣ ତୁମ୍ଭେ କେଉଁଠାକୁ ଗଲ
ଭୋଜନ କରିବା କଥା କିବା ପାଶୋରିଲ ।
ବାହୁଡ଼ି ଯିବାରୁ ହୋଇ ଅତିଥି ବ୍ରାହ୍ମଣ
ପ୍ରାଣଗଲା ବୋଲି ମୋତେ ଲାଗୁଅଛି ଜାଣ ।
ଏବେ ଦୟାକରି ମୋତେ ଦରଶନ ଦିଅ
ଯାହା ଇଚ୍ଛା କରିଅଛ ଆମ୍ଭଠାରୁ ନିଅ ।
ଏମନ୍ତ କହି ଶିବଙ୍କୁ କହିଲେ ଚଞ୍ଚଳ
ଅନ୍ୱେଷଣ କର କାହିଁଗଲେ ତପଶୀଳ ।
କ୍ଷଣେମାତ୍ର ଦରଶନ ଦେଇଣ ଆମ୍ଭଙ୍କୁ
ନ କହି ସେ ଦେଖ ଚାଲିଗଲେ କେଉଁଠାକୁ ।

ଯାହାଘରୁ ଅଭ୍ୟାଗତ କ୍ଷୁଧାତୁର ହୋଇ
ଫେରିଯାଏ ତା ଜୀବନ ବ୍ୟର୍ଥ ଅଟଇ ।
ପିତୃମାନେ ତା ହସ୍ତରୁ ପିଣ୍ଡ ତରପଣ
ଜଳଆଦି କିଛି ନ କରନ୍ତି ଗ୍ରହଣ ।
ଆହୁତି ଯେସନ୍ତ ନାହିଁ ଦେବ ବୈଶ୍ୱାନର
ନ ଯେସନ୍ତ ଦେବତାଏ ପୁଷ୍ପଫଳ ନୀର ।
ହବ୍ୟକବ୍ୟ ପୁଷ୍ପଫଳ ଆଦି ଯେତେ ଦ୍ରବ୍ୟ
ହୁଅଇ ସେ ସୁରାତୁଲ୍ୟ ଅଟେ ତାହା ସର୍ବ ।
ସେଉଁ ମିଷ୍ଟ ହୁଅଇ ସେ ଅମେଧ୍ୟ ସମାନ
ଛୁଇଁଲେ ତାହାକୁ ନାଶ ହୁଏ ପୂର୍ବକର୍ମ ।
ଏରୂପେ କହିବା ବେଳେ ପର୍ବତନନ୍ଦିନୀ
ଆକାଶ ମଧ୍ୟରୁ ଶୁଣାଗଲା ଏହି ବାଣୀ ।
ଆଗୋ ମାତ ଶାନ୍ତ ହୋଇ ମନ୍ଦିରକୁ ଯାଅ
ସୁନ୍ଦର ବଦନ ଦେଖି ଆନନ୍ଦକୁ ପାଅ ।
ଯେଉଁ ଦ୍ୱିଜ ଯାଇଥିଲେ ତୁମ୍ଭର ପାଶକୁ
ଗୋଲୋକର ଅଧିପତି ବୋଲି ଜାଣ ତାଙ୍କୁ ।

ପୁଣ୍ୟକ ବ୍ରତରେ ତୁମ୍ଭେ ମଜ୍ଜା କରିଥିଲ
ସେ ସକାଶୁଁ ତାହାଙ୍କର ଦର୍ଶନ ପାଇଲ ।
ଯେ ରୂପକୁ ଦେଖିବାକୁ ଯୋଗିଜନେ ବସି
ଧ୍ୟାନରେ ନିରତ ହୋଇଛନ୍ତି ଅହର୍ନିଶି ।
ବ୍ରହ୍ମା ବିଷ୍ଣୁ ଶିବଆଦି ବଇଷ୍ଣବ ଗଣ
ତାଙ୍କ କୃପାବଳେ ବଡ଼ ବୋଲାଅନ୍ତି ଜାଣ ।
ପୁତ୍ରରୂପେ ତୁମ୍ଭ ଘରେ ଜନ୍ମି ସେ ଅଛନ୍ତି
ତାହାଙ୍କୁ ଯାଇ ପାଳନା କର ମହାସତୀ ।
ସବୁ ଦେବତାଙ୍କ ଆଗେ ପୂଜା ସେ ପାଇବେ
ଜଗତରେ ଅଗ୍ରପୂଜ୍ୟ ନାମକୁ ବହିବେ ।
ତାଙ୍କୁ ଯେଉଁ ଲୋକ ନିତ୍ୟ କରିବ ସ୍ମରଣ
ବିଘ୍ନ ତାହା ପାଶେ ଯାଇ ନ ପାରିବ ଜାଣ ।
ଯାହାଙ୍କୁ ସର୍ବଦା ମନେ ପୂଜା କରୁଥିଲ
ଏବେ ଭାଗ୍ୟବଶେ ପୁତ୍ର ସ୍ୱରୂପେ ପାଇଲ ।
ତୁମ୍ଭ ବାଞ୍ଛା କଳ୍ପତରୁ ଅଟନ୍ତି ସେ ସୁତ
କନ୍ଦର୍ପ ସୁନ୍ଦର କୋଟି ଲାବଣ୍ୟ ସହିତ ।
ବିପ୍ରଙ୍କୁ ସୁମର ଆଉ ଶୋଚନା ନ କର
ଅଟନ୍ତି ସେ ସାକ୍ଷାତରେ ପ୍ରଭୁ ଚକ୍ରଧର ।
ଏତେ ବୋଲି ସରସ୍ୱତୀ ବିରତ ହୋଇଲେ
ତା ଶୁଣି ପାର୍ବତୀ ନିଜ ମନ୍ଦିରକୁ ଗଲେ ।
ଦେଖିଲେ ପଲଙ୍କ ପରେ ଶୋଇଛି ବାଳକ
ସୁବର୍ଣ୍ଣ ପ୍ରତିମା ପ୍ରାୟେ ଦିଶେ ଜକଜକ ।
ଗୃହ ଶିଖରକୁ ଚାହିଁଅଛି ପୁନଃ ପୁନଃ ।
ଶରଚ୍ଚନ୍ଦ୍ର ବିମ୍ବ ଜିଣି ଦିଶଇ ବଦନ ।
ତେଜରେ ଉଜ୍ଜ୍ୱଳ କରୁଅଛି ଦଶଦିଶ
ପ୍ରକାଶିତ ହୋଇଅଛି ମୁଖେ ମନ୍ଦହାସ ।
ଶଯ୍ୟା ପରେ ଏଣେ ତେଣେ ଭ୍ରମୁଛି ହରଷେ
କ୍ରନ୍ଦନ କରଇ ସ୍ତନ୍ୟ ପିଇବାର ଆଶେ ।
ପୁତ୍ରକୁ ଦେଖି ପାର୍ବତୀ ପତିପାଶେ ଯାଇ
ମଙ୍ଗଳ କାରଣ ଜଣାଇଲେ ଖୁସି ହୋଇ ।
ବୋଇଲେ ହେ ପ୍ରାଣେଶ୍ୱର ମନ୍ଦିରକୁ ଆସ
ହୋଇଅଛି ମୋର ବ୍ରତଫଳ ପରକାଶ ।
ଶ୍ରୀକୃଷ୍ଣଙ୍କ କୃପାବଳେ ଉତ୍ତମ କୁମର
ଶୟନ କରିଛି ରତ୍ନଶଯ୍ୟାରେ ଆମ୍ଭର ।
ପୁତ୍ରମୁଖୁ ଦେଖି ଏବେ ହୁଅ ଆନନ୍ଦିତ
ସଂସାର ମଧ୍ୟରେ ଯାହା ଅଟେ ସାରଭୂତ ।

ପୁଂନାମ ନରକୁ ତ୍ରାଣ କରିବାକୁ ସେହି
ଖ୍ୟାତ ହୋଇଛି ଜଗତେ ପୁତ୍ରନାମ ବହି ।
ଯେତେ ଦାନ ପୁଣ୍ୟ ଅବା ତୀର୍ଥ ପ୍ରଦକ୍ଷିଣ
ନୁହନ୍ତି ପୁତ୍ର ଦର୍ଶନ କଳାକୁ ସମାନ ।
ସକଳ ପ୍ରକାର ତପ ସାଧୁ ସମାଗମ
ସୁକୃତ ମଧ୍ୟରେ ଯାହା ଅଟଇ ଉତ୍ତମ ।
ସତ୍‌ପୁତ୍ର ଲାଭ ପୁଣ୍ୟର ଷୋଡ଼ଶ ଅଂଶକୁ
ସମାନ ସେ ନୁହଇଟି କହିଲି ତୁମ୍ଭଙ୍କୁ ।
ବ୍ରାହ୍ମଣ ଭୋଜନ ଅବା ଦେବତା ସେବନ
ପୁତ୍ରଲାଭଠାରୁ ସବୁ ଅଟଇ ନିଊନ ।
ଯେଉଁଠାରେ ଶିଶୁମୁଖ ଦବେଟି ବଚନ
ନ ଶୁଭେ ଅଟଇ ତାହା ନିବିଡ଼ କାନନ ।
ଶିଶୁପାଦ ନୃତ୍ୟ ଲଭ ନାହିଁ ଯେଉଁ ଭୂଇଁ
ଶିଶୁର ଅମୃତ ହସ ଯେଣୁ ଦେଖି ନାହିଁ ।
ନରକ ସମାନ ସେହି ସ୍ଥାନ ଅଟେ ଯାଣ
ପୁତ୍ର ବିନା ଏ ସଂସାର ଅଟେ ଅକାରଣ ।
ଏରୂପେ ପାର୍ବତୀଙ୍କର ବଚନକୁ ଶୁଣି
ଆନନ୍ଦିତ ମନେ ଶିବ ଉଠି ସେହିକ୍ଷଣି ।
ନିଜ ଭବନରେ ଯାଇ ପ୍ରବେଶ ହୋଇଲେ
ତଳପ ତଳରେ ପୁତ୍ର ଶୋଇଛି ଦେଖିଲେ ।
ତପତ କାଞ୍ଚନ ପରି ଦିଶଇ ତା ତନୁ
କରଇ ତେଜରେ ନିନ୍ଦା ଗ୍ରୀଷ୍ମକାଳ ଭାନୁ ।
ପାର୍ବତୀ ଦେବୀ ପୁତ୍ରକୁ ଶଯ୍ୟାରୁ ଉଠାଇ
ଆପଣାର ବକ୍ଷସ୍ଥଳେ ବସାଇଲେ ନେଇ ।
ଗଣ୍ଡସ୍ଥଳେ ପୁନଃପୁନଃ ଦେଇଣ ଚୁମ୍ବନ
ଆନନ୍ଦ ଜଳଧିଜଳେ ହୋଇଗଲେ ମଗ୍ନ ।
ବୋଇଲେରେ ସୁତ ତୋର ମୁଖ ଦେଖିକରି ।
ସମ୍ପୂର୍ଣ୍ଣ ହୋଇଲା ଆଜ କାମନା ମୋହରି ।
ଯେଉଁରୂପେ ଦରିଦ୍ରକୁ ମିଳିଲେ ସମ୍ପତ୍ତି
ହରଷ ରସରେ ଖେଳା କରେ ତାର ମତି ।
ଆବର ଶରପ୍ରବାସୀ ପତିକୁ ଦେଖିଲେ
ପତ୍ନୀର ମନ ଯେରୂପେ ହୁଏ ଯେହିକାଳେ ।
ସେହିରୂପେ ହୋଇ ଆଜି ମୋହର ମାନସ
ଲଭିଅଛି ଜାଣ ବାବୁ ପ୍ରଚୁର ସନ୍ତୋଷ ।
ହଜି ଯାଇଥିବା ରତ୍ନ ଅଯତ୍ନରେ ଯେବେ
ମିଳଇ ଆନନ୍ଦ ଜାତ ହୁଏ ଯେଉଁ ଭାବେ ।

ସେହିପରି ମନ ମୋର ହେଉଛି ହର୍ଷିତ
କି ଅବା ଦୁର୍ଲ୍ଲଭ ଦ୍ରବ୍ୟ ହୋଇଲି ପ୍ରାପତ ।
ବହୁତ କାଳରୁ ବର୍ଷା ନ ଥିବା ଦେଶରେ
ଅକସ୍ମାତେ ଯେବେ ମେଘମାଳ ବୃଷ୍ଟି କରେ ।
ସେହି ଦେଶ ଲୋକଙ୍କର ମନ ଯେଉଁପରି
ହୁଅଇ ମୋହର ମନ ହେଉଛି ସେପରି ।
ଆଉରି ଜନମ ଅନ୍ଧ ଚକ୍ଷୁଲାଭ କଲେ
ତୃଷାର୍ତ୍ତଙ୍କୁ ଅବା ଜଳ ମିଳେ ଯେବେ ଭଲେ ।
ଯେ ଅବା ଦୁସ୍ତର ଜଳ ମଧ୍ୟେ ଭାସୁଥାଇ
ତାହାକୁ ଯେବେ ଉତ୍ତମ ନଉକା ମିଳଇ ।
ଯାଞ୍ଚଦାନଠାରୁ ଯେବା ଥାଏ ଉପବାସେ
ତାହାକୁ ସୁସ୍ୱାଦୁ ଅନ୍ନ ମିଳେ ଯେବେ ଗ୍ରାସେ ।
ଯେରୂପେ ତାହାର ମନ ହୁଅଇ ତୃପତ
ମୋତେ ସେହିପରି ଲାଗୁଅଛି ଆରେ ସୁତ ।
ଏମନ୍ତ ବୋଲିଣ ଦେବୀ ସୁତଙ୍କୁ କୋଳରେ
ଘେନିଣ ସ୍ତନରୁ କ୍ଷୀର ପିଆଇଲେ ଧୀରେ ।
ସେ ଅନ୍ତରେ ମହାଦେବ ତାଙ୍କ ହସ୍ତୁ ନେଇ
ମୁଖେ ଚୁମ୍ବଦେଲେ ନିଜ କୋଳରେ ବସାଇ ।
ବେଦମନ୍ତ୍ର ଅନୁସାରେ ଆଶୀର୍ବାଦ କଲେ
ଧନ ଧାନ ଯେତେ ଏହା ଗୀତରେ ଭଣିଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶଙ୍କୁ ଶିବ ଓ ପାର୍ବତୀଙ୍କର
ଅବଲୋକନ କଥନେ ନାମ ନବମୋଽଧ୍ୟାୟଃ ।

# ଦଶମ ଅଧ୍ୟାୟ

## ବ୍ରହ୍ମାଆଦି ଦେବଗଣମାନେ ଗଣେଶଙ୍କୁ ବର ପ୍ରଦାନ କରିବା

ଶୁଣହେ ନାରଦ ମୁନି ଏଥୁ ଅନନ୍ତରେ
ପାର୍ବତୀଙ୍କ ପୁତ୍ର ଜନ୍ମ ଶୁଣି ସେ କାଳରେ ।
ଯାଗେ ବସିଥିଲେ ଯେଉଁ ଋଷିଗଣମାନେ
ପୁତ୍ରକୁ ଦେଖି ଆସିଲେ ସର୍ବେ ତୋଷମନେ ।
ତାହାଙ୍କୁ ଯାଇ ପୁଣି ଶଙ୍କର ପାର୍ବତୀ
ପୁତ୍ରର ମଙ୍ଗଳ କଥା ମନମଧ୍ୟେ ଚିନ୍ତି ।
ପ୍ରସିଦ୍ଧ ଦ୍ୱିଜ ଗଣଙ୍କୁ ଡକାଇ ଆଣିଲେ
ନାନାବିଧ ସୁବର୍ଣ୍ଣ ରତ୍ନମାନ ଦାନ ଦେଲେ ।
ଭିକ୍ଷୁକ ବନ୍ଦୀଙ୍କୁ ମଧ୍ୟ ନାନା ଦ୍ରବ୍ୟମାନ
ଦେଇଣ ସନ୍ତୁଷ୍ଟ କରାଇଲେ ତାଙ୍କ ମନ ।
ହରଷରେ ମହାଦେବ ବାଦ୍ୟକାରଗଣ
ଡକାଇ ବିବିଧବାଦ୍ୟ କଲେକ ବାଦନ ।
ଏକସହସ୍ର ମତ୍ତହସ୍ତୀ ଅଶ୍ୱ ଲକ୍ଷ ସଙ୍ଖ୍ୟ
ବ୍ରାହ୍ମଣମାନଙ୍କୁ ଦାନ କଲେ ହିମାଳୟ ।
ଏ ବାହାରେ ଦଶଲକ୍ଷ କାମଧେନୁ ଦେଲେ
ପଞ୍ଚଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁଣି ଦାନ କଲେ ।
ମୁକୁତା ମାଣିକ୍ୟ ରତ୍ନ ଶ୍ରେଷ୍ଠ ମଣିଗଣ
ଅମୂଲ୍ୟ ବସନ ଦିବ୍ୟମାଲ୍ୟ ବିଭୂଷଣ ।
ପୁଣି କ୍ଷୀରୋଦ ସମ୍ଭବ କଉସ୍ତୁଭ ମଣି
କଉସ୍ତୁଭ ଦେଲେ ପ୍ରଭୁ ଶଙ୍ଖଚକ୍ରପାଣି ।
ସୃଷ୍ଟି ଜାତ ସୁଦୁର୍ଲ୍ଲଭ ପଦାର୍ଥ ବହୁତ
ଦାନକଲେ ପ୍ରଜାପତି ତ୍ରିଭୁବନ ତାତ ।
ସେ ଅନ୍ତେ କ୍ରମରେ ଧର୍ମ ସୂର୍ଯ୍ୟ ପୁରନ୍ଦର
ଦେବତା ଦାନବ ମୁନି ପନ୍ନଗ କିନ୍ନର ।
ପର୍ବତ ଗନ୍ଧର୍ବ ଆଦି ଦେବ ଯୋନି ଯେତେ
ସେ ଯାହା ଇଚ୍ଛାରେ ଦାନକଲେ ସେ ସମସ୍ତେ
ସହସ୍ରେ ପରଶମଣି ସହସ୍ରେ ହୀରକ
ଏକଶତ କଉସ୍ତୁଭ ସହସ୍ରେ ହୀରକ ।
ଦୁଇ ସହସ୍ର ମାଣିକ୍ୟ ରତ୍ନ ଏକଶତ
ହରିତ ବରନ ମଣି ସହସ୍ର ବହୁତ ।
ଲକ୍ଷେଗୋଟି ଗାଈ ପୁଣି ସହସ୍ରେକ ଗଜ ।
ଦଶ ସହସ୍ର ଶୁକ୍ଳବର୍ଣ୍ଣ ଅଶ୍ୱରାଜ ।
ଦଶଲକ୍ଷ ସ୍ୱର୍ଣ୍ଣ ଦିବ୍ୟ ବସନ ଅନେକ
ଆଉରି ସଂସାର ସାର ପଦାର୍ଥ ଯେତେକ ।
ବ୍ରାହ୍ମଣଙ୍କୁ ଦେଲେ ଦେବୀ କ୍ଷୀରୋଦନନ୍ଦିନୀ
ଗଣେଶ ଜନ୍ମରେ ମହାତୋଷ ମନେ ଘେନି ।
ଅତ୍ୟନ୍ତ ନିର୍ମଳ ସୂର୍ଯ୍ୟ ତୁଲ୍ୟ ତେଜସ୍କର
ତ୍ରୈଲୋକ୍ୟ ଦୁର୍ଲ୍ଲଭ ମହାମୂଲ୍ୟ ରତ୍ନହାର ।
ମାଣିକ୍ୟ ହୀରକ ତାହା ସଙ୍ଗେ ମିଶି କରି
ଦେଉଥିଲ ବାଳଇନ୍ଦୁ ପ୍ରଭାକୁ ଧିକ୍କାରି ।
ମଧ୍ୟରେ କୌସ୍ତୁଭ ମଣି ଶୋଭାପାଏ ଅତି
ଏମନ୍ତ ମାଳାକୁ ହସ୍ତେ ଘେନି ସରସ୍ୱତୀ ।

ଉତ୍ତମ ଦ୍ୱିଜଙ୍କୁ ତାଙ୍କ ଦାନ କରାଇଲେ
ଆବର ବିବିଧ ଭକ୍ଷଦ୍ରବ୍ୟମାନ ଦେଲେ ।
ଏହାପରେ ଏକ ଦିବ୍ୟ ହାର ସହିତରେ
ନାନାବିଧ ଅଳଙ୍କାର ଅଣାଇ ଧଇରେ ।
ସାବିତ୍ରୀଦେବୀ ସେକାଳେ ବ୍ରାହ୍ମଣଙ୍କୁ ଦେଲେ
ପୁତ୍ରର ମଙ୍ଗଳ ହେଉ ବୋଲି ବାଞ୍ଛାକଲେ ।
ଲକ୍ଷେକ ସୁବର୍ଣ୍ଣ ବସ୍ତ୍ର ଧନ ଅପ୍ରମିତ
ଦାନକଲେ ଧନେଶ୍ୱର ହୋଇ ପ୍ରୀତଚିତ୍ତ ।
ଏହିରୂପେ ଗଣେଶଙ୍କ ଜନମ ଉତ୍ସବେ
ଯେ ଯା ମତେ ଧନରତ୍ନ ଦାନ କଲେ ସବେ ।
ପୁତ୍ରଙ୍କୁ ଦେଖିଣ ଅତି ଆନନ୍ଦିତ ହେଲେ
ପାର୍ବତୀଙ୍କ ବ୍ରତଫଳ ଫଳିଲା ବୋଇଲେ ।
ବ୍ରାହ୍ମଣ ଭିକ୍ଷୁକ ସୂତ ମାଗନ ଯେତେକ
ଧନରତ୍ନ ବସ୍ତ୍ର ପାଇଥିଲେ ତ ଅନେକ ।
ବହିବା ପାଇଁକି ସେ ତ ସମର୍ଥ ନ ହେଲେ
ସେସକାଶୁ ସ୍ଥାନେସ୍ଥାନେ ଥୋଇଥୋଇ ନେଲେ
ଯିବାବେଳେ ଗୁଲୁଥାନ୍ତି କଥାବାର୍ତ୍ତା ହୋଇ
ବୋଲନ୍ତି ଏପରି ଦାନ ଦେଖି ନାହିଁ କାହିଁ ।
ସେ ସମୟେ ନାରୀପୁଣ ଆନନ୍ଦ ମନରେ
ବାଦ୍ୟନୃତ୍ୟ ଗୀତ କରାଇଲେ ଆଣି ଦ୍ୱାରେ ।
ସକଳ ଦେବାଋଷିଙ୍କୁ ଡକାଇ ଆଣିଲେ
ସମସ୍ତେ ମିଶି ଶିଶୁକୁ ଆଶୀର୍ବାଦ କଲେ ।
ବିଷ୍ଣୁ ବୋଇଲେ ଯେ ସଦାଶିବଙ୍କ ସମାନ
ତୋହର ଆୟୁଷ ବୃଦ୍ଧି ହେଉରେ ନନ୍ଦନ ।
ମୋର ସମାନ ବିକ୍ରମ ହେଉ ତୋ ଦେହରେ
ଅଦ୍ଭୁତ କୀର୍ତ୍ତିଶାଳୀ ହୁଅ ତୁ ଲୋକରେ ।
ବ୍ରହ୍ମା ବୋଇଲେ ତୋହର ଯଶରେ ଜଗତ
ପୂର୍ଣ୍ଣ ହୋଇବ ନିଶ୍ଚୟ ଜାଣ ଆରେ ସୁତ ।
ସବୁ ଦେବଙ୍କ ପ୍ରଥମେ ପୂଜା ତୁ ପାଇବୁ
ଅଗ୍ରପୂଜ୍ୟ ବୋଲି ସବୁଠାରେ ଖ୍ୟାତ ହେବୁ ।
ଧର୍ମ ବୋଇଲେ ମୋହର ସମାନ ତୁ ହୁଅ
ଦୟାଳୁ ଧାର୍ମିକ ବିଷ୍ଣୁଭକ୍ତ ହୋଇଥାଅ ।
ମହାଦେବ ବୋଇଲେ ତୁ ଶ୍ରୀକୃଷ୍ଣ ଭକତ
ବିଦ୍ୟାବନ୍ତ ଗୁଣବନ୍ତ ହୁଅ ଆରେ ସୁତ ।
ସେ ଅନ୍ତରେ ମହାଲକ୍ଷ୍ମୀ ବୋଇଲେ ତୋଠାରେ
ମୋହର ନିଶ୍ଚଳ ସ୍ଥିତି ହେଉ ନିରନ୍ତରେ ।
ସରସ୍ୱତୀ ବୋଇଲେ ତୁ ବିଦ୍ୟାବୁଦ୍ଧି ଗୁଣେ
ଜଗତ ମଧ୍ୟରେ ହୁଅ ମୋ ସମାନ ଜଣେ ।
ସାବିତ୍ରୀ ବୋଇଲେ ଦେବ ଜନନୀ ତ ମୁହିଁ
ବର ଦେଉଅଛି ଘେନ ତୋଷମତି ହୋଇ ।
ମୋର ମନ୍ତ୍ର ଉପାସନା କର ତୁ ନିରତେ
କୁଶଳ ହୋଇବ ବାବୁ ସବୁ ବେଦଶାସ୍ତ୍ରେ ।
ସେ ଅନ୍ତରେ ହିମାଳୟ ପର୍ବତ ଅଗ୍ରଣୀ
ବୋଇଲେ ରେ ବତ୍ସ ତୁହି ହୁଅ ମହାଜ୍ଞାନୀ ।
କୃଷ୍ଣଭକ୍ତ ପରାୟଣ କୃଷ୍ଣଙ୍କ ସମାନ
ହୁଅ ବାବୁ କରୁଅଛି ମୁଁ ଆଶିଷ ପ୍ରଦାନ ।
ମେନକା ବୋଇଲେ ବାବୁ ଗାମ୍ଭୀର୍ଯ୍ୟ ଗୁଣରେ
ସମୁଦ୍ର ସମାନ ହୁଅ ସଂସାର ମଧ୍ୟରେ ।
ରୂପରେ ହୁଅ କନ୍ଦର୍ପ ସମାନ ସୁନ୍ଦର
ଶ୍ରୀମନ୍ତ ପଣରେ ତୁଲ୍ୟ ଶିରୀପତିଙ୍କର ।
ଧର୍ମରେ ଧର୍ମ ସଦୃଶ ହୁଅ ଆରେ ସୁତ
ଆମ୍ଭର ଏ ଶୁଭ ଆଶୀର୍ବାଦ ହେଉ ସତ୍ୟ ।
ଜ୍ଞାନେ ଧ୍ୟାନେ ପରମ ନୋହୁ କେ ସଂସାରେ
ସକଳ ସହିଷ୍ଣୁ ହୁଅ ଧରା ପରକାରେ ।
ପୃଥିବୀ ବୋଇଲେ ମୋର ତୁଲ୍ୟ କ୍ଷମାବାନ
ଆବର ସମ୍ପଦ ଯୁକ୍ତ ହୁଅରେ ନନ୍ଦନ ।
ଏରୂପେ ସମସ୍ତେ କହି ତୁନ ହେବାପରେ
ପାର୍ବତୀ ଦେବୀ ସେକାଳେ କହିଲେ ସ୍ନେହରେ
ଆହେ ପୁତ୍ର ପିତୃ ତୁଲ୍ୟ ମହାଯୋଗୀ ହୁଅ
ସକଳ ଶାସ୍ତ୍ରରେ ଦିବ୍ୟ ତତ୍ତ୍ୱଜ୍ଞାନ ପାଅ ।
ସେ ଅନ୍ତରେ ମୁନି ଋଷି ବ୍ରାହ୍ମଣ ସମସ୍ତେ
ଜଣେ ଜଣେ ଆଶୀର୍ବାଦ କଲେ ପ୍ରୀତଚିତ୍ତେ ।
ମଙ୍ଗଳମୟ ଗଣେଶ ଜନମ ବୃତ୍ତାନ୍ତ
କହିଲି ଆମୂଳ କରି ଆହେ ତପୋବନ୍ତ ।
ସଂଯତ ଭାବରେ ଏହା ଶୁଣଇ ଯେ ନିତ୍ୟ
କଦାପି ଅଶୁଭ ତାର ନୁହଇ କାଞ୍ଚତେ ।
ଅପୁତ୍ର ଲୋକ ଶୁଣିଲେ ପୁତ୍ର ଲଭ ହୋଇ
ନିର୍ଦ୍ଧନ ଲୋକଙ୍କୁ ଧନ ଅବଶ୍ୟ ମିଳଇ ।
ଭାର୍ଯ୍ୟା ପାଇବା ପାଇଁ ଇଚ୍ଛାଥାଏ ଯାର
ଏହାକୁ ଶୁଣିଲେ କାର୍ଯ୍ୟ ସିଦ୍ଧି ହୁଏ ତାର ।

ରୋଗୀ ଯେବେ ଶୁଣେ ନିଶ୍ଚେଁ ଲଭଇ ଆରୋଗ୍ୟେ
ଦୁର୍ଭାଗା କାମିନୀ ଭୋଗ କରେ ସଉଭାଗ୍ୟେ
ରାଜ୍ୟଧନ ଭ୍ରଷ୍ଟ ହୋଇଥିଲେ ଅଳ୍ପଦିନେ
ପ୍ରାପତ ହୁଅଇ ଏହି ଚରିତ ଶ୍ରବଣେ ।
ପ୍ରୋଷିତଭର୍ତ୍ତୃକା ସ୍ତ୍ରୀ କାନ୍ତ ସଙ୍ଗପାଏ
ଯେବେ ଏ ଚରିତ ଶୁଣିବାକୁ ମନଦିଏ ।
ଏହି ମଙ୍ଗଳ ଅଧ୍ୟାୟ ପୁସ୍ତକରେ ଲେଖି
ଗୃହରେ ରଖିଲେ ଲୋକ ହୁଅଇଟି ସୁଖୀ ।
ଯାତ୍ରାକାଳେ ପୁଣ୍ୟଦିନେ ଏହାକୁ ଶୁଣିଲେ
ଗଣେଶଙ୍କ ପ୍ରସାଦରେ ଶୁଭ ହୁଏ ଭଲେ ।
ଧନଜନ ଐଶ୍ୱର୍ଯ୍ୟ ବଢ଼ଇ ଆବର
ସଂଶୟ ନାହିଁ ଏଥିରେ ବୋଲେ କ୍ଷେତ୍ରଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ବ୍ରହ୍ମାଆଦି ଦେବଗଣମାନେ
ଗଣେଶଙ୍କୁ ବରପ୍ରଦାନ ନାମ ଦଶମୋଽଧ୍ୟାୟଃ ।

# ଏକାଦଶ ଅଧ୍ୟାୟ

## ଗ୍ରହରାଜଶନି କୈଳାସରେ ପ୍ରବେଶ ପାର୍ବତୀଙ୍କ ସହିତ ଆଲୋଚନା ଭଣିତ

ନାରଦଙ୍କ ଅଗ୍ରତରେ ଋଷି ନାରାୟଣ
ପୁତ୍ରକୁ ପ୍ରଶଂସାକରି ବୋଇଲେ ବଚନ ।
ସଭାରେ ବସିଲେ ରତ୍ନ ସିଂହାସନ ପରେ
ଋଷିଗଣେ ବେଢ଼ିଛନ୍ତି ଶିବ ପାଶରେ ।
ଦକ୍ଷିଣେ ଶଙ୍କର ବାମେ ବ୍ରହ୍ମା ପ୍ରଜାପତି
ଆଗରେ ଧର୍ମଦେବତା କଲେ ଅବସ୍ଥିତି ।
ଧର୍ମଙ୍କ ସମୀପେ ଶୁକ୍ର ସୂର୍ଯ୍ୟ ନିଶାକର
ହିମାଳୟ ଆଦିକରି ସର୍ବ ମହୀଧର ।
ଦିବ୍ୟ ଆସନରେ ମହାସୁଖରେ ବସିଲେ
ଅପସରାଗଣ ତାଙ୍କ ଆଗେ ନୃତ୍ୟ କଲେ ।
ଗନ୍ଧର୍ବେ ଲଳିତସ୍ୱରେ କଲେକ ଗାୟନ
ସ୍ତୁତିପାଠ ଆରମ୍ଭିଲେ ବୈତାଳିକଗଣ ।
ଏହିକାଳେ ଗଣେଶଙ୍କୁ ଦେଖିବା ଇଚ୍ଛାରେ
ଶନୈଶ୍ଚର ଗ୍ରହ ଆସି ମିଳିଲେ ସେଠାରେ ।
ତଳକୁ ନୁଆଇଁ ରଖିଅଛନ୍ତି ବଦନ
ଅଳପମାତ୍ର ମୁଦ୍ରିତ ହୋଇଛି ଲୋଚନ ।
ଶ୍ରୀକୃଷ୍ଣଙ୍କଠାରେ ମନଦେଇ ନିରନ୍ତରେ
ନାମ ଉଚ୍ଚାରଣ କରୁଅଛନ୍ତି ମୁଖରେ ।
ଜଳନ୍ତା ଅନଳ ଶିଖା ପରାଏ ଦିଶନ୍ତି
ଅତ୍ୟନ୍ତ ଶ୍ୟାମଳ ଦିଶୁଅଛି ଦେହ କାନ୍ତି ।
ପରିଧାନ କରିଛନ୍ତି ସ୍ୱଚ୍ଛ ପୀତବାସ
ତେଜରେ ନିର୍ମଳ ହେଉଅଛି ଦଶଦିଶ ।
ଦେବଙ୍କ ସଭା ମଧ୍ୟରେ ପ୍ରବେଶ ହୋଇଲେ
ବ୍ରହ୍ମା ବିଷ୍ଣୁ ଶିବଙ୍କର ଆଗେ ପ୍ରଣମିଲେ ।
ସେ ଅନ୍ତେ ଧର୍ମ ବାସବ ଚନ୍ଦ୍ର ସୂର୍ଯ୍ୟପ୍ରଭୃତି
ସର୍ବଦେବଙ୍କୁ ପ୍ରଣାମ କରି ଶନିଗ୍ରହ ।
ତାହାଙ୍କ ଅନୁଜ୍ଞା ନେଇ ବାଳକ ପାଶକୁ
ଗଲେ ଦେଖିବାପାଇଁକି ତାହାର ରୂପକୁ ।
ପ୍ରଧାନ ଦୁଆରେ ଯାଇ ପ୍ରବେଶ ହୋଇଲେ
ବିଶାଳାକ୍ଷ ନାମେ ଦାସ ବସିଛି ଦେଖିଲେ ।
ଶିବଙ୍କ ସମାନରେ ସେ ଅଟେ ବଳବନ୍ତ
ମହାତ ଶୂଳ ଗୋଟାଏ ଧରିଅଛି ହସ୍ତ ।
ତାକୁ ଦେଖି ଶନୈଶ୍ଚର ବୋଇଲେ ହେ ଶୁଣ
ଶିବଙ୍କ ଆଜ୍ଞାରେ ମୁହିଁ ଆସିଅଛି ଜାଣ ।
ଶିଶୁକୁ ଦେଖିବାପାଇଁ ଯାଉଅଛି ଏବେ
ଅନୁଜ୍ଞା ଦେଇଅଛନ୍ତି ବ୍ରହ୍ମାଆଦି ଦେବେ ।
ପ୍ରଥମେ ପାର୍ବତୀଙ୍କର ଚରଣ ବନ୍ଦିବି ।
ସେ ଅନ୍ତେ ଶିଶୁକୁ ଦେଖି ବାହୁଡ଼ି ଆସିବି ।
ତାହା ଶୁଣି ବିଶାଳାକ୍ଷ ବୋଇଲା ହେ ଗ୍ରହ
ନୁହଇ ମୁଁ ବ୍ରହ୍ମା ବିଷ୍ଣୁ ଶିବ ଆଜ୍ଞାବହ ।
ମାତାଙ୍କ ଅନୁଜ୍ଞା ବିନା ଦୁଆରେ କାହାକୁ
ଛାଡ଼ି ନ ଦେବି ନିଶ୍ଚୟ କହୁଛି ତୁମ୍ଭଙ୍କୁ ।
ଏମନ୍ତ ବୋଲିଣ ଅନ୍ତଃପୁରେ ଚଳିଗଲା
ପାର୍ବତୀଙ୍କ ଆଜ୍ଞାପାଇ ସେକ୍ଷଣି ଆସିଲା ।
ଦ୍ୱାରେ ଉଭା ହୋଇଥିଲେ ଗ୍ରହ ଶନୈଶ୍ଚର
ଯିବାପାଇଁ ତାଙ୍କୁ ଛାଡ଼ିଦେଲା ସେ ସତ୍ୱର ।
ଅନ୍ତଃପୁରେ ପରବେଶ ହୋଇ ଗ୍ରହପତି
ଦେଖିଲେ ବସିଅଛନ୍ତି ପର୍ବତଦୁହିତା ।
ମହାମୂଲ୍ୟ ଦିବ୍ୟରତ୍ନ ସିଂହାସନ ପରେ
ବିଜେ କରିଛନ୍ତି ଦେବୀ ସସ୍ମିତ ମୁଖରେ ।

ତାଙ୍କଗୋଟି ସଖି ପାଖେ ବେଢ଼ି ବସିଛନ୍ତି
ଶୁକଳ ଚାମର ହସ୍ତେ ଘେନିଣ ଢାଳନ୍ତି ।
ସୁବାସ ତାମ୍ବୁଳ ଆଣି କେଉଁ ସହଚରୀ
ହସ୍ତକୁ ବଢ଼ାଇ ଦେଇଅଛି ସ୍ନେହକରି ।
କରିଛନ୍ତି ବହ୍ନି ଶୁଦ୍ଧ ବସ୍ତ୍ର ପରିଧାନ
ଘେନି ଅଛନ୍ତି ଅଙ୍ଗରେ ବିବିଧ ଭୂଷଣ ।
ନର୍ତ୍ତକୀମାନଙ୍କ ନୃତ୍ୟେ ମନନେତ୍ର ଦେଇ
ବସିଅଛନ୍ତି ପୁତ୍ରକୁ ବକ୍ଷସ୍ଥଳେ ଥୋଇ ।
ତାଙ୍କୁ ଦେଖି ଗ୍ରହରାଜ ମସ୍ତକ ନୁଆଇଁ
ପ୍ରଣାମ କଲେ ସେକାଳେ ଶିରେ କରଦେଇ ।
ଜଗତଜନନୀ ଦୁର୍ଗା ମହାସମାଦରେ
ଆଶୀର୍ବାଦ କରି ତାଙ୍କୁ ହରଷ ଅନ୍ତରେ ।
କୁଶଳ ବାରତା ଆଗ ପୁଚ୍ଛାକରି ପୁଣି
ବୋଇଲେ ଶୁଣିବା ହେଉ ଆହେ ଗ୍ରହଶନି ।
କାହିଁକି ତଳକୁ ମୁଖ ହୋଇଛି ତୁମ୍ଭର
ଶୁଣିବାପାଇଁକି ମନ ହେଉଅଛି ମୋର ।
ମୋତେ ଅବା ବାଳକକୁ କାହିଁପାଇଁ ତୁମ୍ଭେ
ଚାହୁଁ ନାହିଁ କହ ଏହା ପଚାରୁଛୁ ଆମ୍ଭେ ।
ଶନୈଶ୍ଚର ବୋଇଲେ ଗୋ ଶୁଣ ଜଗଦ୍ଧାତ୍ରି
ସମସ୍ତେ ଆପଣା କର୍ମଫଳକୁ ଭୁଞ୍ଜନ୍ତି ।
ପୂର୍ବରେ ଯେ ଶୁଭାଶୁଭ କର୍ମ କରିଥିବ
କୋଟିଏ କଳ୍ପରେ ତାହା ବିନାଶ ନୋହିବ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ରଙ୍କର ଘରେ
ଜନମ ହୁଅଇ ଜନ୍ତୁ ଆପଣା କର୍ମରେ ।
ଆବର ମନୁଷ୍ୟ ଅବା ପଶୁକୁଳେ ଜାତ
ହୁଅଇ ନିଜ କର୍ମରେ ଜାଣ ଆଦିମାତ ।
କର୍ମରେ ବୈକୁଣ୍ଠପୁରେ ହୁଅଇ ନିବାସ
ନରକ ଭୋଗ ହୁଅଇ କର୍ମରେ ଅବଶ୍ୟ ।
କର୍ମଯୋଗେ ରାଜା ହୋଇପାରେ କ୍ଷୁଦ୍ରନର
ବଶିଷ୍ଠ ଲୋକ ଯେ କର୍ମେ ହୁଅଇ ଚାକର ।
କର୍ମ ଅନୁସାରେ ଲୋକ ସୁନ୍ଦର ହୁଅଇ
କର୍ମରେଟି ବ୍ୟାଧିଯୁକ୍ତ ନୀଚ ହୋଇଥାଇ ।
ବିଷୟୀ ଅଥବା ତ୍ୟାଗୀ ହୁଏ କର୍ମବଳେ
ଦରିଦ୍ର ବା ଧନୀ ହୁଏ ନିଜ କର୍ମଫଳେ ।
କର୍ମରେ ହୁଅଇ ଲୋକେ ପୀରତିଭାଜନ
ବନ୍ଧୁ କଣ୍ଟକ ହୁଅଇ କର୍ମରେଟି ଜାଣ ।

କର୍ମରେ ଉତ୍ତମଭାର୍ଯ୍ୟା ପୁତ୍ର ଲାଭ ହୁଏ
କୁତ୍ସିତ ଭାର୍ଯ୍ୟା ସୁତ କର୍ମ ଘଟିଥାଏ ।
ଏମନ୍ତ ଅଟଇ ଦେବୀ କର୍ମର ପ୍ରଭାବ
କହୁଅଛି ଶୁଣ ମୋର ଗୁପ୍ତ କଥା ସର୍ବ ।
କହିବାକୁ ଉପଯୁକ୍ତ ନୁହଇ ଯେ କଥା
ତଥାପି ତୁମ୍ଭ ଆଗରେ କହିବ ସର୍ବଥା ।
ଶୈଶବକାଳରୁ ମୁହିଁ ଶ୍ରୀକୃଷ୍ଣଙ୍କଠାରେ
ମନଦେଇ ଧ୍ୟାନ କରୁଥାଏ ନିରନ୍ତରେ ।
ସବୁବେଳେ ତପସ୍ୟାରେ ହୋଇଥାଏ ରତ
ବିଷୟ ଭୋଗରେ କେବେ ବଳେ ନାହିଁ ଚିତ୍ତ ।
ତାହାଦେଖି ପିତା ମୋତେ ଡକାଇଣ ନେଲେ
ଚିତ୍ରରଥ ସୁତା ସଙ୍ଗେ ବିଭା କରାଇଲେ ।
ଅତି ତେଜସ୍ୱିନୀ ସେହି ସୁନ୍ଦରୀ ରମଣୀ
ମୋହି ଅନୁରୂପେ ଅଟେ ଜଗତ ମୋହିନୀ ।
ଦିନେ ଋତୁସ୍ନାନ ଅନ୍ତେ ସେ କାମିନୀବର
ସଜାଇଣ ବେଶଭୂଷା ନାନାପରକାର ।
କାମବଶେ ମନ ତାର ହୁଏ ଛନ୍ନ ଛନ୍ନ
ରତିରସ ଆଶା କରି ରମଣୀରତନ ।
ମୋର ସମୀପରେ ଆସି ପ୍ରବେଶ ହୋଇଲା
ଧ୍ୟାନରେ ମଗ୍ନ ହୋଇ ମୁଁ ବସିଛି ଦେଖିଲା ।
ଯସ୍ମି ତବଦନେ ନେତ୍ରକୋଣେ ମୋତେ ଚାହିଁ
ଜାଣିଲା ତା ଠାରେ ମୋର ଅଭିଳାଷ ନାହିଁ ।
ଯେ ସକାଶୁ ଋତୁନଷ୍ଟ ହୁଅନ୍ତେ ସୁନ୍ଦରୀ
ଶାପ ଦେଲା କ୍ରୋଧବେଗ ସମ୍ଭାଳି ନ ପାରି ।
ବୋଇଲା ମୁଁ ଋତୁରକ୍ଷା କରିବା ସକାଶେ
ବେଶଭୂଷା ହୋଇ ଆସିଥିଲି ତୁମ୍ଭ ପାଶେ ।
ଗର୍ବିତଭାବରେ ଯାହା ନ ଚାହିଁଲ ମୋତେ
ଏଣୁ ଶାପ ଦେଉଅଛି ଘେନ ଗ୍ରହପତେ ।
ଆଜଠାରୁ ତୁମ୍ଭ ଦୃଷ୍ଟି ପଡ଼ିବ ଯହିଁରେ
ଭସ୍ମ ହୋଇଯିବ ତାହା ମୁହୂର୍ତ୍ତ ମଧ୍ୟରେ ।
ତାହା ଶୁଣି ଧ୍ୟାନରୁ ମୁଁ ବିରତ ହୋଇଲି
ଯଥେଷ୍ଟ ପ୍ରକାରେ ତାର ମନକୁ ତୋଷିଲି ।
ସଂହରି ନ ପାରି ନିଜ ଶାପକୁ ସେ ବାଳା
ବହୁତ ପ୍ରକାରେ ପୁଣି ଅନୁତାପ କଲା ।

ଯେହ୍ନେ ବଦନଠାରୁ ମୁହିଁ ତଳକୁ ଅନାଇ
ରହିଅଛି ଜୀବହିଂସା ନ କରିବା ପାଇଁ ।
ଏରୂପେ ଶନିଙ୍କ ବାକ୍ୟ ଶୁଣିଣ ପାର୍ବତୀ
ହସିଲେ ଅଳପ ମାତ୍ର ମସ୍ତକକୁ ପୋତି ।
ନର୍ତ୍ତକୀ କିଙ୍କରୀ ଆଦି ଯେତେ ତହିଁ ଥିଲେ
ସମସ୍ତେ ସେ କଥା ଶୁଣି ଉଚ୍ଚରେ ହସିଲେ ।
ବୋଲେ ଦୀନ କ୍ଷେତ୍ରବାସୀ ଶ୍ରୀହରିଙ୍କ ପାଦେ
ସର୍ବଦା ମୋହର ମନ ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗ୍ରହରାଜଶନି କୈଳାସ ପ୍ରବେଶି
ପାର୍ବତୀଙ୍କ ସହିତ ଆଲୋଚନା କରିବା ନାମ ଏକାଦଶୋଽଧ୍ୟାୟଃ ।



# ଦ୍ୱାଦଶ ଅଧ୍ୟାୟ

## ଶନିଙ୍କ ଦର୍ଶନରେ ଗଣେଶଙ୍କର ମସ୍ତକ ଛେଦନ ଓ ବିଷ୍ଣୁଙ୍କ ଦ୍ୱାରା ଗଜ ମସ୍ତକ ସଂଯୋଗ କରିବା

ଏଥୁ ଅନନ୍ତରେ ଶୁଣ ହେ ନାରଦ ମୁନି
ଶନିଙ୍କ ବଚନ ଶୁଣି ପର୍ବତ ନନ୍ଦିନୀ ।
ଶିବଙ୍କ ଇଚ୍ଛାରେ ସେହୁ ମୋହିତ ହୋଇଲେ
ଭଲ ମନ୍ଦ ବିଷୟରେ ବିଚାର ନ କଲେ ।
କଉତୁକେ ଶନିଙ୍କର ବଦନ ଅନାଇଁ
ବୋଇଲେ ଆପଣ ମୋତେ ଦିଅ ଏବେ ଚାହିଁ ।
ଶିଶୁ ପୁତ୍ରଟିକୁ ମୋର କର ଦରଶନ
ଦଇବ ବିହିତ କଥା କେ କରିବ ଆନ ।
ଏହା ଶୁଣି ଶନୈଶ୍ଚର ବିସ୍ମିତ ହୋଇଲେ
କ୍ଷଣେଯାଏ ମନେ ମନେ ବିଚାର ସେ କଲେ ।
ପାର୍ବତୀଙ୍କୁ ଯେବେ ତାଙ୍କ ପୁତ୍ର ଭୁଲେ ମୁହିଁ
ଦେଖିବି ଅନିଷ୍ଟ ହେବ ସନ୍ଦେହ ସେ ନାହିଁ ।
ଚାହିଁବି କି ଅବା ନ ଚାହିଁବି ଯିବି ଫେରି
ଏମନ୍ତେ ଘଡ଼ିଏ ଯାଏ ଭାବନା ସେ କରି ।
ଧର୍ମ ଦେବତାଙ୍କୁ ସାକ୍ଷୀ କରିଣ ରଖିଲେ
ଶିଶୁଙ୍କୁ ଦେଖିବା ପାଇଁ ମନେ ସ୍ଥିର କଲେ ।
ପାର୍ବତୀ ଦେବୀଙ୍କୁ ମାତ୍ର ଚାହିଁବାକୁ ମନ
ନୋହିଲା ତାଙ୍କର ଜାଣ ଆହେ ତପୋଧନ ।
ଯେତକ୍ଷଣି ବିଷାଦ ତାଙ୍କୁ ଆକ୍ରମଣ କଲା
ମୁହୂର୍ତ୍ତେ ମଧ୍ୟରେ କଣ୍ଠ ତାଲୁ ଶୁଖିଗଲା ।
ଦଇବ ସ୍ମରଣ କରି ବାମନେତ୍ର କୋଣେ
ଶିଶୁର ମୁଖକୁ ଧୀରେ ଚାହିଁଦେବ କ୍ଷଣେ ।
କଣ୍ଠଠାରୁ ବେନିଖଣ୍ଡ ହୋଇଲା ମସ୍ତକ
ମାଳବର୍ଣ୍ଣ ଦେଖାଗଲା ପ୍ରତିଅଙ୍ଗ ସାକ ।
ନେତ୍ର ଲେଉଟାଇ ଶନି ମୁଖ ପୋତି ପୋତି
ପଳାଇଲେ ପାର୍ବତୀଙ୍କଠାରୁ ପାଇ ଭୀତି ।
ସେ ମୁଣ୍ଡ ଯେତକ୍ଷଣି ଅନ୍ତର୍ଦ୍ଧାନ ହୋଇଗଲା
ଗୋଲୋକରେ ଶ୍ରୀକୃଷ୍ଣଙ୍କ ପାଶରେ ମିଳିଲା ।
ପୁତ୍ରର ମରଣ ଦେଖି ଶଇଳ ନନ୍ଦିନୀ
ମୂର୍ଚ୍ଛା ଯାଇ ସେ କାଳରେ ଲୋଟିଲେ ଅବନୀ ।
ତା ଦେଖି ବିସ୍ମିତ ହୋଇ ସକଳ ଦେବତା
କି ହେଲା କି ହେଲା ବୋଲି କଲେ ମହାଚିନ୍ତା ।
ଆଦିରେ ଗନ୍ଧର୍ବ ସିଦ୍ଧ ଯକ୍ଷଗଣ ଭୁଲେ
ଦେବୀମାନେ ଜ୍ଞାନ ତେଜି ମହୀରେ ପଡ଼ିଲେ ।
ଭାର୍ଯ୍ୟା ପୁତ୍ରଙ୍କ ଦଶା ଦେଖି ମହେଶ୍ୱର
ଅଜ୍ଞାନ ହୋଇ ସେ ମଧ୍ୟ ପଡ଼ିଲେ ମହୀର ।
ସେ ସମୟେ ନାରାୟଣ ଶଙ୍କରଙ୍କ ହସ୍ତ
ଜାଣିଲେ ସଙ୍କଟ ଆସି ହେଲା ଉପସ୍ଥିତ ।
ସେ ସକାଶୁ ଗରୁଡ଼ରେ ଆରୋହଣ କରି
ଉତ୍ତର ଦିଗକୁ ଗଲେ ବିଳମ୍ବ ନ କରି ।
ପୁଷ୍ପଭଦ୍ରା ନଦୀତଟେ ପ୍ରବେଶ ହୋଇଲେ
ନିର୍ଜନ ବନରେ ମହା ଗଜେକ ଦେଖିଲେ ।
କାମରେ ଆସକ୍ତ ହୋଇ ସେ ମତ୍ତବାରଣ
ଶୋଇଥିଲା ହସ୍ତିନୀକୁ ସଙ୍ଗରେ ଘେନିଣ ।
ଉତ୍ତର ଦିଗକୁ ମୁଣ୍ଡ ହୋଇଥିଲା ତାର
ରତିଶ୍ରମେ ଶ୍ୱାସ ବହୁଥିଲା ଖରତର ।
ତାହାଙ୍କୁ ଦେଖିଣ ବିଷ୍ଣୁ ଘେନି ସୁଦର୍ଶନ
କଲେ ସେହିକ୍ଷଣି ତାର ମସ୍ତକ ଛେଦନ ।

ରକ୍ତ ଘରଘର କରି ଗରୁଡ଼ ଉପରେ
ରଖିଲେ ଯେ ମୁଣ୍ଡ ନେଇ ଅଣ୍ଡ ପତନରେ ।
ଶିର ଛୁଡ଼ିଯାନ୍ତେ ଗଜ ଛଟପଟ ହେଲା
ଯେ ବାଟରେ କରେଣୀର ନିଦ୍ରା ଭାଙ୍ଗିଗଲା ।
ଶାବକମାନଙ୍କୁ ଘେନି ଉଚ୍ଚରେ ରୋଦନ
କଲା ଯେ ଶୋକେ ଆତୁର ହୋଇଣ ବହନ ।
ଦେଖିଲା ପାଖରେ ଛନ୍ତି ପ୍ରଭୁ ନାରାୟଣ
ବୁଲାଉଅଛନ୍ତି ହସ୍ତେ ଧରି ସୁଦର୍ଶନ ।
ତାଙ୍କୁ ଦେଖି ଭକ୍ତିଭରେ ବହୁ ସ୍ତୁତି କରି
ବୋଇଲା ନମସ୍ତେ ପ୍ରଭୁ କମଳାବିହାରୀ ।
ସକଳ ଲୋକର ବନ୍ଧୁ ଅଟ ପରମେଶ
ନିର୍ଦ୍ଦୋଷରେ କଲ ମୋର ପତିକୁ ବିନାଶ ।
ଏବେ ସେହି ସଂକାଶରୁ ବାଳକଙ୍କୁ ଘେନି
ଆପଣଙ୍କ ଆଗେ ପ୍ରାଣ ତେଜିବି ଏକ୍ଷଣି ।
ତାହା ଶୁଣି ନାରାୟଣ ପ୍ରସନ୍ନ ହୋଇଲେ
ସେ ଗଜ ମୁଣ୍ଡରୁ ମୁଣ୍ଡଟିଏ ଜାତ କଲେ ।
ପିଣ୍ଡରେ ଲଗାଇ ତାହା ମନ୍ତ୍ର ଉଚ୍ଚାରଣ
କରନ୍ତେ ସେକ୍ଷଣି ଗଜ ପାଇଲା ଜୀବନ ।
ସକଳ ଅଙ୍ଗରେ ପାଦପଦ୍ମ ଯୋଗ କରି
ବୋଇଲେ ତୁ ଚିରଜୀବୀ ହୁଅ ଅରେ କରୀ ।
ଆବର ପୁତ୍ର ଭାର୍ଯ୍ୟା ଘେନି ସଙ୍ଗତରେ
ମହାସୁଖେ ରହିଥାଅ ଆପଣା ବାସରେ ।
ଏହିରୂପେ ବର ଦେଇ ଗଜକୁ ଶ୍ରୀପତି
କଇଳାସ ଭବନକୁ ଆସିଲେ ଝଟତି ।
ପାର୍ବତୀଙ୍କ ସମୀପରେ ପ୍ରବେଶ ହୋଇଲେ
ବାଳକ ଦେହକୁ ନିଜ କୋଳରେ ଧରିଲେ ।
ଆଣିଥିବା ଗଜଶିର ଯୋଡ଼ିଦେଲେ ତହିଁ
ଜୀବନ୍ୟାସ ମନ୍ତ୍ର ଉଚ୍ଚାରଣ କଲେ ଧ୍ୟାୟି ।
ଜୀଇଣ ବାଳକ ଉଠି ବସିଲା ସତ୍ୱର
ପୂର୍ବପ୍ରାୟ ଅବୟବ ଦିଶଇ ସୁନ୍ଦର ।
ପାର୍ବତୀଙ୍କୁ ନାନା ମତେ ପ୍ରବୋଧନା କରି
କୋଳରେ ପୁତ୍ରକୁ ନେଇ ଦେଲେ ସ୍ନେହଭରି ।
ସେ ଅନ୍ତରେ ଆଧ୍ୟାତ୍ମିକ ତତ୍ତ୍ୱଜ୍ଞାନ କଥା
କହି ଆରମ୍ଭିଲେ ମନ୍ୟୁ ଯିବାପାଇଁ ବ୍ୟଥା ।
ବୋଇଲେ ଗୋ ଦେବୀ ତୁମ୍ଭେ ଶୋଚନା ନ କର
ବ୍ରହ୍ମାଦି କୀଟ ପର୍ଯ୍ୟନ୍ତ ନିଖିଳ ସଂସାର ।
ଚଳାଚଳ ହେଉଅଛି କର୍ମଫଳ ଘେନି
ତୁମ୍ଭେ କି ନ ଜାଣ ମୁହିଁ କି କହିବି ପୁଣି ।
କୋଟିକଳ୍ପପାଏ ଜୀବ କର୍ମ ଅନୁସାରେ
ଜନ୍ମଲାଭ କରୁଥାଏ ବିବିଧ ଯୋନିରେ ।
ଆବର ତହିଁରେ ଶୁଭାଶୁଭ ଫଳମାନ
ଅବଶ୍ୟ ଭୋଗ କରଇ ବୋଲି ମନେ ଘେନ ।
କୀଟଜନ୍ମ ପାଏ ଇନ୍ଦ୍ର ନିଜ କର୍ମଯୋଗେ
କର୍ମବଳେ କୀଟ ମଧ୍ୟ ବିହରଇ ସ୍ୱର୍ଗେ ।
ସିଂହ ହେଲେ ମକ୍ଷିକାକୁ ମାରି ନ ପାରଇ
ଯେବେ ସେ ପୂର୍ବରେ ମାଠ କର୍ମ କରିଥାଇ ।
ମଶକ ଯଦ୍ୟପି କର୍ମେ ହୋଇଥାଏ ବଡ଼
ମତ୍ତହସ୍ତୀର ସେ ଭାଙ୍ଗିପାରେ ମେରୁହାଡ଼ ।
ସୁଖ ଦୁଃଖ ଐଶ୍ୱର୍ଯ୍ୟ ହର୍ଷ ଶୋକ ଭୟ
କର୍ମ ଯୋଗେ ଉପସ୍ଥିତ ହୁଅଇ ନିଶ୍ଚୟ ।
ଉତ୍ତମ କର୍ମ ଯେ କରେ ଶୁଭଫଳ ପାଏ
ପାପକର୍ମ କଲା ଲୋକ ଦୁଃଖେ ଘାଣ୍ଟି ହୁଏ ।
ପୁଣ୍ୟକ୍ଷେତ୍ର ଅଟଇ ଏ ଭାରତ ବରଷ
କର୍ମ ଉପାର୍ଜନ ଯୋଗ୍ୟ ଅଟେ ଏହି ଦେଶ ।
ଯେ ଯେଉଁ ପ୍ରକାରେ କର୍ମ କରେ ଏହିସ୍ଥାନେ
ଇହ ପର ଲୋକେ ତାହା ଭୁଞ୍ଜଇ ଯତନେ ।
କର୍ମର ଫଳକୁ ସେହି କରନ୍ତି ପ୍ରଦାନ
ବିଧାତାର ବିଧାତା ଯେ ଅଟନ୍ତି ଜାଣ ।
ଆବର ମୃତ୍ୟୁର ମୃତ୍ୟୁ କାଳରେ ସେ କାଳ
ସଂହାରୀର ସଂହାରକ ପ୍ରଭୁ ଆଦିମୂଳ
ଗୋଲୋକ ଭୁବନ ନାଥ ରାଧା ପ୍ରାଣପ୍ରିୟ
ଶ୍ରୀକୃଷ୍ଣ ପରମରୂପ ନିତ୍ୟ ନିରାମୟ ।
ଯାହାଙ୍କ କଳାରୁ ଆମ୍ଭେ ବ୍ରହ୍ମା ବିଷ୍ଣୁ ଶିବ
ଜାତ ହୋଇ ସଂସାରରେ ବୋଲାଉଛୁ ଦେବ ।
ମହା ବିରାଟ ପୁରୁଷ ଯାହାଙ୍କର ଅଂଶ
ଯାର ଲୋମକୂପେ ଲୀନ ହୁଏ ମହାବିଶ୍ୱ ।
ଯାହାଙ୍କ କଳାରୁ ଦେବ ଦେବୀମାନେ କେତେ
ଜାତ ହୋଇ ପ୍ରକାଶିତ ଅଟନ୍ତି ଜଗତେ ।
ସେ ଦେବ ପରମବ୍ରହ୍ମ ନିତ୍ୟ ନିରାକାର
ଭାଗ୍ୟବଳେ ହୋଇଛନ୍ତି ତୁମ୍ଭର କୁମର ।
ବ୍ରହ୍ମାଣ୍ଡ ପାଳନ କର୍ତ୍ତା ଅଟନ୍ତି ସେ ଯେଣୁ
ବିନାୟକ ବୋଲି ନାମ ହୋଇବଟି ତେଣୁ ।

ଏରୂପେ ବିଷ୍ଣୁଙ୍କ ବାକ୍ୟ ଶୁଣିଣ ପାର୍ବତୀ
ସନ୍ତୁଷ୍ଟ ହୋଇଣ ତାଙ୍କୁ କଲେ ବହୁସ୍ତୁତି ।
କୁମରଙ୍କୁ କୋଳେ ଘେନି ସ୍ତନ୍ୟ ପିଆଇଲେ
ତାହା ଦେଖି ଶିବ ବିଷ୍ଣୁ ହରଷିତ ହେଲେ ।
ମାତା ପୁତ୍ରଙ୍କୁ କଲ୍ୟାଣ କରି ନାରାୟଣ
ଶିଶୁର ଗଳାରେ ଦେଲେ କୌସ୍ତୁଭ ଭୂଷଣ ।
ଆପଣା ମୁକୁଟ କାଢ଼ି ଦେଲେ ପ୍ରଜାପତି
ଧର୍ମ ଦେଲେ ନାନା ରତ୍ନ ଅଳଙ୍କାର ତତି ।
ଆଉ ଯେତେ ଦେବ ଦେବୀମାନେ ତହିଁଥିଲେ
ହରଷରେ ବିବିଧ ରତ୍ନ ଅଳଙ୍କାର ଦେଲେ ।
ମୃତ ଜୀବିତ ଶିଶୁକୁ ଦେଖି ପିତାମାତା
ବ୍ରାହ୍ମଣଙ୍କୁ ଧନରତ୍ନ ଦେଲେ ଗୃହ ଶନ୍ତା ।
ସହସ୍ରେ ଘୋଟକ ଶତେ ଗଜ ଅଣାଇଲେ
ବନ୍ଦୀମାନଙ୍କୁ ଡକାଇ ଉପହାର ଦେଲେ ।
ହିମାଳୟ ସହିତରେ ଦେବ ଦେବୀଗଣ
ବ୍ରାହ୍ମଣଙ୍କୁ ଦେଲେ ତହିଁ ଅପ୍ରମିତ ଧନ ।
ନାନା ପରକାରେ ମିଷ୍ଟ ସ୍ୱାଦୁ ଦ୍ରବ୍ୟ ଆଣି
ଭୋଜନ ଦେଇଣ ତୋଷ କରାଇଲେ ପୁଣି ।
ବେଦ ପୁରାଣ ଚରିତ ପାଠ କରାଇଲେ
ସମସ୍ତେ ଶିଶୁର ଶୁଭବାଞ୍ଛା ମନେ କଲେ ।
ଲଜ୍ଜିତ ହୋଇଣ ଶନି ସେ ସଭା ମଧ୍ୟରେ
ଥିଲେ ତ ପାର୍ବତୀ ତାଙ୍କୁ ଅନାଇ କୋପରେ ।
ବୋଇଲେ ତୁ ଆଜଠାରୁ ହୁଅ ଅଙ୍ଗ ହୀନ
ମୋର ଅମଙ୍ଗଳ ଆସି କଲୁ ଅକାରଣ ।
ଏରୂପେ ଶନିଙ୍କୁ ଶାପ ଦିଅନ୍ତେ ସେ ଦେବୀ
କଶ୍ୟପ ଯମ ଆଦିତ୍ୟ ହେଲେ ମନେ ଭାବି ।
ଅତିଶୟ କ୍ରୋଧ ହୋଇ ସଭାରୁ ଉଠିଲେ
ସେହିକ୍ଷଣି ପଳାଇବା ପାଇଁ ଇଚ୍ଛା କଲେ ।
ସାକ୍ଷୀ କଲେ ସେ ସମସ୍ତେ ସେକାଳେ ଧର୍ମଙ୍କୁ
ଶାପ ଦେବାପାଇଁ ବିଷ୍ଣୁ ପାର୍ବତୀ ଦୁହିଙ୍କୁ ।
ରକ୍ତବର୍ଣ୍ଣ ହୋଇଲା ନେତ୍ର ତାହାଙ୍କର
ବାତେ ରମ୍ଭାପତ୍ର ପରି କମ୍ପିଲା ଅଧର ।
ସେ କଥା ଜାଣି ପାର୍ବତୀ ଦେବୀ ମହାମାୟା
ବିଷ୍ଣୁ ତେଜ ଘେନି କ୍ରୋଧେ କମ୍ପାଇଲେ କାୟା ।
ପ୍ରଚଣ୍ଡ ଭାବ ଆଶ୍ରୟ କଲା ତାଙ୍କୁ ଆସି
ସତେ କି ବା ଦେବେ ବିଶ୍ୱଭୁବନକୁ ଗ୍ରାସି ।

ଏରୂପେ ଭୀଷଣ ରୂପ ଦେଖି ଦେବଗଣ
ଭୟରେ ବ୍ରହ୍ମାଙ୍କ ପାଶେ ପଶିଲେ ଶରଣ ।
ପ୍ରବୋଧନା କରି ତାଙ୍କୁ ଲୋକ ପିତାମହ
ବୋଇଲେ ହେ ଦେବଗଣେ ଛାଡ଼ ମନୁ କୋହ ।
ତା ଶୁଣି କଶ୍ୟପ ମୁନି ବୋଇଲେ ହେ ଧାତା
ଉଚିତ ହେଲା କି କହ ପାର୍ବତୀଙ୍କ କଥା ।
ପତ୍ନୀଶାପେ ଶନୈଶ୍ଚର ବକ୍ରଦୃଷ୍ଟି ହୋଇ
ଅଛନ୍ତି ଏ କଥା କିଏ ଅବା ନ ଜାଣଇ ।
ପ୍ରଥମେ ମାତାଙ୍କଠାରୁ ଅବଜ୍ଞା ସେ ପାଇ
ପୁତ୍ରଙ୍କୁ ଦେଖିଲେ ତାଙ୍କୁ କିଛି ଦୋଷ ନାହିଁ ।
ତଥାପି ପାର୍ବତୀ ତାଙ୍କୁ କ୍ରୋଧେ ଶାପ ଦେଲେ
ଦୋଷାଦୋଷ ବିଷୟରେ ବିଚାର ନ କଲେ ।
ସୂର୍ଯ୍ୟ ବୋଇଲେ ଅନୁଜ୍ଞା ଘେନି ମାତାଙ୍କର
ଧର୍ମ ଦେବତାଙ୍କୁ ସାକ୍ଷୀ ରଖି ନିରନ୍ତର ।
ପୁତ୍ରଙ୍କୁ ଦେଖିଲେ ଯେବେ ତାଙ୍କର ଏଥିରେ
କେଉଁଦୋଷ ହେଲା ତାହା କହ ମୋ ଆଗରେ ।
ମୋ ପୁତ୍ରର କିଛି ହେଲେ ନାହିଁ ଅପରାଧ
ପାର୍ବତୀ ତାହାକୁ ଶାପ ଦେଲେ ବହି କ୍ରୋଧ ।
ସେ ଘେନି ତାହାଙ୍କ ପୁତ୍ର ଅଙ୍ଗ ଭଙ୍ଗ ହେବ
ଆମ୍ଭର ବଚନ କେବେ ବୃଥା ନ ହୋଇବ ।
ଯମ ବୋଇଲେ ପ୍ରଥମେ ଅନୁମତି ଦେଇ
ପଛେ ଶାପ ଦେବାର କି ଉଚିତ ଅଟଇ ।
ଏଣୁ ଆମ୍ଭେମାନେ ତାଙ୍କୁ ଶାପଦେବା ଯେବେ
ଅଧର୍ମ ଆମ୍ଭର କେବେ ନ ହୋଇବ ଲବେ ।
ଶାସ୍ତ୍ର ଲେଖିଅଛି ହିଂସା କରିବ ଯେ ଲୋକ
ତାକୁ ହିଂସା କରିବାର ଉତ୍ତମ ବିବେକ ।
ତାହା ଶୁଣି ପ୍ରଜାପତି ବୋଇଲେ ଯେ ତୁମ୍ଭେ
କହିଲ ଯଥାର୍ଥ ବୋଲି ଜାଣୁଅଛୁ ଆମ୍ଭେ ।
ମାତ୍ର ସ୍ତ୍ରୀର ସ୍ୱଭାବରୁ ପର୍ବତନନ୍ଦିନୀ
ଶାପ ଦେଲେ ପୁତ୍ରଶୋକେ ହୋଇ ଅଭିମାନୀ ।
ସେଥିପାଇଁ ତୁମ୍ଭେମାନେ କ୍ରୋଧ କରିବାର
ନୁହଇ ଜାଣ କଦାପି ଉଚିତ ବେଭାର ।
ସାଧୁଜନଙ୍କର କ୍ଷମା ଅଟଇ ଭୂଷଣ
କ୍ଷମା ବିନା ବୃଥା ଆଉ ଥିଲେ ଯେତେ ଗୁଣ ।
ଏମନ୍ତ କହି ତାହାଙ୍କୁ ପାର୍ବତୀଙ୍କ ଠାଇଁ
ବୋଇଲେ ଅନୁଜ୍ଞା ଆଗ ଦେଲ କାହିଁପାଇଁ ।

ପୁଣି କ୍ରୋଧ ବଶ୍ବ ଶାପ ଦେଲ କ ଯକାରଣେ
ଏକଥା ଉଚିତ ବୋଲି ମନକୁ ନ ଆସେ ।
ଏହିରୂପେ ସମସ୍ତଙ୍କୁ ପ୍ରବୋଧନା କରି
ଶନିଙ୍କ ହସ୍ତ ଧରଣ ପାର୍ବତୀ ବହାରି ।
ପାର୍ବତୀଙ୍କ ସମୀପରେ ସମର୍ପଣ କଲେ
ଶାପରୁ ମୁକତ ଦିଅ ବୋଲିଣ ବୋଇଲେ ।
ତା ଦେଖି କଶ୍ୟପ ପମ ଦିବସ ଈଶ୍ୱର
ଶାନ୍ତ ହୋଇଣ ବସିଲେ ସେ ସଭା ମଧ୍ୟର ।
ବ୍ରହ୍ମାଙ୍କ ବଚନେ ଦେବୀ ଲଭି ମହାତୋଷ
ଶନୈଶ୍ଚରଙ୍କୁ ବସାଇ ଆପଣାର ପାଶ ।
ବୋଇଲେ ହେ ଶନୈଶ୍ଚର ଆଜଠାରୁ ତୁମ୍ଭେ
ଗ୍ରହରାଜ ହୁଅ ବର ଦେଉଅଛୁ ଆମ୍ଭେ ।
ଆବର ଶ୍ରୀହରିଭକ୍ତ ଚିରଂଜୀବୀ ହୁଅ
ସମସ୍ତ ଲୋକରେ ଗ୍ରହରୂପେ ପୂଜା ପାଅ ।
ସେ ସକାଶୁ ମୋର ଶାପ ଅମୋଘ ଅଟଇ
କିଞ୍ଚିତ ହୋଇବ ଖଞ୍ଜି ଜାଣ କହୁଥାଇ ।
କରମ ଲିଖନ କେବେ ନୁହଇ ଖଣ୍ଡନ
ହରିହର ବ୍ରହ୍ମା ସର୍ବେ କରମ ଅଧୀନ ।
ଏମନ୍ତ କହିଣ ଦେବୀ ତୁମରକୁ ଘେନ
ବସିଲେ ସେ ଦେବସଭା ମଧ୍ୟେ ହୋଇ ତୁନ ।
ଭକ୍ତିଭାବରେ ଶନି ତାଙ୍କୁ ନମସ୍କାର କଲେ
ସନ୍ତୁଷ୍ଟ ହୋଇ ଦେବଙ୍କ ସମୀପକୁ ଗଲେ ।
ସେ ମହାମାୟାଙ୍କ ପାଦପଦ୍ମେ ନିରନ୍ତର
ମନଦେଇ କହେ ଗୀତେ ଯେବବାସୀସ୍ଥର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶନିଙ୍କ ଦର୍ଶନାରେ ଗଣେଶଙ୍କର
ମସ୍ତକ ଛେଦନ ଓ ବିଷ୍ଣୁଙ୍କ ଦ୍ୱାରା ଗଜ ମସ୍ତକ ସଂଯୋଗ କରିବା
ନାମ ଦ୍ୱାଦଶୋଽଧ୍ୟାୟଃ ।

—*—

## ତ୍ରୟୋଦଶ ଅଧ୍ୟାୟ

### ନାରାୟଣ ଦ୍ୱାରା ଗଣେଶଙ୍କର ସ୍ତବ ଓ କବଚାଦି ବର୍ଣ୍ଣନ

ଶୁଣ ହେ ନାରଦମୁନି ମନଦେଇ କରି
ଏଥୁଅନନ୍ତରେ ପ୍ରଭୁ ଶଙ୍ଖ ଚକ୍ରଧାରୀ ।
ଦେବତା ଋଷି ସହିତେ ଶୁଭ ମୁହୂର୍ତ୍ତରେ
ପୂଜାକଲେ ବାଳକଙ୍କୁ ନାନା ଉପହାରେ ।
ଆବର ବୋଇଲେ ମୁହିଁ ସମସ୍ତଙ୍କ ଆଗେ
ତୁମ୍ଭଙ୍କୁ ଯେ ପୂଜା କରୁଅଛୁ ଅନୁରାଗେ ।
ସେ ସକାଶୁ ଆହେ ବତ୍ସ ଅଗ୍ରପୂଜ୍ୟ ହୁଅ
ତ୍ରିଭୁବନରେ ଆଗ ପୂଜା ପାଉଥାଅ ।
ଏମନ୍ତ ବୋଲିଣ ଦିବ୍ୟ ବନମାଳା ନେଇ
ତାହାଙ୍କ କଣ୍ଠଦେଶରେ ଦେଲେ ସେ ଲମ୍ବାଇ ।
ମୁକ୍ତିପ୍ରଦ ବ୍ରହ୍ମଜ୍ଞାନ କର୍ଣ୍ଣରେ କହିଲେ
ଷୋଡ଼ଶ ଉପଚାରରେ ପୂଜାବିଧି କଲେ ।
ଦେବତା ଋଷିଙ୍କୁ ଘେନ ପୁଣି ତାହାଙ୍କର
ନାମକରଣ କର୍ମରେ ହୋଇଲେ ତତ୍ପର ।
ବିଘ୍ନେଶ ହେରମ୍ବ ଗଣପତି ଗଜାନନ
ବିନାୟକ ପୁଣି ଲମ୍ବୋଦର ସର୍ପକର୍ଣ୍ଣ ।
ଏକଦନ୍ତ ଏହିପରି ଆଠନାମ ଦେଲେ
ଶୁଭ ବର୍ଦ୍ଧିଣ ସମସ୍ତେ ଆଶୀର୍ବାଦ କଲେ ।
ସମସ୍ତ ମୁନି ଋଷିଙ୍କୁ ଉତ୍ତମ ଆସନ
ବସିବା ପାଇଁକି ଦେଲେ କମଳାରମଣ ।
ଧର୍ମ ସେ କାଳରେ ସିଦ୍ଧ ଆସନେକ ନେଇ
ସମର୍ପଣ କଲେ ଶିଶୁ ହସ୍ତେ ତୋଷ ବହି ।
କମଣ୍ଡଳୁ ଦେଲେ ନେଇ କମଳ ଆସନ
ଶିବ ଦେଲେ ସୁଦୁର୍ଲ୍ଲଭ ମୃତ୍ୟୁଞ୍ଜୟ ଜ୍ଞାନ ।
ରତ୍ନ ସିଂହାସନ ଦାନ କଲେ ପୁରନ୍ଦର
ସୁବର୍ଣ୍ଣ କୁଣ୍ଡଳ ଦେଲେ ଦିବସ ଈଶ୍ୱର ।
ମାଣିକ୍ୟ ନିର୍ମିତ ହାର ନିଶାକର ଦେଲେ
କୁବେର ଦିବ୍ୟ କିରୀଟ ସମର୍ପଣ କଲେ ।
ବହ୍ନି ଶୁଦ୍ଧ ବସ୍ତ୍ରନେଇ ଦେଲେ ହୁତାଶନ
ରତ୍ନଛତ୍ର ଦାନକଲେ ଜଳଧିରାଜନ ।
ରତନ ମୁଦ୍ରିକା ବାୟୁ ଦେଲେ ଯତନରେ
ସୁବର୍ଣ୍ଣ ହାର ଗୋଟିଏ ପୁଣି ତା ସଙ୍ଗରେ ।

କ୍ଷୀରୋଦମନ୍ଥନ ରତ୍ନ ରଚିତ ବଳୟ
ଆଉର କେୟୁର ମଞ୍ଜୁ ମଞ୍ଜୀର ଉଭୟ ।
ସ୍ନେହଭକ୍ତରେ ମହାଲକ୍ଷ୍ମୀ ଦେଲେ ସେକାଳରେ
ସାବିତ୍ରୀ କଣ୍ଠଭୂଷଣ ଦେଲେ ଆନନ୍ଦରେ ।
ସରସ୍ୱତୀ ଦେବୀ ନିଜ ଗଳାରୁ ଉତ୍ତାରି
ଉଜ୍ଜ୍ୱଳ ହାର ଗୋଟିଏ ଦେଲେ ନେହ କରି ।
ସମରେ ସକଳଦେବ ଦେବୀଗଣ ଆସି
ଯେ ଯାହାର ଉପହାର ଦେଲେ ଆହେ ଋଷି ।
ବାହନ ସକାଶେ ଦିବ୍ୟ ମୂଷିକ ଗୋଟିଏ
ପୃଥିବୀଦେବତା ଆଣିଦେଲେ ସେ ସମୟେ ।
ଗନ୍ଧର୍ବ କିନ୍ନର ଯକ୍ଷ ପର୍ବତ ନିକର
ପନ୍ନଗ ମନୁ ମାନବ ସିଦ୍ଧ ବିଦ୍ୟାଧର ।
ଅନେକ ପ୍ରକାର ସ୍ୱାଦୁଦ୍ରବ୍ୟ ଅଣାଇଲେ
ସମସ୍ତେ ମିଳିତ ହୋଇ ପୂଜାବିଧି କଲେ ।
ପାର୍ବତୀଦେବୀ ସେକାଳେ ମହା ଆନନ୍ଦରେ
ହସି ହସି କୁମରଙ୍କୁ ଘେନିଣ କୋଳରେ ।
ରତ୍ନ ସିଂହାସନପରେ ବସାଇଣ ନେଇ
ସ୍ନାନ କରାଇଲେ ତୀର୍ଥ ଉଦକ ଅଣାଇ ।
ମୁନି ଋଷିମାନେ ବେଦମନ୍ତ୍ର ପାଠ କରି
ଢାଳିଲେ ପୁତ୍ରର ଶିରେ ନାନା ତୀର୍ଥ ବାରି ।
ଅଗ୍ନିଶୁଦ୍ଧ ବସ୍ତ୍ରଦ୍ୱୟ ସମର୍ପଣ କଲେ
ଗୋଦାବରୀ ନଦୀଜଳେ ପାଦ ପୁଣି ଦେଲେ ।
ଗଙ୍ଗାଜଳେ ଅର୍ଘ୍ୟଦେଇ ଦୁର୍ବାକ୍ଷତ ଫୁଲ
ସୁବାସ ଚନ୍ଦନ ତୁଳେ ଦେଲେ ତତକାଳ ।
ଆଚମନ ଅର୍ଥେ ଦେଇ ପୁଷ୍କର ଉଦକ
ରତ୍ନପାତ୍ରେ ସମର୍ପଣ କଲେ ମଧୁପର୍କ ।
ସୁବୈଦ୍ୟ ନିର୍ମିତ ବିଷ୍ଣୁ ତୈଳ ଆଣିଦେଲେ
ପୁଣି ତୀର୍ଥ ଉଦକରେ ସ୍ନାନ କରାଇଲେ ।
ଅମୂଲ୍ୟ ରତ୍ନଖଚିତ ସ୍ୱର୍ଣ୍ଣ ଅଳଙ୍କାର
ଖଞ୍ଜିଲେ ଯଥାସ୍ଥାନରେ ଅଣାଇ ସତ୍ୱର ।
ପାରିଜାତ ପୁଷ୍ପମାଳା ଶତେଗୋଟି ନେଇ
ଦାସୀଙ୍କ ହସ୍ତରେ ଦେଲେ ଗଳାରେ ଲମ୍ବାଇ ।
ମାଳତୀ ଚମ୍ପକ ଆଦି ବିବିଧ କୁସୁମ
ତୁଳସୀ ବର୍ଜିତ ପୂଜା ଯୋଗ୍ୟ ପତ୍ରମାନ ।
ଅଗୁରୁ ଚନ୍ଦନ ତୁଳେ କୁଙ୍କୁମ କସ୍ତୁରୀ
ପାତ୍ରରେ ସଜାଇ ଧୂପ ଦୀପ ଆଦି କରି ।
ଗୋଟି ଗୋଟି କରି ସବୁ ସମର୍ପଣ କଲେ
ନୈବେଦ୍ୟ ପଦାର୍ଥ ନେଇ ଆଗରେ ଥୋଇଲେ ।
ଅଷ୍ଟୋତ୍ତର ଶତ ତିଳ ଲଡୁ ସନ୍ଦେଶରେ
ସଘୃତ ଗୋଧୂମ ଯବ ଚୂର୍ଣ୍ଣ ପିଷ୍ଟକରେ ।
ପୂର୍ଣ୍ଣକରି ପାତ୍ରମାନ ରଖିଲେ ଯତନେ
ଅନ୍ନ ବ୍ୟଞ୍ଜନ ରଖିଲେ ଭିନ୍ନ ଭିନ୍ନ ସ୍ଥାନେ ।
ସ୍ୱସ୍ତିକ ଖଣ୍ଡ ଶାକର ଶରବ ସହିତ
ଗୁଡ଼ମିଶ୍ର ଲଡ଼ା ତହିଁ ଥୋଇଲେ ଭରିତ ।
ପୃଥୁକ ଶାକଓଦନ ଘୃତକୁ ମିଶାଇ
ବିଶାଳ ପାତ୍ରରେ ପୂର୍ଣ୍ଣ କରିଦେଲେ ଥୋଇ ।
ଉତ୍ତମ ସୁସ୍ୱାଦୁ ଦୁଗ୍ଧ ଦଧି ଅଣାଇଲେ
କଳସରେ ଭରି ତାହା ପାଶରେ ରଖିଲେ ।
ଆଉର ଯେ ଘୃତ ମଧୁ କେତେ କଳଶରେ
ଭିନ୍ନ କରି ଆଣି ରଖାଇଲେ ସେହିଠାରେ ।
କଦଳୀ ପଣସ ଆମ୍ର ଡାଳିମ୍ବ ଶ୍ରୀଫଳ
ଖର୍ଜୁର କରଞ୍ଜ ପକ୍ୱ ଜମ୍ବୁ ନାରିକେଳ ।
କର୍କଟୀ ଆଦି ଅନେକ ସ୍ୱାଦୁ ଫଳମାନ
ରଖାଇଲେ ଆଣି ତହିଁ କରିଣ ଯତନ ।
ଆଉର ଯେ ଦେଶକାଳ ଜାତ ଫଳମୂଳ
ସକଳ ଆଣି ସେଠାରେ କରାଇଲେ ଠୁଳ ।
ଆପଣା ହସ୍ତରେ ମହାମାୟା ତାହା ସବୁ
ଦେଲେ ଆନନ୍ଦରେ ଭୁଞ୍ଜବୋଲି ଆଗେ ବାବୁ ।
କର୍ପୂର ମିଶ୍ରିତ ସ୍ୱଚ୍ଛ ସୁନିର୍ମଳ ଜଳ
ପାନ ଆଚମନ ପାଇଁ ଦେଲେ ତତକାଳ ।
ଶେଷ ଅନ୍ତେ ବିବିଧ ଦ୍ରବ୍ୟ ସୁବାସ ତାମ୍ବୁଳ
ସମର୍ପଣ କଲେ ଦେବୀ ସ୍ନେହେ ହୋଇ ଭୋଳ ।
ବନ୍ଧୁ ମିତ୍ର ପୁତ୍ର ଭାଇ ଭାରିଯା ସହିତେ
ପୂଜା କଲେ ହିମାଳୟ ତହୁଁ ବିଧିମତେ ।
ଓଁକାର ପରେ ଲକ୍ଷ୍ମୀଙ୍କ ବୀଜକୁ ବସାଇ
ତାହା ପରେ ଦୁଇଗୋଟି ମାୟା ବୀଜ ଦେଇ ।
ଗଣେଶ୍ୱର ବ୍ରହ୍ମରୂପ ଏ ଦୁଇ ଶବ୍ଦରେ
ଚତୁର୍ଥୀ ବିଭକ୍ତି ଯୋଗକରି ସେ ଅନ୍ତରେ ।
ସର୍ବସିଦ୍ଧି ପ୍ରଦାୟକ ବିଘ୍ନବିନାଶନ
ନମସ୍ତେ ପାର୍ବତୀ ସୁତ ନମୋ ଗଜାନନ ।
ଏହିରୂପେ ମନ୍ତ୍ରପଢ଼ି ସମସ୍ତ ପଦାର୍ଥ
ପୂଜାକରି ହରଷରେ ହେଲେ କୃତକୃତ୍ୟ ।

ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆନନ୍ଦିତ ହେଲେ
ଦେବତାମାନେ ସନ୍ତୋଷେ ଜୟଧ୍ୱନି କଲେ ।
ସର୍ବକାମ ଫଳପ୍ରଦ ଏହି ମାଳା ମନ୍ତ୍ର
ଜପକଲେ ସର୍ବସିଦ୍ଧି ହୁଅଇ ସ୍ୱତନ୍ତ୍ର ।
ପଞ୍ଚଲକ୍ଷ ଜପ କଲେ ମନ୍ତ୍ର ସିଦ୍ଧି ହୁଏ
ସିଦ୍ଧ କଲା ଲୋକ ବିଷ୍ଣୁ ସଦୃଶ ବୋଲାଏ ।
ତାର ନାମ ସ୍ମରଣ କଲେ ବିଘ୍ନମାନ
ଦୂରକୁ କରନ୍ତି ମହାଭୟେ ପଳାୟନ ।
ଲୋକ ସମାଜରେ ମହାବକ୍ତା ସେ ହୁଅଇ
ସବୁଠାରୁ ବଳ ପୂଜା ସମ୍ମାନ ଲଭଇ ।
ତା ଆଗରେ ବୃହସ୍ପତି ଜଡ଼ ପ୍ରାୟ ହୋଇ
ବାଦ ସମୟରେ କିଛି ନ ପାରନ୍ତି କହି ।
ମହା କବିଗଣରେ ସେ ବିଖ୍ୟାତ ଅଧିକ
ହୁଅଇ ପୂଜା କରନ୍ତି ତାକୁ ସବୁ ଲୋକ ।
ସେକାଳେ ଦେବତାମାନେ ପୂଜାବିଧି ସାରି
ବାଦ୍ୟ ବଜାଇଲେ ବାଦ୍ୟକାରଙ୍କୁ ହକାରି ।
କେତେ ନୃତ୍ୟ ଗୀତକାର ଡକାଇ ଆଣିଲେ
ବିବିଧ ଉତ୍ସବ ଅନୁଷ୍ଠାନ କରାଇଲେ ।
ବ୍ରାହ୍ମଣଙ୍କ ମନ ତୋଷି ଦେଲେ ବହୁ ଦାନ
ପୁଣି କରାଇଲେ ମିଷ୍ଟ ପଦାର୍ଥ ଭୋଜନ ।
ଏଥୁ ଅନନ୍ତରେ ବିଷ୍ଣୁ ସେ ସଭା ମଧ୍ୟରେ
ଗଣେଶଙ୍କୁ ପୂଜାକରି ନାନା ଉପଚାରେ ।
ଶ୍ରୀକୃଷ୍ଣଙ୍କ ଅଂଶେ ଯେଣୁ ଅଟନ୍ତି ସେ ଜାତ
ସ୍ତୁତିକଲେ ନିଜେ ବିଷ୍ଣୁ ଯୋଡ଼ି ବେନିହସ୍ତ ।
ବୋଇଲେ ଆହେ ଈଶ୍ୱର ବ୍ରହ୍ମ ସନାତନ
ତୁମ୍ଭଙ୍କୁ ସ୍ତୁତି କରିବାପାଇଁ ମୋର ମନ ।
ହେଉଅଛି ତଥାପି ମୁଁ ତୁମ୍ଭ ସ୍ୱରୂପକୁ
ସମରଥ ନୁହେଁ ସ୍ଥିରକରି କହିବାକୁ ।
ସକଳ ଦେବ ପ୍ରବର ସିଦ୍ଧ ଯୋଗୀଗୁରୁ
ସର୍ବରୂପେ ସର୍ବଈଶ ଜ୍ଞାନ ମହାମେରୁ ।
ଅବ୍ୟକ୍ତ ଅକ୍ଷର ନିତ୍ୟ ଆତ୍ମା ରୂପଧର
ବାୟୁତୁଲ୍ୟ ଗତିଶୀଳ ନିର୍ଲିପ୍ତ ଅକ୍ଷର ।
ସଂସାର ସାଗର ମଧ୍ୟେ ମାୟା ପୋତପରେ
ରହିଅଛ ଦେବ କର୍ଣ୍ଣଧାର ସ୍ୱରୂପରେ ।
ବରଦ ବରେଣ୍ୟ ପ୍ରଭୁ ଭକତବତ୍ସଳ
ସର୍ବସିଦ୍ଧ ରୂପ ସିଦ୍ଧିପ୍ରଦ ଆଦିମୂଳ ।

ଧାର୍ମିକ ଧର୍ମ ସ୍ୱରୂପ ଧର୍ମଜ୍ଞ ପ୍ରବର
ଧର୍ମ ଅର୍ଥ ଫଳଦାତା ଜ୍ଞାନ ଅଗୋଚର ।
ସଂସାର ପାଦପ ବୀଜ ଅଙ୍କୁର ଆଶ୍ରୟ
ପୁଂ ରୂପ ସ୍ତ୍ରୀ ନପୁଂସକ ରୂପ ଅତୀନ୍ଦ୍ରିୟ ।
ସର୍ବାଦ୍ୟ ଅଗ୍ରପୂଜିତ ଗୁଣ ରତ୍ନାକର
ପ୍ରକୃତି ରୂପ ପ୍ରାକୃତ ବ୍ରହ୍ମା ନିରାକାର ।
ଧ୍ୟାନରେ ତୁମ୍ଭଙ୍କୁ ଦେଖି ନ ପାରନ୍ତି କେହି
ତଥାପି ଭକ୍ତଙ୍କ ଦୃଷ୍ଟି ପଥେ ଥାଅ ରହି ।
ତୁମ୍ଭ ସ୍ତୁତି କରଣରେ ସହସ୍ର ବଦନ
ସମର୍ଥ ନୁହଇ ଆନ ହେବ କେ ସୁଜନ ।
ବ୍ରହ୍ମା ଶିବ ଦୁହେଁ ମଧ୍ୟ ଅକ୍ଷମ ଅଟନ୍ତି
ଆବର ଚତୁର ବେଦ ପୁଣି ସରସ୍ୱତୀ ।
ସମର୍ଥ ନୋହିବେ ବୋଲି ମନକୁ ଆସଇ
ଏକ ମୁଖେ କିବା ସ୍ତୁତି କରିପାରେ ମୁହିଁ ।
ଏତେ ବୋଲି ସୁର ସଭା ମଧ୍ୟେ ରମାସାଇଁ
ବସିଲେ ମଉନେ ଆଉ ବଚନ ନ କହି ।
ବିଷ୍ଣୁ କୃତ ଗଣପତି ସ୍ତୋତ୍ର ଯେ ପଢ଼ିବ
ସକଳ କାମନା ତାର ସଫଳ ହୋଇବ ।
ପ୍ରାତଃକାଳ ମଧ୍ୟାହ୍ନରେ ପୁଣି ସାୟଂକାଳେ
ପଢ଼ିଲେ ସକଳ ବିଘ୍ନ ନାଶଯାଏ ହେଳେ ।
ଗଣେଶଙ୍କ ପ୍ରସାଦରେ ଅଶେଷ କଲ୍ୟାଣ
ଆବର ସମ୍ପଦ ବୃଦ୍ଧି ହୁଅଇଟି ଜାଣ ।
ଯାତ୍ରାକାଳେ ଯେଉଁଲୋକ ଭକ୍ତିରେ ଏ ସ୍ତୋତ୍ର
ପଢ଼ିବ ତାର ମଙ୍ଗଳ ହୋଇବ ସର୍ବତ୍ର ।
ଦୁଷ୍ଟସ୍ୱପ୍ନ ଦେଖିଥିଲେ ଶୁଭଫଳ ହେବ
କଦାପି ବିପଦ ଶଙ୍କା ତହିଁରୁ ନ ହେବ ।
ଦାରୁଣ କଷ୍ଟକାରକ ଗ୍ରହପୀଡ଼ା ଯେତେ
ସମୂଳେ ବିନସ୍ୟ ହୋଇଯିବ ସେ କ୍ଷଣତେ ।
ଶତ୍ରୁ ନାଶ ପୁଣି ମିତ୍ର ବନ୍ଧୁ ବୃଦ୍ଧି ହେବ
ନିର୍ବିକାରେ ସୁଖ ସଉଭାଗ୍ୟ ସେ ପାଇବ ।
ସବୁବେଳେ ଗୃହେ ଥାଇ ଦେବୀ କମଳାମା
ଧନ ଜନ ଗୋପଲକ୍ଷ୍ମୀ ଦେଉଥିବେ ଜାଣି ।
ଏରୂପେ ସକଳ ସୁଖ ଭାଗ୍ୟ ଭୋଗ କରି
ଦେହଅନ୍ତେ ଯିବ ସୁଖେ ବଇକୁଣ୍ଠ ପୁରୀ ।
ତୀର୍ଥ ଯାଗ ଉପବାସ ବ୍ରତର ଯେ ଫଳ
ପ୍ରସନ୍ନ ହୋଇ ଗଣେଶ ଦେବେ ସେ ସକଳ ।

ନାରଦ ବୋଇଲେ ଆହେ ଦେବ ନାରାୟଣ
ଗଣେଶଙ୍କ ସ୍ତୋତ୍ରପୂଜା କଲଇଁ ଶ୍ରବଣ ।
କବଚ ଶୁଣିବାପାଇଁ ବଳୁଅଛି ଚିତ୍ତ
ଆପଣ କରନ୍ତୁ ତାହା ମୋ ଆଗେ ବ୍ୟକତ ।
ତାହାଶୁଣି ନାରାୟଣ ତୋଷମନ୍ତ ହୋଇ
ବୋଇଲେ କବଚ ଏବେ ଶୁଣ କହୁଥାଇ ।
ସମାପ୍ତ ହୁଅନ୍ତେ ପୂଜା ସେ ଦେବ ସଭାରେ
ଉଭାହେଲେ ଶନୈଶ୍ଚର ବିଷ୍ଣୁଙ୍କ ଆଗରେ ।
ଭକ୍ତିଭରେ ମସ୍ତକରେ ବେନି କର ଦେଇ
ବୋଇଲେ ଶୁଣିବା ହେଉ ଜଗତ ଗୋସାଇଁ ।
ବିଘ୍ନରାଜାଙ୍କ କବଚ କହ ମହାପ୍ରଭୁ
ଯାହାବଳେ ଆମ୍ଭେ ପାପୁଁ ମୁକତ ପାଇବୁଁ ।
ମୋହର ମନ ସର୍ବଦା ଉଦ୍‌ବିଗ୍ନ ହେଉଛି
ତେଣୁ କବଚ ଧାରଣ କରିବି ବୋଲୁଛି ।
ତାହାଶୁଣି ଦାମୋଦର ବୋଇଲେ ହେ ଗ୍ରହ
ଶୁଣ କବଚରେ ଯେବେ ବଳୁଅଛି ସ୍ନେହ ।
ଅତ୍ୟନ୍ତ ଗୋପନ ସେହି ତ୍ରୈଲୋକ୍ୟ ଦୁର୍ଲ୍ଲଭ
ପୁରାଣ ଶାସ୍ତ୍ର ମଧ୍ୟରେ ନାହିଁ ତାର ଲାଭ ।
ସାମବେଦ କଉଥୁମ ଶାଖାରେ କେବଳ
ଭକ୍ତ ହୋଇଅଛି ବୋଲି ମାନସରେ ଭାଳ ।
ବିଘ୍ନରାଜାଙ୍କ କବଚ ସର୍ବ ବିଘ୍ନହର
ଏହାପର ଅନ୍ୟ କିଛି ନାହିଁ ଶୁଭକର ।
ରାଜ୍ୟ ଧନ ପ୍ରାଣଆଦି ଯେତେ ଦ୍ରବ୍ୟମାନ
ସମସ୍ତରେ ପଛେ ତାହା କରିବ ପ୍ରଦାନ ।
ଏ ମହାକବଚ କେବେ ନ ଦେବ କାହାକୁ
ଯତ୍ନେ ସେବା କରିଥିବ ଦେଇଣ ମନକୁ ।
ନିଜ ଇଚ୍ଛାରେ ପ୍ରକାଶ ହୋଇପାରେ ଏହି
ଆବର ନିଜ ମାୟାରେ ଯାଏ ଲୀନ ହୋଇ ।
ନିତ୍ୟ ଅଟନ୍ତି ଗଣେଶ ବିଘ୍ନନାଶକାରୀ
ତାହାଙ୍କ କବଚ ନିତ୍ୟ ଅଟଇ ସେପରି ।
ପୂଜା ସ୍ତୋତ୍ର ଧ୍ୟାନ ମନ୍ତ୍ର ନାମ ସଂକୀର୍ତ୍ତନ
ସମସ୍ତ ନିତ୍ୟ ଅଟଇ ବୋଲି ମନେ ଘେନ ।
ଯେରୂପେ ହୁଅଇ ମୁହିଁ ନାନା ଅବତାର
ସେହି ପ୍ରକାରେ ଅଟନ୍ତି ଦେବ ଗଣେଶ୍ୱର ।
ଯାହାଙ୍କ କବଚ ଘେନି ମୁନିଋଷିଗଣ
ଜୀବତ ମୁକତ ହୋଇଅଛନ୍ତିଟି ଜାଣ ।

ଶମ୍ଭୁଙ୍କ ବିନାଶ କରି ସକଳ ଦେବତା
ରହିଅଛନ୍ତି ସ୍ୱର୍ଗରେ ସ୍ଥିରହେଲା ଚିନ୍ତା ।
ଯାହାଠାରେ ଏହି ଦିବ୍ୟ କବଚ ରହଇ
ତାହାକୁ ଭ୍ରମରେ ମୃତ୍ୟୁ ପାଇ ନ ପାରଇ ।
ଅଶୁଭ କଦାପି ତାର ନୁହେ କେଉଁଠାରେ
ଜିଣି କେ ନ ପାରେ ତାକୁ ବ୍ରହ୍ମାଣ୍ଡ ମଧ୍ୟରେ ।
ଆବର ଆୟୁଷ ବୃଦ୍ଧି ହୁଏ ନିରନ୍ତର
ମର୍ତ୍ତ୍ୟଲୋକେ ଥାଇ ସେହି ହୋଇବ ଅମର ।
ଦଶଲକ୍ଷ ଜପ କଲେ ସିଦ୍ଧ ସେ ହୁଅଇ
ସକଳ ଦୁଷ୍ଟଙ୍କୁ ହେଳେ ଦହନ କରଇ ।
ଦଇବେ ଯଦ୍ୟପି ସିଦ୍ଧହୋଇ ନ ପାରିବ
ତଥାପି ସେ ଚିର ଜୀବ ପ୍ରଦାନ କରିବ ।
ବିଜୟ ଲାଭ କରାଇ ଦେବ ସବୁଠାରେ
କୁଳଲତା ଦେବଲୋକସମାଜ ମଧ୍ୟରେ ।
ବିଧିପ୍ରକାରେ ଧାରଣ କଲେ ଭକ୍ତକରି
ସର୍ବସ କାମନା ପୂର୍ଣ୍ଣ ହୁଏ ଦେହଧରି ।
ମାଳା ମନ୍ତ୍ର ଅବା ଦ୍ରବ୍ୟ କବଚ ଯୋଗରେ
ଅଶେଷ ପାତକ ନାଶ ହୁଏ ନିଶ୍ଚୟରେ ।
ଭୂତ ପ୍ରେତ ନିଶାଚର ପିଶାଚ ବେତାଳ
କୁଷ୍ମାଣ୍ଡ ବ୍ରହ୍ମରାକ୍ଷସ ଯକ୍ଷ କ୍ଷେତ୍ରପାଳ ।
ଡାକିନୀ ଯୋଗିନୀ ଭୁଲେ ବାଳଗ୍ରହଗଣ
ଭୟରେ ଦୂରନ୍ତୁ ଛାଡ଼ି ପଳାଅନ୍ତି ଜାଣ ।
ଆଧିବ୍ୟାଧି ଶୋକ ମୋହ ନ ଦେଇଣ ପୀଡ଼ା
ପଳାନ୍ତି ପାଶରୁ ମନେ ପାଇ ମହାବ୍ରୀଡ଼ା ।
ଅବଶ୍ୟତ ଦୁଷ୍ଟଲୋକେ ଏହାକୁ ନ ଦେବ
କେବଳ ଉତ୍ତମ ଶିଷ୍ୟ ଦେଖି ସମର୍ପିବ ।
ଖଳପର ଶିଷ୍ୟକୁ ଯେ ଦେବ ସ୍ନେହ କରି
ନିଶ୍ଚୟରେ ଅମଙ୍ଗଳ ହୋଇବ ତାହାରି ।
ଏହି କବଚ ଅଟଇ ସଂସାର ମୋହନ
ଋଷି ଅଟନ୍ତି ଏଥିରେ ପ୍ରଜାପତି ଜାଣ ।
ବୃହତି ଛନ୍ଦ ଦେବତା ପ୍ରଭୁ ଲମ୍ବୋଦର
ଧର୍ମାର୍ଥକାମମୋକ୍ଷରେ ବିନିଯୋଗ ତାର ।
ସକଳ କବଚ ମଧ୍ୟେ ସାର ବୋଲିକରି
ବହିଅଛନ୍ତି ଶ୍ଳୋକ ଦେବ ନରହରି ।
ଓଁ କାର ପରେ ଔକାର ଅନୁସ୍ୱାର ଦେଇ
ଚ ଅକ୍ଷର ବସାଇବ ପତନରେ ନେଇ ।

ତାହାପରେ ଗ ଅକ୍ଷର ପୁଣି ଅନୁସ୍ୱାର
ଦେଇକରି ବସାଇବ ପାଶରେ ତାହାର ।
ଚତୁର୍ଥୀ ବିଭକ୍ତି ଦେଇ ଗଣେଶ ଶବ୍ଦରେ
ସ୍ୱାହାଦେବୀ ଅକ୍ଷରକୁ ବସାଇ ଶେଷରେ ।
ମସ୍ତକ ମୋହର ରକ୍ଷା କରନ୍ତୁ ବୋଲିବ
ଭକ୍ତିଭରେ ତାଙ୍କଠାରେ ମନ ନିବେଶିବ ।
ଦ୍ୱାବିଂଶ ଅକ୍ଷର ମନ୍ତ୍ର ଲଲାଟ ଦେଶକୁ
ପାଳନ କରୁ ସର୍ବଦା ପ୍ରକାଶି ଦୟାକୁ ।
ଓଁକାର ଅନ୍ତରେ ପୁଣି ମାୟା କାମ ଦୁଇ
ବୀଜପରେ ମହାଲକ୍ଷ୍ମୀ ବୀଜକୁ ବସାଇ ।
ବୋଲିବ ମୋର ନେତ୍ରକୁ ରକ୍ଷା ସେ କରନ୍ତୁ
ତାଳୁକା ରଖନ୍ତୁ ଦେବ ବିଘ୍ନନାଶ ହେତୁ ।
ନାସିକା ରକ୍ଷା କରନ୍ତୁ ପ୍ରଭୁ ଗଜାନନ
ଅଧର ଦେଶକୁ ଯାର ନାମ ଶୂର୍ପକର୍ଣ୍ଣ ।
ଷୋଡ଼ଶ ଅକ୍ଷର ମନ୍ତ୍ର ଦନ୍ତ ଜିହ୍ୱା ବେନି
ରକ୍ଷା କରନ୍ତୁ ମୋହର ବିନାୟକ ଯେନି ।
ରଖନ୍ତୁ ଶ୍ରୀ ଲମ୍ବୋଦର ମୋର ଗଣ୍ଡଦେଶ
କର୍ଣ୍ଣ ଯୁଗଳକୁ ରକ୍ଷା କରନ୍ତୁ ବିଘ୍ନେଶ ।
ସ୍କନ୍ଧକୁ ରକ୍ଷା କରନ୍ତୁ ଶ୍ରୀଗଜଆନନ
ବିନାୟକ ରଖନ୍ତୁ ପୃଷ୍ଠଦେଶକୁ ଚହନ ।
କଙ୍କାଳ ବକ୍ଷସ୍ଥଳକୁ ପାର୍ବତୀତନୟ
ରକ୍ଷା କରିଥାନ୍ତୁ ସଦା ହୋଇଣ ସଦୟ ।
ହସ୍ତପାଦାଦି ଅଙ୍ଗକୁ ବିଘ୍ନ ବିନାଶକ
ପାଳନା କରନ୍ତୁ ପୁଣି ଶ୍ରୀ ଗଣନାୟକ ।
ପୂର୍ବଦିଗେ ଲମ୍ବୋଦର ଆଗ୍ନେୟ ଗଣେଶ
ଦକ୍ଷିଣେ ବିଘ୍ନନାଶକ ନୈଋତେ ଗଜାସ୍ୟ ।
ପଶ୍ଚିମେ ପାର୍ବତୀ ପୁତ୍ର ବାୟବ୍ୟ କୋଣରେ
ଶଙ୍କରଆତ୍ମଜ ରକ୍ଷା କରନ୍ତୁ ସତ୍ୱରେ ।
ଉତ୍ତର ଦିଗରେ କୃଷ୍ଣଅଂଶ ସମ୍ଭୂତ
ଐଶାନ୍ୟକୋଣରେ ଏକଦନ୍ତ ଯେ ହେରମ୍ବ ।
ଊର୍ଦ୍ଧ୍ୱ ଭାଗକୁ ରଖନ୍ତୁ ଗଣଅଧିପତି
ଅଧଃ ପ୍ରଦେଶକୁ ସଦା ଶିବଙ୍କ ସନ୍ତତି ।
ସ୍ୱପ୍ନଜାଗରଣ କାଳେ ଯୋଗୀ ଜ୍ଞାନଗୁରୁ
ଉଦ୍ଧାର କରନ୍ତୁ ନାନା ବିପଦ ମଧ୍ୟରୁ ।
ଏହିରୂପେ ଗଣେଶଙ୍କ କବଚ ସ୍ୱରୂପ
କହିଲି ଅଟଇ ଯାହା ଜଗତରେ ଗୋପ୍ୟ ।
ସଂସାର ମୋହନ ନାମ ଅଟଇ ଏହାର
ଅତ୍ୟନ୍ତ ଅଦ୍ଭୁତ ଏହା ସର୍ବଶାସ୍ତ୍ରସାର ।
ପୂର୍ବକାଳେ ଗୋଲୋକରେ ରାସକ୍ରୀଡ଼ା ସ୍ଥାନେ
କହିଲେ ଶ୍ରୀକୃଷ୍ଣ ମୋତେ ଅତି ତୋଷମନେ ।
ଏବେ ତୁମ୍ଭେ ପଚାରିଲ ବୋଲି ତାହା ମୁହିଁ
ଶ୍ରଦ୍ଧାରେ ତୁମ୍ଭର ଆଗେ ଦେଲି ମାତ୍ର କହି ।
ସାମାନ୍ୟ ଲୋକଙ୍କୁ ନ କହିବ କେବେ ତୁମ୍ଭେ
ଆଜଠାରୁ ସାବଧାନ କରୁଅଛୁ ଆମ୍ଭେ ।
ଏହି କବଚ ଅଟଇ ସର୍ବଲୋକ ପୂଜ୍ୟ
ମନଦେଇ ଶୁଣ ଆହେ ସୂର୍ଯ୍ୟଙ୍କ ଆତ୍ମଜ ।
ଯେଉଁ ଲୋକ ବିଧିମତେ ଗୁରୁସେବା କରି
ଧାରଣ କରିବ ଏହା ଭକ୍ତିଭାବ ଧରି ।
କଣ୍ଠରେ ବା ଦକ୍ଷବାହୁ ମୂଳରେ ବାନ୍ଧିବ
ବିଷ୍ଣୁଙ୍କ ସମାନ ସେହି ନିଶ୍ଚୟ ହୋଇବ ।
ଦଶଶତ ଅଶ୍ୱମେଧ ଶତେ ବାଜପେୟ
ଏହାର କଳା ସମାନ ନୋହିବେ ଉଦୟ ।
ଏ କବଚ ତତ୍ତ୍ୱଜ୍ଞାନ ଯାହାର ନ ଥିବ
ଗଣେଶଙ୍କ ପୂଜାବିଧି ଯେବେ ସେ କରିବ ।
ଦଶଲକ୍ଷ ଜପ କଲେ ହେଲେ କିଛି କାର୍ଯ୍ୟ
ନ ହୋଇବ ବୋଲିକରି ମାନସରେ ବୁଝ ।
ଏରୂପେ ଶନୈଶ୍ଚରଙ୍କୁ କହି ଜନାର୍ଦ୍ଦନ
ବସିଲେ ସଭା ମଧ୍ୟରେ ହୋଇଣ ମଉନ ।
ଶୁଣି ଦେବଗଣ ଅତି ଆନନ୍ଦିତ ହେଲେ
ଶ୍ରୀକୃଷ୍ଣ ସୁମର ଗୀତେ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ନାରାୟଣଙ୍କ ଦ୍ୱାରା ଗଣେଶଙ୍କର ସ୍ତବ ଓ କବଚାଦି ବର୍ଣ୍ଣନେ ନାମ ତ୍ରୟୋଦଶୋଽଧ୍ୟାୟ

# ଚତୁର୍ଦ୍ଦଶ ଅଧ୍ୟାୟ

## କାର୍ତ୍ତିକେୟଙ୍କର ଜନ୍ମ ସମାଚାର

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇଁ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ଶୁଣଇ
ଅନ୍ତକାଳେ ଯାଇ ବିଷ୍ଣୁଲୋକେ ବିଶ୍ରମଇ ।
ନାରାୟଣ ବୋଇଲେକ ଶୁଣ ହେ ନାରଦ
ଏହାପରେ ଯାହାହେଲା ଶୁଣ ତାର ଭେଦ ।
ଗଣେଶ ଜନ୍ମ ଅନ୍ତରେ ପର୍ବତ କୁମାରୀ
ମନେମନେ ଅତିଶୟ ଦୁଃଖି ହୋଇଭାରୀ ।
ଶିବଙ୍କ ନିକଟେ ଯାଇ ପୁଚ୍ଛିଲେ ବଚନ
ଶୁଣ ଦେବ ଏକଇ କଥା ସଦାପଡ଼େ ମନ ।
ଯେତେମତେ ଅନ୍ତରକୁ ବୁଝାଉଛି ମୁହିଁ
କୌଣସିଥିରେ ଯେ ତିଳେ ମନ ନ ମାନଇ ।
ପାର୍ବତୀ ବଚନ ଶୁଣି ବୋଇଲେ ଶଙ୍କର
କୁହ କାହିଁପାଇଁ ଦୁଃଖ ମନରେ ତୁମ୍ଭର ।
ଶିବାଣୀ ବୋଇଲେ ତୁମ୍ଭେ ଜାଣିଛ ସମସ୍ତ
ତଥାପି ମୋହ ଅଗ୍ରତେ କରୁଅଛ ଗୁପ୍ତ ।
ଯେଉଁ ଦିନ ଏକାନ୍ତରେ ଭ୍ରମଣ କାଳରେ
ଦେବତାମାନେ କୌଶଳ କରି ଗୁପତରେ ।
ସରସ୍ୱତୀଙ୍କୁ ପଠାଇ ମୋର ମନ ହରି
ବ୍ରହ୍ମବିନ୍ଦୁ ନେଇଗଲେ ସେ ଗୁପତକରି ।
ସେହି ଦିନୁଁ ଆହେ ନାଥ କଦାପି ମୋ ମନ
ସନ୍ତୋଷ ନୋହୁଛି ଏହା ମନମଧ୍ୟେ ଘେନ ।
କୁହ ସେ ବୀର୍ଯ୍ୟରେ ପୁତ୍ର ଜନମିଛି କାହିଁ
କି ଅବା ଗୁପତେ ବିନ୍ଦୁ କେହି ରଖିଛଇ ।
ଶଙ୍କର ବୋଇଲେ ଦେବୀ ଭାବନା ନ କର
ତୁମ୍ଭର ପୁତ୍ର ଆସିବ କୋଳକୁ ତୁମ୍ଭର ।
ତାହା ଦ୍ୱାରା ବହୁ କାର୍ଯ୍ୟ ସାଧିତ ହୋଇବ
ତୁମ୍ଭର ନନ୍ଦନ ବୋଲି ଜଗତେ ରହିବ ।
ବର୍ତ୍ତମାନ ସେ କୁମର କୃତ୍ତିକା ଗୃହରେ
ଶୁକ୍ଳପକ୍ଷ ଚନ୍ଦ୍ରପରି ବଢ଼େ ଯତନରେ ।
ଯେବେ ଦେଖିବାକୁ ଇଚ୍ଛା ହେଉଛି ତୁମ୍ଭର
ତୂର୍ଣ୍ଣ ବିଳମ୍ବ ନ କର ମୋହ ସଙ୍ଗରେ ।

ଶଙ୍କରୀ ବୋଇଲେ କୁହ ୨ ପ୍ରାଣନାଥ
କପରି ଭାବେ କୁମର କାହିଁ ହେଲା ଜାତ ।
ତାହା ଶୁଣିବା ପାଇଁକି ବଳଅଛି ମନ
କହି ବାରେ ମୋର ତୋଷକର ହୃଦମନ ।
ଶଙ୍କର ବୋଇଲେ ଯେତେବେଳେ ବୀର୍ଯ୍ୟଭାର
ସହିବାପାଇଁ ଅକ୍ଷମା ହେଲ ସେ ଠାବର ।
ସେହିକାଳରେ ଉପାୟ ନ ଦେଖିଣ ମୁହିଁ
ହସ୍ତରେ ଧାରଣ କଲି ସେ ରେତକୁ ତହିଁ ।
ଯେବେଳେ ଦେବତାମାନେ ପବନ ସହିତେ
ପ୍ରବେଶ ହୋଇଲେ ତହିଁ ଆସି ଧାଥେଧାଥେ ।
ବ୍ୟାକୁଳ ଅନ୍ତରେ ମୋତେ ବୋଇଲେ ଅମରେ
ଅର୍ପଣ କରନ୍ତୁ ବିନ୍ଦୁ ପବନ ହସ୍ତରେ ।
ତାହାଙ୍କ ବଚନେ ଆମ୍ଭେ ନେଇ ସେ ବିନ୍ଦୁକୁ
ହରଷରେ ଟେକିଦେଲି ପବନ ହସ୍ତକୁ ।
ସମୀର ସେହି ବିନ୍ଦୁକୁ ଘେନି ଯତନରେ
ଭ୍ରମଣ କରିଲା ସାରା ପୃଥ୍ୱୀ କ୍ଷଣକରେ ।
କୌଣସି ଠାବରେ ବିନ୍ଦୁ ରଖି ନ ପାରିଲା
ଶେଷେ ଘାଟର କୂଳରେ ପାଇଣ ଦେଖିଲା ।
ଯୌବନ ମୁଖ ସୁନ୍ଦରୀ ଛଅଗୋଟି ବାଳା
ଆନନ୍ଦରେ ଜଳମଧ୍ୟେ କରୁଥାନ୍ତି ଖେଳା ।
ଅଙ୍ଗରେ ତାଙ୍କର ତିଳେ ନ ଥାଏ ବସନ
ଉଲଗ୍ନ ହୋଇଣ ସର୍ବେ କରୁଥାନ୍ତି ଧ୍ୟାନ ।
ତାହାପରେ କେତେକ୍ଷଣେ ସେ ଛଅ କୁମାରୀ
ବାହେ ରମ୍ଭାପନ ଧୀମ ଶୀତେ ମାନେ ଥରି ।
ଜଳୁ ଧିରୁ ଏକନେ ଉଠିଣ ସକଳେ
ଅନଳ ଜାଳି ବସିଲେ ଏକ ବୃକ୍ଷମୂଳେ ।
ମଧ୍ୟରେ ଅନଳ ଜାଳି ପ୍ରବଳ ବେଗରେ
ବସିଲେ ସେ ଛଅବାଳା ଘେରି ଚାରି ପାଶରେ ।
କାହୁଁ ବସନ ଅଙ୍ଗରେ ନ ଥାଏ କାହାର
କେଶ ବାସ ପିଠି ପଡ଼ିଥାଏ ଭୂମିପରେ ।
ଅର୍ଦ୍ଧ ପ୍ରସ୍ଫୁଟିତ କଳି ସମ ଯଉବନ
ବିକଶିତ ହୋଇ ଦିଶୁଥାଏ ହୃଦନ ।

ତାହା ଦେଖିଣ ପବନ ଆନନ୍ଦ ହୋଇଲା
ସେ ବିନ୍ଦୁକୁ ଅନଳରେ ଶୀଘ୍ରେ ପକାଇଲା ।
ଅନଳ ମଧ୍ୟରେ ବିନ୍ଦୁ ହୋଇଣ ଦହନ
ଧୂମ୍ର ସମ ତାଙ୍କ ଅଙ୍ଗେ ଭେଦିଲା ବହନ ।
କେତେକ୍ଷଣ ପରେ ଉଠି ଦେଖିଲେ କୁମାରୀ
ସେମାନଙ୍କ ଗର୍ଭମାନ ହୋଇଅଛି ଭାରୀ ।
କାହିଁକି ଏପରି ହେଲା ବୋଲିଣ ସମସ୍ତେ
ଅତ୍ୟନ୍ତ ବ୍ୟଥିତ ହେଲେ ଭାବି ହୃଦଗତେ ।
ସେତିକିବେଳେ ଶୂନ୍ୟରୁ ହୋଇଲା ଶବଦ
ମନରେ କିଛି ନ ଭାବ ହେ କୁମାରୀ ବୃନ୍ଦ ।
ଶିବଙ୍କ ରେତରେ ତୁମ୍ଭେ ଅଛ ଗର୍ଭ ହୋଇ
ଉପଯୁକ୍ତ ପୁତ୍ର ଜନ୍ମ ହୋଇବ ସୁମୁହିଁ ।
ଏମନ୍ତ ଶୁଣି କୁମାରୀ ଲଜ୍ଜିତା ହୋଇଲେ
ସାଥେ ସାଥେ ପୁତ୍ର ଏକେ ଏକ ପ୍ରସବିଲେ ।
ଛଅଗୋଟି ସୁତ ଛଅ କୁମାରୀ ଜନ୍ମାନ୍ତେ
ଲଜ୍ଜାରେ ବଦନ ପୋତି ରହିଲେ ସମସ୍ତେ ।
ଏତିକିବେଳେ ଏକଇ କୁମାରୀ ବୋଇଲା
କିପରି ଏହାକୁ ନେଇ ଘରେ ଯିବା ଭଲା ।
ପିତା ମାତା ଗୁରୁଜନ ଦେଖିଲେ ଏହାଙ୍କୁ
କି ବୋଲିଣ ବୋଲିକରି କହିବେ ଆମ୍ଭଙ୍କୁ ।
ଶୀଘ୍ର ବିଳମ୍ବ ନ କରି ଏ ସନ୍ତାନେ ନେଇ
ସାଗର ବକ୍ଷରେ ଫିଙ୍ଗି ଯିବାକ ପକାଇ ।
ଏକଥା ଶୁଣି ସକଳେ ଆନନ୍ଦ ହୋଇଲେ
ଷଡ଼ କୁମରଙ୍କୁ ପଦ୍ମ ନାଡ଼େ ଗୁଡ଼ାଇଲେ ।
ଏକତ୍ରେ ଗୁଡ଼ାଇ ଜଳମଧ୍ୟକୁ ଫିଙ୍ଗିଣ
ପଳାଇଲେ ଗୃହକୁ ସକଳେ ତକ୍ଷଣ ।
ତାପରେ କେତେକ ଦିନ ସାଗର ବକ୍ଷରେ
ଭାସିଲା ସେହି କୁମରେ ପଡ଼ି ଏକାନ୍ତରେ ।
ଏ ବାରତା ପାଇ ଚନ୍ଦ୍ର ଘେନିଣ ଅମୃତ
କୁମର ସନ୍ନିଧେ ଆସି ହେଲେ ଉପସ୍ଥିତ ।
ମୁଖରେ ଅମୃତ ଦେଇ ଦିଅନ୍ତେ ପିଠାଇ
ଛଅଗୋଟି ସୁତ ଏକ ଯାଇଛନ୍ତି ହୋଇ ।
କେବଳ ମାତ୍ର ମସ୍ତକ ଛଅଟି ହୋଇଛି ।
ଆଉ ସମସ୍ତ ଏକତ୍ର ଲାଗି ଯାଇଅଛି ।
ଦେଖିଣ ଚନ୍ଦ୍ର ମନରେ ଆନନ୍ଦିତ ହେଲେ
ଆସି ଦେବତା ମାନଙ୍କୁ ବାରତା କହିଲେ ।

ତାହା ଶୁଣି ଇନ୍ଦ୍ର ଆଦି ସକଳ ଅମରେ
ସାଗର ତୀରେ ମିଳିଲେ ନନ୍ଦନ ପାଖରେ ।
କୁମର ରୂପକୁ ସର୍ବେ ନିରେଖି ଚାହିଁଣ
ମନରେ ଅତି ଆନନ୍ଦ ହେଲେ ତତକ୍ଷଣ ।
ସାବିତ୍ରୀ ଇନ୍ଦ୍ରାଣୀ ଆଦି ସୁରନାରୀମାନେ
ପୁତ୍ରକୁ କୋଳେ ଧରିଲେ ଆନନ୍ଦିତ ମନେ ।
ଏତିକିବେଳେ ବିଧାତା କୃତ୍ତିକାଙ୍କୁ ଚାହିଁ
ତାହାଙ୍କ କୋଳେ ସୁତକୁ ଅରପିଲେ ତହିଁ ।
ବୋଇଲେ ଆଜଠୁଁ ତୁହି ଅତି ଯତନରେ
ପାଳିବୁ ପୁତ୍ରକୁ ନେଇଁ ରଖିଣ ନବରେ ।
ତାହାଶୁଣି ସେ କୃତ୍ତିକା ଆନନ୍ଦ ହୋଇଲା
ସ୍ତନ୍ୟ ଦାନ କରି ସ୍ନେହେ ପୁତ୍ରକୁ ପାଳିଲା ।
ତାହାର ପାଖେ ତୁମ୍ଭର ପୁତ୍ର ଅଛି ରହି
ଆପଣା ସନ୍ତାନ ପରି ପାଳିଅଛି ସେହି ।
ତାହାଶୁଣି ମହାଦେବୀ ବ୍ୟଥିତା ହୋଇଲେ
ଆଣ ମୋ ପୁତ୍ରକୁ ବୋଲି ଶିବଙ୍କୁ କହିଲେ ।
ଶଙ୍କର ବୋଇଲେ ଦେବୀ ନ ହୁଅ ଅଥୟ
ଏହିକ୍ଷଣି ଦୂତ ପେଷି ଆଣିବି ତନୟ ।
ଏହା କହି ଅନୁଚର ବର୍ଗକୁ ଡକାଇ
ସମସ୍ତ କଥା ତାହାଙ୍କୁ ଦେଲେକ ବତାଇ ।
ବୋଇଲେ ବିଳମ୍ବ ହେବା ଉଚିତ ନୁହଇ
କୃତ୍ତିକାଙ୍କୁ ବୁଝାଇଣ ପୁତ୍ର ଆସ ନେଇ ।
ଏହାଶୁଣି ଦୂତମାନେ ଅସ୍ତ୍ର ଶସ୍ତ୍ର ଧରି
ବାହାରି ହୋଇଲେ ରେରେକାର ଧ୍ୱନି କରି ।
ବୀରଭଦ୍ର ବିଶାଳଯୁ ଶଙ୍କୁକର୍ଣ୍ଣବୀର
କବନ୍ଧକ ମହାକାଳ ବଜ୍ର ନନ୍ଦୀଶ୍ୱର ।
ଉକନ୍ଦନ ଗୋକାମୁଖ ଦଧିମୁଖ ଶଲ୍ୟ
ବଜ୍ର ଦନ୍ତ ଯୋଗୀଶ୍ୱର ରୁଦ୍ର ମହାବଳ ।
ଏକଲକ୍ଷ କ୍ଷେତ୍ରପାଳ ଘେନି ସଙ୍ଗତରେ
ତ୍ରିଲକ୍ଷ ବେତାଳ ଭୂତ ସହିତ ସତ୍ୱରେ ।
ବ୍ରହ୍ମରାକ୍ଷସ ଡାକିନୀ ଯୋଗିନୀ ସହିତେ
ନିଶାଚରଗଣ ଘେନି ବାହାରିଲେ ସାଥେ ।
ସେ ବେଳର ଦୃଶ୍ୟ କିବା ବରଣିବି ମୁହିଁ
ମେଉଁଦାଗେ ଚଳେ ସବୁଚଳ ଚୂର୍ଣ୍ଣ ହୋଇ ।
ଶିବତୁଲ୍ୟ ପରାକ୍ରମ ରୁଦ୍ର ଭଇରବ
ଶଙ୍କରଙ୍କ ଦୂତ ହୋଇ ବାହାରିଲେ ସର୍ବ ।

ଅସୁର ଝଙ୍କାର କରି ହୁଅନ୍ତି ବାହାର
ଦଳଦଳ ହୋଇ କମ୍ପି ଉଠିଲା ନିପୁର ।
କୃତ୍ତିକା ଭବନେ ସର୍ବେ ପ୍ରବେଶ ହୋଇଲେ
ତାହାର ପୁର ଚୌପାଶେ ଯାଇ ବେଢ଼ିଗଲେ ।
ଦେଖିଣ କୃତ୍ତିକାଗଣେ ମହାଭୟ ପାଇ
ପୁତ୍ରକୁ ଡାକି କହିଲେ ସେ କାତର ହୋଇ ।
ବୋଇଲେ ନନ୍ଦନ ଦେଖ ଅସଂଖ୍ୟ ସଇନ
ବଳେ କରନ୍ତି ଆମ୍ଭ ପୁର ଆକ୍ରମଣ ।
ତାହାଙ୍କୁ ଦେଖିଣ ଆମ୍ଭେ ହେଉଛୁ କାତର
ପାରିବୁ ଯଦ୍ୟପି ପୁତ୍ର ଯାଇ ରକ୍ଷାକର ।
ତାହା ଶୁଣି କାର୍ତ୍ତିକେୟ କହିଲେ ବୁଝାଇ
ଏଥିପାଇଁ ଚିନ୍ତା ତୁମ୍ଭେ ନ କର ଯେ କେହି ।
ତିନିପୁର ଜନ ଯେବେ ହୋଇବେ ଏକତ୍ର
ଏକା ମୁହିଁ କରିଦେବି ତାଙ୍କୁ ଭସ୍ମୀଭୂତ ।
ଏତିକି ବେଳରେ ଆସି ବୀର ନନ୍ଦୀଶ୍ୱର
ଦେଖିଲେ ମାତା ପାଶରେ ବସିଛି କୁମର ।
ଅପାର ଜ୍ୟୋତି ତାହାର ଅଙ୍ଗୁ ବିକଶୁଛି
କାଳ ଅରୁଣ ପରାୟେ ତେଜ ପ୍ରକାଶୁଛି ।
ତାହାଙ୍କୁ ଦେଖିବା ମାତ୍ରେ ଆଗେ ଉଭାହୋଇ
ପରିଚୟ ମାନ ଆଗ ଦେଲେକ ବତାଇ ।
ବୋଇଲେ ଆମ୍ଭର ଘର ଅଛି ତୁମ୍ଭେ ଜାଣ
ପଠାଇ ଅଛନ୍ତି ମାତା ପିତା ଏ ସ୍ଥାନେଣ ।
ଏମନ୍ତ କହିଣ ଆଦ୍ୟ ପ୍ରାନ୍ତ ପର୍ଯ୍ୟନ୍ତ
ସମସ୍ତ କହିଲେ ନନ୍ଦୀ କାର୍ତ୍ତିକ ଅଗ୍ରତ ।
ତାହା ଶୁଣିଣ କାର୍ତ୍ତିକ କହିଲେ ବୁଝାଇ
ତୁମ୍ଭେ ଯାହା କହୁଅଛ ମାନୁଅଛି ମୁହିଁ ।
ହେଲେ ମଧ୍ୟ କୃତ୍ତିକାଙ୍କୁ ମୁହିଁ ଛାଡ଼ିଦେଇ
କଦାପି ତୁମ୍ଭ ସଙ୍ଗରେ ନ ପାରିବି ଯାଇ ।
ଏହିପରକାରେ ଯହୁଁ କାର୍ତ୍ତିକ କହିଲେ
ଆବର ବହୁ ପ୍ରକାରେ ନନ୍ଦୀ ବୁଝାଇଲେ ।
ବୋଇଲେ ଯଦ୍ୟପି ତୁମ୍ଭେ କୃତ୍ତିକା ମାତାଙ୍କୁ
ଛାଡ଼ି ନ ଯାଇ ପାରିବ କୈଳାସ ପୁରକୁ ।
ତା ହେଲେ ଦିନକ ପାଇଁ ଆମ୍ଭ ସଙ୍ଗତରେ
ଚାଲ ଦେଖିକରି ଫେରି ଆସିବ ଏଠାରେ ।
ତାହାଶୁଣି କାର୍ତ୍ତିକେୟ ସନମତ କଲେ
ଯିବେ ବୋଲି ତାଙ୍କ ସଙ୍ଗେ ପ୍ରତିଶ୍ରୁତି ଦେଲେ
ଏହିଠାରୁ କାର୍ତ୍ତିକେୟ ଜନ୍ମ ସମାଚାର
ସମ୍ପୂର୍ଣ୍ଣ ହୋଇଲା ଗୀତେ କହେ କ୍ଷେମଙ୍କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ କାର୍ତ୍ତିକେୟଙ୍କ ଜନ୍ମ ସମାଚାରେ
ନାମ ଚତୁର୍ଦ୍ଦଶ ଅଧ୍ୟାୟଃ ।

# ପଞ୍ଚଦଶ ଅଧ୍ୟାୟ

## କାର୍ତ୍ତିକେୟଙ୍କର କୈଳାସ ଆଗମନ

ନାରଦଙ୍କ ଆଗେ ନାରାୟଣ ମୁନିବର
କହନ୍ତି ଆନନ୍ଦେ ବସି ସବୁ ସମାଚାର ।
ବୋଇଲେ ହେ ଧାତା ସୁତ ଶୁଣ ଦେଇମନ
କାର୍ତ୍ତିକେୟ ନନ୍ଦୀପାଖୁଁ ଆସିଣ ବହନ ।
ପ୍ରବେଶ ହୋଇଣ କୃତ୍ତିକାଙ୍କ ସମୀପରେ
ପ୍ରବୋଧନା ଦେଲେ ତାଙ୍କୁ ମଧୁର ବାକ୍ୟରେ ।
ବୋଇଲେ ଜନନୀମାନେ ଶୁଣ ମୋ ବଚନ
କୈଳାସ ଭୁବନେ ମୁହିଁ କରୁଛି ଗମନ ।
ପିତାମାତାଙ୍କ ସହିତେ ସର୍ବ ଦେବଙ୍କର
ଦର୍ଶନ କରିବି ଆଜ୍ଞା ଦିଅମା ସତ୍ୱର ।
ପୋଷ୍ୟପୁତ୍ର ହୋଇ ପାଶେ ରହିଥିଲି ସିନା
ମୋ ବିରହେ ଆଉ କିଛି ନ କର ଭାବନା ।
ଦୈବର ଅଧୀନ ଅଟେ ଏ ବିଶ୍ୱ ଜଗତ
କର୍ମ ଅନୁସାରେ ଶୁଭାଶୁଭ ହୁଏ ଜାତ ।
ସଂଯୋଗ ବିୟୋଗ ସୁଖ ଦୁଃଖ ଆଦି ଯେତେ
ଦୈବର ଯୋଗରେ ସବୁ ହୁଅଇ ନିଶ୍ଚିତେ ।
ଦୈବର ଅଟଇ ପ୍ରଭୁ ଶ୍ରୀକୃଷ୍ଣ ଅଧୀନ
ଶ୍ରୀକୃଷ୍ଣଙ୍କ ମାୟାବଳେ ହୁଏ ସବୁ ଜାଣ ।
ଯେ ପରମ ପୁରୁଷଙ୍କୁ ସଦା ସାଧୁଜନେ
ଉପାସନା କରୁଥାନ୍ତି ବସି ଯୋଗାସନେ ।

ଚଳିବାର ବୁଦ୍ଧି ଅବା ନଷ୍ଟ କରିବାକୁ
ସମର୍ଥ ଅଟନ୍ତି ସେହି କହିଲି ତୁମ୍ଭଙ୍କୁ ।
ଯେଉଁମାନେ ତାହାଙ୍କର ଭକ୍ତ ହୋଇଥାନ୍ତି
ଦଇବର ଅଧୀନ ସେ କଦାପି ନୁହନ୍ତି ।
ସେ ସକାଶୁ ଶ୍ରୀକୃଷ୍ଣଙ୍କୁ ଭଜ ଏକମନେ
ସାଂସାରିକ ମାୟା ମୋହ ତେଜିଣ ବନ୍ଧନେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଦେବବୃନ୍ଦ
ଭଜୁଛନ୍ତି ସଦା ତାଙ୍କ ପାଦ ଅରବିନ୍ଦ ।
ଏ ଭବସାଗର ମଧ୍ୟେ କେ ନୋହେ କାହାର
ମାୟାମୋହ ଭ୍ରମେ ସବୁ ବୋଲନ୍ତି ମୋହର ।
କର୍ମସ୍ରୋତେ ପଡ଼ି ସର୍ବେ ପୁଞ୍ଜୀଭୂତ ହୋଇ
କାଳର ବଳରେ ଭାସି ଚାଲଯାନ୍ତି କାହିଁ ।
ସଂଯୋଗ ବିଯୋଗେ ସୁଖ କଷ୍ଟ ଆଦି ଯେତେ
ଈଶ୍ୱର ଇଚ୍ଛାରେ ସବୁ ହୁଅଇ କହୁଁତେ ।
ନିଖିଳ ଭୁବନ ଅଟେ ଈଶ୍ୱର ଅଧୀନ
ଏ କଥା ଜାଣନ୍ତି ଭଲରୂପେ ଜ୍ଞାନୀଜନ ।
ଜଳ ଫେନ ପରି ଦେହ ଅଟଇ ଅନିତ୍ୟ
ମାୟାରେ ଭ୍ରମିଣ ମୂଢ଼େ ଭ୍ରମୁଥାନ୍ତି ନିତ୍ୟ ।
ପର ପ୍ରତିହିଂସା ଦ୍ୱେଷ ରାଗ ପ୍ରକାଶନ୍ତି
କାଳର ଅଧୀନ ନିଜେ ବୋଲି ନ ଜାଣନ୍ତି ।
କିନ୍ତୁ ସାଧୁ ଲୋକଙ୍କର ବିପରୀତ ବୁଦ୍ଧି
ଅବିଚ୍ଛିନ୍ନ ହୋଇ ରହେ ମରଣ ଅବଧି ।
ସେ ସକାଶୁ ବୋଲୁଅଛୁ ଆଗୋ ମାତୃଗଣ
ମାୟାର ଅଧୀନ ତୁମ୍ଭେ ନୁହ ଅକାରଣ ।
ବିଦାୟ ଦେଇଣ ମୋତେ ସ୍ୱଚ୍ଛନ୍ଦେ ସୁଖେ ରହ
ଶ୍ରୀକୃଷ୍ଣଙ୍କୁ ଧ୍ୟାନକରି ହରିନାମ ନେଉଥାଅ ।
ଏମନ୍ତ କହି କୁମାର ପାର୍ଷଦ ସହିତେ
ପ୍ରଣାମ କରିବ ତାହାଙ୍କର ପାଦାଗ୍ରତେ ।
କୈଳାସକୁ ଯିବାପାଇଁ ବାହାର ହୋଇଲେ
ନନ୍ଦୀଶ୍ୱର ଆଦି ତାଙ୍କ ସଙ୍ଗରେ ରହିଲେ ।
ଏହି ସମୟରେ ଦିବ୍ୟରଥ ଆସି ତହିଁ
ପ୍ରବେଶ ହୋଇଲେ ତେଜେ ସୂର୍ଯ୍ୟଙ୍କୁ ଜିଣାଇ ।
ଉତ୍ତମ ରତ୍ନରେ ହୋଇଅଛି ଯେ ମଣ୍ଡିତ
ମାଣିକ୍ୟ ହୀରକ ମୁକ୍ତାଗଣରେ ଶୋଭିତ ।
ତା ମଧ୍ୟରେ ପାରିଜାତ ପୁଷ୍ପ ମାଳ ମାଳ
ବନ୍ଧା ହୋଇ ଦିଶୁଥିଲା ଅତ୍ୟନ୍ତ ମଞ୍ଜୁଳ ।
ମଣୀନ୍ଦ୍ର ଦର୍ପଣ ପୁଣି ଶ୍ୱେତ ଚାମର
ଥୁଆ ହୋଇଥିଲା କେତେ ସ୍ଥାନରେ ତାହାର ।
କ୍ରୀଡ଼ା ଯୋଗ୍ୟ ନାନା ଶିଳ୍ପ ଚିତ୍ରିତ ସଦନ
ଥାଇ ତହିଁ ହରି ନେଉଥିଲା ଲୋକମନ ।
ଶତଗୋଟି ଚକ୍ର ଲାଗିଥିଲା ତା ଦେହରେ
ଗତି କରୁଥିଲା ସେହି ଇଚ୍ଛା ଅନୁସାରେ ।
ସେ ରଥକୁ ବିଶ୍ୱକର୍ମା ପୂର୍ବେ ଗଢ଼ିଥିଲେ
ପୁତ୍ର ସକାଶେ ପାର୍ବତୀ ଦେବୀ ପଠାଇଲେ ।
ଏମନ୍ତ ରଥକୁ ଆଗେ ଦେଖି କାର୍ତ୍ତିକେୟ
ବସିଲେ ତହିଁରେ ଯାଇ ଛାଡ଼ି ମନୁ ଭୟ ।
ପୁତ୍ରର ପ୍ରୟାଣ ଦେଖି କୃତ୍ତିକାଏ ତହିଁ
ପଡ଼ିଲେ ମହୀ ଉପରେ ଚେତନା ହରାଇ ।
ଆଶ୍ୱାସିତ ହୋଇ ପୁଣି ବିକଳେ କାନ୍ଦିଲେ
ଉନ୍ମତ୍ତ ହୋଇଲା ପରି ବଚନ କହିଲେ ।
ବୋଇଲେରେ ବତ୍ସ ଆମ୍ଭେ କେଉଁଠାକୁ ଯିବୁ
କାହାକୁ ଆଶ୍ରୟ କରି ଜୀବନ ରଖିବୁ ।
କି ରୂପେ ଆମ୍ଭଙ୍କୁ ଛାଡ଼ି ପଳାଉଛୁ ତୁହି
ଏ କଥା କି ତୋ ପକ୍ଷରେ ଉଚିତ ଅଟଇ ।
ପିଲାଦିନୁ ଆଣି ଆମ୍ଭେ କରିଛୁ ପାଳନ
ଧର୍ମରେ ଅଟୁ ଯେ ତୁହି ଆମ୍ଭର ନନ୍ଦନ ।
ମାତାଙ୍କୁ ଛାଡ଼ିଣ ପୁତ୍ର ପଳାଇ ଯିବାର
ନୁହଇ ଏ କେବେ ବେଳେ ଧର୍ମର ବେଭାର ।
ଏମନ୍ତ କହିଣ ସର୍ବେ ପୁତ୍ରକୁ କୋଳରେ
ବସାଇ କ୍ରନ୍ଦନ କଲେ ଅତି ଉଚ୍ଚସ୍ୱରେ ।
ସେ ଅନ୍ତରେ ପୁଣି ମୂର୍ଚ୍ଛା ଯାଇଣ ପଡ଼ିଲେ
ଘଡ଼ିଏ ପର୍ଯ୍ୟନ୍ତେ ଆଉ ଚେତା ନ ପାଇଲେ ।
ତା ଦେଖି କୁମାର ତାଙ୍କୁ ଆଶ୍ୱାସନା କରି
ଚେତା କରାଇଲେ ମୁଖେ ସିଞ୍ଚି ଶୀତବାରି ।
ନାନାପ୍ରକାରେ ବୁଝାଇ ବହୁତ କହିଲେ
ସଙ୍ଗତରେ ନେବାପାଇଁ ରଥେ ବସାଇଲେ ।
ପାରିଷଦଗଣ ମଧ୍ୟ ତାଙ୍କ ପଛେ ପଛେ
ବସିଲେ ଯେକାଳେ ଯାଇ ରଥପରେ ସ୍ୱଚ୍ଛେ ।
ପୂର୍ଣ୍ଣକୁମ୍ଭ ଶୁକ୍ଳ ଧାନ୍ୟ ବେଶ୍ୟା ଦରପଣ
ଦଧି ମଧୁ ଘୃତ ଦୁର୍ବାକ୍ଷତ ଯେ ବ୍ରାହ୍ମଣ ।
ପୁଷ୍ପ ଲାଜା ବୃଷ ଗଜ ତୁରଗ ସୁବର୍ଣ୍ଣ
ଜ୍ୱଳନ୍ତ ଅନଳପରି ଚନ୍ଦ୍ରଫଳ ପୂର୍ଣ୍ଣ ।

ପଞ୍ଚ ପୁତ୍ରବନ୍ତୀ ସ୍ତ୍ରୀ ଧୂପ ଦୀପ ରତ୍ନସାର
ଚନ୍ଦନ ମୁକ୍ତା କୋମଳ ମାଂସ ପୁଷ୍ପହାର ।
ଏରୂପେ ମଙ୍ଗଳକର ଦ୍ରବ୍ୟମାନ ଯେତେ
ଗଲାବେଳେ ତାହା ସବୁ ଦେଖିଲେ ଅଗ୍ରତେ ।
ଶୃଗାଳ ନକୁଳ କୁମ୍ଭ ଶବ ଏମାନଙ୍କୁ
ଦେଖିଲେ ବାମଭାଗରେ ଶୁଭ ହୋଇବାକୁ ।
ରାଜହଂସ ମୟୂର ଯେ ଖଞ୍ଜରୀଟ ପିକ
ପାରାବତ ଶଙ୍ଖଚିଲ ଶୁକ ଚକ୍ରବାକ ।
ଚମରୀ ସୁରଭି ରଙ୍କୁ ଶୁକଳ ଚାମର
ବତ୍ସା ସହିତରେ ଧେନୁ ଘୋଡ଼ା ଆଦିକର ।
ଦକ୍ଷିଣ ଭାଗରେ ଏମାନଙ୍କୁ ଦେଖୁଥିଲେ
ମଙ୍ଗଳ ହୋଇବ ବୋଲି ମନେ ବିଚାରିଲେ ।
ନାନା ବାଦ୍ୟ ନୃତ୍ୟ ଗୀତ ମଙ୍ଗଳସୂଚକେ
ଘଣ୍ଟାରବ ଶଙ୍ଖ ଧ୍ୱନି ଶୁଭିଲା ଅନେକେ ।
ଏହି ପରକାରେ ନାନା ଉତ୍ସବ ମଧ୍ୟରେ
ଇଚ୍ଛାଗାମୀ ରଥେ ବସି ସର୍ବେ ସେ କାଳରେ ।
କ୍ଷଣକ ମଧ୍ୟରେ ଯାଇ କୈଳାସେ ମିଳିଲେ
ମାତାଙ୍କ ପାଖକୁ ଯିବାପାଇଁ ଇଚ୍ଛାକଲେ ।
ବଟବୃକ୍ଷ ମୂଳେ ରଥ ରଖାଇ ସେଠାରେ
ଓହ୍ଲାଇଲେ କୃତ୍ତିକାଙ୍କ ସେନା ସଙ୍ଗତରେ ।
ମୁହୂର୍ତ୍ତେ ପର୍ଯ୍ୟନ୍ତ ତହିଁ ବସିଲେ ହରଷେ
ପାରିଷଦଗଣ ବେଢ଼ି ଥିଲେ ଚତୁପାଶେ ।
କୁମର ଆସିବ ଜାଣି ପର୍ବତନନ୍ଦିନୀ
ମଙ୍ଗଳ ବିଧାନ କଲେ ଦାସୀଗଣ ଘେନି ।
ପକାଇଣ ପଦ୍ମରାଗ ଇନ୍ଦ୍ର ନୀଳମଣି
ରାଜମାର୍ଗ ପରିଷ୍କୃତ କରାଇ ସେକ୍ଷଣି ।
କଦଳୀ ପାଦପ ଦୁଇପାଖେ ପୋତାଇଲେ
ଫଳ ପତ୍ର ଦେଇ ପୂର୍ଣ୍ଣ କୁମ୍ଭକୁ ଥୋଇଲେ ।
ଚନ୍ଦନ ଉଦକ ଆଣି ସିଞ୍ଚି ତା ଉପରେ
ରତ୍ନ ମଣିମୟ ଦୀପ ଜଳାଇଲେ ଘରେ ।
ନର୍ତ୍ତକ ନର୍ତ୍ତକୀ ବେଶ୍ୟାଗଣ ଆସିକରି
ନୃତ୍ୟଗୀତେ ନେତ୍ରମନ ନେଉଥିଲେ ହରି ।
ଦୁର୍ବାଦଳ ପୁଷ୍ପ ଧରି ବନ୍ଦୀ ଦ୍ୱିଜଗଣ
ଉଭାହୋଇ କରୁଥିଲେ ଶୁଭ ଉଚ୍ଚାରଣ ।
ପଞ୍ଚ ପୁତ୍ରବନ୍ତୀ ସତୀ ସ୍ତ୍ରୀଏ ବହୁତ
ସେ ସ୍ଥାନରେ ଆସି ହୋଇଥିଲେ ଉପସ୍ଥିତ ।

ଏହିରୂପେ ରାଜପଥ ସୁସଜ୍ଜିତ କରି
ପୁତ୍ର ଶୁଭ ଆଗମନ ମନରେ ବିଚାରି ।
ତୁଳସୀ ସାବିତ୍ରୀ ଲକ୍ଷ୍ମୀ ସରସ୍ୱତୀ ଚିତ୍ତି
ଗଙ୍ଗା ତାରା ମନୋରମା ଦିତି ଅରୁନ୍ଧତୀ ।
ଅହଲ୍ୟା ଅଦିତି ଶତରୂପା ଅନସୂୟା
ରୋହିଣୀ ବରୁଣକାନ୍ତା ଶଚୀ ସନ୍ଧ୍ୟା ସ୍ୱାହା ।
ଆକୃତି ପ୍ରସୂତି ସଂଜ୍ଞା ଦେବହୂତି ମେନା
ମୈନାକ କାମିନୀ ବସୁନ୍ଧରା ଏକପର୍ଣ୍ଣା ।
ମନସା ଏକ ପାଟଳା ଆଦି ଯେତେ ସତୀ
ଆଗରେ ଚଳାଇ ତାଙ୍କୁ ଗମିଲେ ତ୍ୱରିତ ।
ରମ୍ଭା ତିଳୋତ୍ତମା ମେନା ଘୃତାଚୀ ସୁଶୀଳା
ମୋହିନୀ ଉର୍ବଶୀ ପୁଣି କଳା ରତ୍ନମାଳା ।
ଲଳିତା କଦମ୍ବମାଳା ସୁରସା ସୁନ୍ଦରୀ
ବନମାଳା ଆଦି ଥିଲେ ଯେତେ ଅପସରୀ ।
ସଜାଇ ଉତ୍ତମ ବେଶ ଭୂଷଣ ଦେହରେ
ନୃତ୍ୟ କରି ଗୀତ ଗାଇ ଗଲେ ସଙ୍ଗତରେ ।
ଦେବତା ପର୍ବତ ଯକ୍ଷ ଗନ୍ଧର୍ବ କିନ୍ନର
ମୁନିଋଷିଙ୍କୁ ଘେନିଣ ହୋଇଲେ ବାହାର ।
ରୁଦ୍ର ପାରିଷଦଗଣ ବେତାଳ ଭୈରବ
କ୍ଷେତ୍ରପାଳଙ୍କୁ ସଙ୍ଗରେ ନେଇ ସଦାଶିବ ।
କୁମାରଙ୍କ ସମୀପକୁ ପାଞ୍ଚୁଟି ସେ ଗଲେ
ଆନନ୍ଦରେ ବନ୍ଦୀମାନେ ଜୟଧ୍ୱନି କଲେ ।
ଏଥୁଅନ୍ତେ କାର୍ତ୍ତିକେୟ ପାର୍ବତୀଙ୍କୁ ଆଗେ
ଦେଖିକରି ରଥରୁ ଓହ୍ଲାଇଣ ବେଗେ ।
ଚରଣରେ ନମି ତାଙ୍କୁ ନମସ୍କାର କଲେ
ଲକ୍ଷ୍ମୀ ଆଦି ଦେବୀଗଣ ଯେଠାରେ ତ ଥିଲେ ।
ତାହାଙ୍କୁ ମଧ୍ୟ ପ୍ରଣାମ କରି ଭକ୍ତିଭରେ
ସେ ଅନ୍ତେ ନମିଲେ ଯାଇ ଶିବଙ୍କ ପଦ୍ମରେ ।
ପୁତ୍ରକୁ ଦେଖି ପାର୍ବତୀ ବସାଇଣ କୋଳେ
ଚୁମ୍ବନ ଦେଇ ମସ୍ତକ ଶୁଙ୍ଘି ସ୍ନେହଭାଳେ ।
କୁଶଳ ବାରତା ପୁଚ୍ଛାକଲେ ପୁନଃ ପୁନଃ
ବୋଇଲେ ସୁଭାଗ୍ୟେ ତୋତେ ଦେଖିଲି ନନ୍ଦନ ।
ତାଙ୍କର ସହିତେ ସର୍ବ ଦେବ ଦେବୀମାନେ
ଶୁଭ ଆଶୀର୍ବାଦ ଦାନ କଲେ ତୋଷମନେ ।
ଗଣ ସହିତରେ ମାତୃ କାର୍ତ୍ତିକେୟ ବୀର
ପ୍ରବେଶ ହୋଇଲେ ଯାଇ ପିତାଙ୍କର ପୁର ।

ଦେଖିଲେ ସଭା ମଧ୍ୟରେ ଦେବ ଶିବପତି
ରତ୍ନମୟ ସିଂହାସନେ ବିଜେ କରିଛନ୍ତି ।
ଲକ୍ଷ୍ମୀ ସରସ୍ୱତୀ ଦୁଇପାଖେ ବିରାଜନ୍ତି
ଏକଠାବେ ଠୁଳ ହେଉଛନ୍ତି ଶାନ୍ତ ମୈତ୍ରୀ ପ୍ରୀତି ।
ବିରାଜଇ ଅଙ୍ଗେ ନାନାରୂପ ଆଭରଣ
ବେଢ଼ି ବସିଛନ୍ତି ବ୍ରହ୍ମା ସହ ଦେବଗଣ ।
ମୁନିଋଷିମାନେ କେତେ କରୁଛନ୍ତି ସ୍ତୁତି
ସେବକେ ଶ୍ୱେତ ଚାମର ଘେନିଣ ଢାଳନ୍ତି ।
ଏରୂପେ ତାହାଙ୍କୁ ଦେଖି ଭକ୍ତିରେ କୁମାର
ପ୍ରଣାମ କଲେ ପ୍ରଥମେ ନୁଆଇଁଣ ଶିର ।
ସେ ଅନ୍ତରେ ପ୍ରଜାପତି ଧର୍ମ ପୁରନ୍ଦର
ଅଗ୍ନି ଆଦି ଦେବତାଙ୍କୁ କଲେ ନମସ୍କାର ।
ମୁନିଋଷିମାନେ ତାଙ୍କ ପାଖରେ ଯେ ଥିଲେ
ସେମାନଙ୍କୁ ଯଥାବିଧି ମାନନା ସେ କଲେ ।
ସମସ୍ତଙ୍କଠାରେ ଶୁଭ ଆଶୀର୍ବାଦ ପାଇ
ବସିଲେ କନକମୟ ଆସନରେ ଯାଇଁ ।
ଶଙ୍କର ପାର୍ବତୀ ଦୁହେଁ ଅତି ଆନନ୍ଦରେ
ବ୍ରାହ୍ମଣଙ୍କୁ ଧନରତ୍ନ ଦେଲେ ସେ କାଳରେ ।
ବୋଲେ ଦାସ ସେନବାସୀ ଆହେ ସାଧୁଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ଶୁଣ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ କାର୍ତ୍ତିକେୟଙ୍କର କୈଳାସ ପ୍ରବେଶ କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।

# ଷୋଡ଼ଶ ଅଧ୍ୟାୟ

## ବିଷ୍ଣୁଙ୍କ ଦ୍ୱାରା କାର୍ତ୍ତିକେୟଙ୍କର ଅଭିଷେକ

ଶୁଣ ଆହେ ତପିଶ୍ରେଷ୍ଠ ଦେଇ ମନକର୍ଣ୍ଣ
କାର୍ତ୍ତିକେୟ ଅଭିଷେକ କରିବା ବର୍ଣ୍ଣନ ।
ଜଗତ କରତା ବିଷ୍ଣୁ ମନେ ତୋଷହୋଇ
ଅଭିଷେକ ଦ୍ରବ୍ୟମାନ ଆଣିଲେ ଖୋଜାଇ ।
କୁମାରଙ୍କୁ ରତ୍ନସିଂହାସନେ ବସାଇଲେ
ସମସ୍ତ ତୀର୍ଥରୁ ଜଳ ଅଣାଇ ରଖିଲେ ।
ବାଦ୍ୟକାରଙ୍କୁ ଡକାଇ ନାନାବିଧ ବାଦ୍ୟ
କାଂସ୍ୟତାଳ ଆଦି ବଜାଇଣ ବହୁ ମୁଦ ।
ପୂର୍ଣ୍ଣକୁମ୍ଭ ଘେନ ବେଦମନ୍ତ୍ରକୁ ଉଚ୍ଚାରି
ଢାଳିଲେ କୁମାର ଶିରେ ପୁଣ୍ୟତୀର୍ଥ ବାରି ।
ସେ ଅନ୍ତରେ ରତ୍ନସାର ରଚିତ ମୁକୁଟ
କେୟୂର ଅମୂଲ୍ୟହାର ସୁବର୍ଣ୍ଣ କିରୀଟ ।
କ୍ଷୀର ସମୁଦ୍ରରୁ ଜାତ ଦିବ୍ୟ ବସ୍ତ୍ର ଦ୍ୱୟ
ନାନାରତ୍ନ ବିନିର୍ମିତ ଆଭରଣଚୟ ।
କଉସ୍ତୁଭ ବନମାଳା ସମର୍ପଣ କଲେ
ଆପଣା ଚକ୍ରରୁ କାଢ଼ି ଚକ୍ରଟିଏ ଦେଲେ ।
ଯଜ୍ଞ ଉପବୀତ ତହୁଁ ଦେଲେ ପ୍ରଜାପତି
ବେଦ ମାତୃଗଣ ବେଦ ଦେଲେ ବହୁ ପ୍ରୀତି ।
ଆବର ଶ୍ରୀକୃଷ୍ଣ ମନ୍ତ୍ର ସନ୍ଧ୍ୟା ମନ୍ତ୍ର ସ୍ତୋତ୍ର
କବଚ ଯେ କମଣ୍ଡଳୁ ବ୍ରହ୍ମାଙ୍କର ଅସ୍ତ୍ର ।
ବର୍ଣ୍ଣାଶ୍ରମଧର୍ମ ବିଦ୍ୟା ସମର୍ପଣ କଲେ
ଧର୍ମଦେବ ଜୀବଦୟା ଧର୍ମେ ମତି ଦେଲେ ।
ସର୍ବତତ୍ତ୍ୱ ବୋଧକର ମୃତ୍ୟୁଞ୍ଜୟ ଜ୍ଞାନ
ଯୋଗ ତନ୍ତ୍ର ସିଦ୍ଧି ତନ୍ତ୍ର ଆଦି ଶାସ୍ତ୍ରମାନ ।
ତ୍ରିଶୂଳ ପିନାକ ଧନୁ ଶକ୍ତି ପାଶୁପତ
ପରଶୁ ସଂହାର ନାମ ଭୟଙ୍କର ଅସ୍ତ୍ର ।
ପୁଣି ତହିଁର ପ୍ରୟୋଗ ସଂହାରକ ମନ୍ତ୍ର
ଦେଲେ ମହାଦେବ ହୋଇ ଅତ୍ୟନ୍ତ ଉଚ୍ଛତ ।
ଜଳପତି ଶ୍ୱେତଛତ୍ର ରତ୍ନମାଳା ଦେଲେ
ମହେନ୍ଦ୍ର ଉତ୍ତମ ମତ୍ତଗର୍ବ ଦାନକଲେ ।
ସୁଧାପୂର୍ଣ୍ଣ କୁମ୍ଭ ଆଣି ଦେଲେ ସୁଧାକର
ଇଚ୍ଛାଗାମୀ ରଥ ଦେଲେ ଦିବସ ଈଶ୍ୱର ।
ପୁଣି ଅଭେଦ୍ୟ କବଚ ଦେଲେ ତୋଷ ବହି
ଯମରାଜ ଦେଲେ ମହା କାଳଦଣ୍ଡ ନେଇ ।
ମହତ ଶକତି ଦେଲେ ଦେବ ହୁତାଶନ
ଯାହା ବଳେ ଶତ୍ରୁକୁଳ ହୋଇବେ ନିଧନ ।
ଅନ୍ୟଦେବଗଣ ଯେ ଯାହାର ମୁଖ୍ୟ ଅସ୍ତ୍ର
ଦେଲେ ତାହା ସଙ୍ଗେ କ୍ଷେପ ସଂହାରକ ମନ୍ତ୍ର ।
କାମଦେବ କାମଶାସ୍ତ୍ର ଦେଲେ ତୋଷ ବହି
କ୍ଷୀରୋଦ ଅମୂଲ୍ୟ ରତ୍ନ ନୂପୁର ଯେ ଦୁଇ ।

ସମ୍ପ୍ରତିବଦନେ ଦେବୀ ହିମାଳୟସୁତା
ମହାବିଦ୍ୟା ଦେଲେ ତାହାଙ୍କୁ ହୋଇ ହରଷିତା ।
କ୍ଷମା ମେଧା ସୁନିର୍ମଳା ବୁଦ୍ଧି ଶାନ୍ତି ଧୃତି
ଶ୍ରୀହରିଙ୍କଠାରେ ଦାସଭାବ ଦୃଢ଼ ଭକ୍ତି ।
ଏହା ମଧ୍ୟ ମହାମାୟା ଦେଲେ ସେ କାଳରେ
ଜଗତ ବିଜୟୀ ହୁଅ ବୋଇଲେ ବାକ୍ୟରେ ।
ବ୍ରହ୍ମା ପୁଣି ଦେବସେନା ନାମରେ ବନିତା
ପ୍ରଦାନ କଲେ ରତ୍ନରେ କରି ଅଳଙ୍କୃତା ।
ବୈବାହିକ ବେଦମନ୍ତ୍ର ଉଚ୍ଚାରଣ କରି
ଦେଲେ ସେକାଳେ ବିବାହ ବିଧି ଅନୁସରି ।
ମୂର୍ତ୍ତିକା ଅଟନ୍ତି ସେହି ରମଣୀଙ୍କ ବର
ବିନୟ ଗୁଣରେ କେହି ନାହିଁ ପଟାନ୍ତର ।
ମହାଷଷ୍ଠୀ ବୋଲି ତାଙ୍କୁ ବୋଲନ୍ତି ପଣ୍ଡିତେ
ଶିଶୁରକ୍ଷା କାରିଣୀ ସେ ଅଟନ୍ତି ଜଗତେ ।
ଏରୂପେ କାର୍ତ୍ତିକେୟଙ୍କୁ ଅଭିଷେକ କରି
ଦେବଋଷିଗଣ ଗଲେ ଯେ ଯାହାର ପୁରୀ ।
ଗଲାବେଳେ ବ୍ରହ୍ମା ବିଷ୍ଣୁ ଶିବଙ୍କ ଚରଣେ
ପ୍ରଣାମ କରି ବିଦାୟ ନେଲେ ଜଣେ ଜଣେ ।
ସେ ଅନ୍ତେ ବ୍ରହ୍ମା ବିଷ୍ଣୁଙ୍କୁ ତ୍ରିପୁର ଅରାତି
ସ୍ତୁତିକଲେ ମାନସରେ ସ୍ନେହଭାବ ଧରି ।
ହିମାଳୟ ମଧ୍ୟ ବ୍ରହ୍ମା ବିଷ୍ଣୁଙ୍କୁ ପ୍ରଣାମ
କରନ୍ତେ ଦେଖିଲେ ପାଶେ ବସିଛନ୍ତି ଧର୍ମ ।
ଆଲିଙ୍ଗନ କରି ତାଙ୍କୁ ଅତି ସ୍ନେହଭରେ
ଶଙ୍କରଙ୍କଠାରୁ ପୂଜା ପାଇ ହରଷରେ ।

ଗଲେ ନିଜ ଭବନକୁ ଆହେ ମୁନିବର
ଏ ବାହାରେ ସେତେ ଆସିଥିଲେ ସେହିଠାରେ ।
ସନ୍ତୁଷ୍ଟ ହୋଇ ସମସ୍ତେ ଯେ ଯା ସ୍ଥାନେ ଗଲେ
ଉତ୍ସବକୁ ମନେ ମନେ ପ୍ରଶଂସା କଲେ ।
ଏହିରୂପେ କେତେକାଳ ହୁଅନ୍ତେ ଅତୀତ
ଶଙ୍କର ପାର୍ବତୀ ଦୁହେଁ ହରଷିତ ଚିତ୍ତ ।
ସମସ୍ତଙ୍କୁ ଆଉଥରେ ଡକାଇ ଆଣିଲେ
ପୁଷ୍ଟିଙ୍କୁ ଗଣେଶ ସଙ୍ଗେ ବିବାହ କରିଲେ ।
ପୂର୍ବପରି କଲେ ମଧ୍ୟ ବହୁତ ଉତ୍ସବ
ସମାପ୍ତ ହୁଅନ୍ତେ ସର୍ବେ ଗଲେ ଯେ ଯା ଠାବ ।
ସେ ଅନ୍ତେ ପୁତ୍ର ଦୁହିଙ୍କ ସେନେହୀ ପାର୍ବତୀ
ରହିଲେ ପତିଙ୍କ ପାଦ ସେବାକରି ନିତି ।
ଏହିରୂପେ କାର୍ତ୍ତିକେୟ ଅଭିଷେକ ବିଧି
ସମାପ୍ତ ହୋଇଲା ଜାଣ ଆହେ ତପୋନିଧି ।
ପଚାରିଲେ ଯାହା ସବୁ କହିଲି ବତାଇ
ଇଚ୍ଛାଥିଲେ ଆଉ କିଛି ଶୁଣିବାର ପାଇଁ ।
ପୃଚ୍ଛାକଲେ ତାହା ମଧ୍ୟ କହିବି ନିଶ୍ଚୟ
ଏଥିରେ କଦାପି ମନେ ନ କର ସଂଶୟ ।
ପବିତ୍ର ଆଖ୍ୟାନ ବ୍ରହ୍ମବୈବର୍ତ୍ତ ପୁରାଣ
ଶୁଣିଲେ ସକଳ ଦୁଃଖ ହୋଇବ ଦହନ ।
ଧର୍ମ ଅର୍ଥ ମୋକ୍ଷପଦ ମିଳିବ ତୁରିତ
ଅନ୍ତିମେ ବୈକୁଣ୍ଠପୁର ହୋଇବ ପ୍ରାପତ ।
ଏହିରୂପେ କହି ତୁନି ହେଲେ ମୁନିବର
ଗୀତରେ ଭଣିଲେ ସନାତନ ଷେଷଙ୍କର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ବିଷ୍ଣୁଙ୍କ ଦ୍ୱାରା କାର୍ତ୍ତିକେୟଙ୍କର ଅଭିଷେକ କଥନେ ନାମ ଷୋଡ଼ଶୋଽଧ୍ୟାୟଃ ।**

---

# ସପ୍ତଦଶ ଅଧ୍ୟାୟ

## ନାରାୟଣ ଦ୍ୱାରା ବିଘ୍ନପ୍ରାପ୍ତି ବୃତ୍ତାନ୍ତ କଥନ

ଶୁଣ ଆହେ ତପିଗଣେ ମନକର୍ଣ୍ଣ ଦେଇ
ପୁଚ୍ଛିଲେ ନାରଦ ନାରାୟଣଙ୍କୁ ଅନାଇଁ ।
ବୋଇଲେ ଆହେ ତପିଙ୍କ ମସ୍ତକ ମଣ୍ଡନ
ସକଳ ଶାସ୍ତ୍ରରେ ତୁମେ ଅଟ ଜ୍ଞାନବାନ ।
ଗୋଟିଏ କଥାରେ ମୋର ହେଉଛି ସନ୍ଦେହ
ଅନୁଗ୍ରହ କରି ତାହା କୁହ ମହାଶୟ ।

ପାର୍ବତୀଙ୍କ କାନ୍ତ ପ୍ରଭୁ ତ୍ରୈଲୋକ୍ୟ ଈଶ୍ୱର
ଗଣେଶ ଅଟନ୍ତି ପ୍ରିୟ ସନ୍ତାନ ତାଙ୍କର ।
ଅଶେଷ ବିଘ୍ନକୁ ସେତ ପାରନ୍ତି ବିନାଶି
କିରୂପେ ତାହାଙ୍କୁ ବିଘ୍ନ ଘଟାଇଲା ଗ୍ରାସି ।
ପାର୍ବତୀଙ୍କ ତପୋବଳେ ଗୋଲୋକ ଈଶ୍ୱର
ଶ୍ରୀକୃଷ୍ଣ ତ ଆସି ହୋଇଥିଲେ ଅବତାର ।

ସକଳ ସୃଷ୍ଟିର ଯେହୁ ଅଟନ୍ତି କାରଣ
ତାହାଙ୍କର ହେଲା କିପାଁ ମସ୍ତକ ହରଣ ।
ଶନୈଶ୍ଚର ଦରଶନେ ଏ ଘଟଣା ହେଲା
ଶୁଣିବାରୁ ମୋର ମନେ ସନ୍ଦେହ ଜନ୍ମିଲା ।
ସେ ସକାଶୁ ବୋଲୁଅଛି ଆହେ ମହାଭାଗ
ଏହାର କାରଣ ମୋତେ କହ ତୁମ୍ଭେ ଆଗ ।
ତାହା ଶୁଣି ନାରାୟଣ ବୋଇଲେ ନାରଦ
ସାବଧାନ ହୋଇ ଏବେ ଶୁଣ ସେ ସମ୍ବାଦ ।
ବିଘ୍ନେଶ୍ୱରଙ୍କର ବିଘ୍ନ ହେଲା ଯେ ହେତୁରେ
କହିବା ସେ କଥା ସବୁ ତୁମ୍ଭର ଆଗରେ ।
ଶିବଙ୍କର ଭକ୍ତ ମାଲୀ ସୁମାଲୀ ରାକ୍ଷସେ
ତାଙ୍କୁ ପୀଡ଼ାଦେଲେ ସୂର୍ଯ୍ୟ ନିଜ କରବାସେ ।
ସେ ସକାଶୁ ସଦାଶିବ ମହାକୋପ କଲେ
ଶୂଳ ନେଇ ସୂର୍ଯ୍ୟଙ୍କର ବକ୍ଷରେ ମାରିଲେ ।
ସେ ଅମୋଘ ଶୂଳଘାତ ପାଇ ଦିନନାଥ
ଚେତନା ହରାଇ ତଳେ ପଡ଼ିଲେ ତୁରିତ ।
ପୁତ୍ରର ଏ ଦଶା ଦେଖି କଶ୍ୟପ ମହର୍ଷି
ଶୋକ କଲେ ତାହାଙ୍କର ସମୀପରେ ବସି ।
ସୂର୍ଯ୍ୟବିହୁନେ ଜଗତ ହୋଇଲା ଅନ୍ଧାର
ହାହାକାର କଲେ ତହୁଁ ସୁରାସୁର ନର
କଶ୍ୟପ ସେକାଳେ ନିଜ କ୍ରୋଧକୁ ସମ୍ଭାଳି
ନ ପାରି ସଦାଶିବଙ୍କୁ ଶାପ ଦେଲେ ଚଳି ।
ବୋଇଲେ ମୋ ତନୟର ବକ୍ଷ ବିଦାରିଲ
ସେ ହେତୁ ମୋର ଶାପକୁ ଯୋଗ୍ୟ ତୁମ୍ଭେ ହେଲ
ଶିରଚ୍ଛେଦ ହେବ ତୁମ୍ଭ ତନୟର କାଳେ
ଅନ୍ୟଥା ନୋହିବ ମୋର ଶାପ କେତେବେଳେ
ଏ ସମୟେ ମହାଦେବ କ୍ରୋଧ ତ୍ୟାଗ କରି
ପ୍ରସନ୍ନ ହୋଇଲେ ମେଘମୁକ୍ତ ଚନ୍ଦ୍ର ପରି ।
ବ୍ରହ୍ମଜ୍ଞାନରେ ସୂର୍ଯ୍ୟଙ୍କୁ ଜୀବଦାନ ଦେଲେ
ଚେତନା ପାଇଣ ସୂର୍ଯ୍ୟ ସେକ୍ଷଣି ଉଠିଲେ ।
ପିତାଙ୍କୁ ପାଖରେ ଦେଖି କଲେ ନମସ୍କାର
ଭକ୍ତିରେ ନମିଲେ ପୁଣି ଶିବଙ୍କ ପୟର ।
ସେ ଅନ୍ତରେ କଶ୍ୟପଙ୍କ ଶାପଦେବା ଜାଣି
ମହାକ୍ରୋଧ କରି ତାଙ୍କଠାରେ ସେକ୍ଷଣି ।
ସକଳ ବିଷୟ ତ୍ୟାଗ କରି ଶ୍ରୀକୃଷ୍ଣଙ୍କୁ
ଭଜିଲେ ଅକ୍ଷୟ ମୁକ୍ତି ପଦ ପାଇବାକୁ ।
ତାହା ଦେଖି ଦେବଗଣ ମହାଭୟ କଲେ
ପ୍ରଜାପତିଙ୍କୁ ତାହାଙ୍କ ପାଖେ ପଠାଇଲେ ।
ସତ୍ୱରେ ଯାଇଣ ବ୍ରହ୍ମା ବିବିଧ ପ୍ରକାରେ
ବୁଝାଇ ଶିବଙ୍କୁ ଯୁକ୍ତ କଲେ ବିଷୟରେ ।
ସେ ଅନ୍ତରେ ବ୍ରହ୍ମା ଶିବ ଦୁହେଁ ମିଶିକରି
ଶୁଭ ଆଶୀର୍ବାଦ କଲେ ବଚନେ ଉଚ୍ଚାରି ।
କଶ୍ୟପ ମୁନିଙ୍କୁ ତୁଳେ ଘେନି ତହୁଁ ଗଲେ
ଯେ ଯାହାର ଭୁବନରେ ପ୍ରବେଶ ହୋଇଲେ ।
ମାଳୀ ସୁମାଳୀ ବେନିହେଁ ବ୍ୟାଧିଗ୍ରସ୍ତ ହୋଇ
ରହିଲେ ଗଳିତକୁଷ୍ଠ ଅଙ୍ଗଦେଶେ ବହି ।
ତାହା ଦେଖି ବ୍ରହ୍ମା ତାଙ୍କୁ ବୋଇଲେ ଉତ୍ତର
ସୂର୍ଯ୍ୟଙ୍କ କୋପରେ ବ୍ୟାଧି ହେଲା ସନେକର ।
ସେଥିପାଇଁ ତୁମ୍ଭେ ଏବେ ସୂର୍ଯ୍ୟଙ୍କର ପୂଜା
ମନ୍ତ୍ର ସ୍ତୋତ୍ର ଆଦି କରି ଧର୍ମଦେଇ ମଜ୍ଜା ।
ଏମନ୍ତ ବୋଲି ତାହାଙ୍କ ସମସ୍ତ ବିଧାନ
ଶିଖାଇଲେ ବସି ନିଜ କମଳଆସନ ।
ସେ ଅନ୍ତରେ ଆଶ୍ୱାସନା କରି ନିଜ ପୁରେ
ପ୍ରବେଶ ହୋଇଲେ ପାଇଁ ମୁହୂର୍ତ୍ତ ମଧ୍ୟରେ ।
ପ୍ରଜାପତିଙ୍କ ଆଦେଶ ପାଇ ବେନିଭାଇ
ସୂର୍ଯ୍ୟଙ୍କ ସେବାରେ ମନ ଦେଲେ ରାକ୍ଷବହି ।
ପୁଷ୍କର ତୀର୍ଥରେ ରହି ତ୍ରିକାଳରେ ସ୍ନାନ
ଆଚରି ସେ ଜପ ହୋମ ସ୍ତୁତି ସ୍ତୋତ୍ରମାନ ।
ବିଧି ଅନୁସାରେ ସବୁ କରନ୍ତେ ସେ ମାତ୍ର
କେତେକାଳ ପରେ ତୁଷ୍ଟ ହେଲେ ଗ୍ରହପତି ।
ବରଦେଇ ତାଙ୍କୁ ରୋଗମୁକ୍ତ କରାଇଲେ
ସୁସ୍ଥଦେହେ ବେନିଭାଇ ନିଜସ୍ଥାନେ ଗଲେ ।
ଅହେ ମୁନିବର ତୁମ୍ଭେ ପଚାରିଲ ଯାହା
ଆମୂଳ କରାଇ ମୁହିଁ କହିଲି ତ ତାହା ।
ଆଉ କେଉଁ କଥା ଶୁଣିବାକୁ ଥିଲେ ମନ
ପଚାର ସଂଶୟ ଛେଡ଼ି କହିବା ବଚନ ।
ଏହିଠାରେ ଗଣେଶଙ୍କ ବିଘ୍ନ ଉପାଖ୍ୟାନ
ଶେଷହେଲା କହେ ଗୀତେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ନାରାୟଣଙ୍କ ଦ୍ୱାରା ଗଣେଶଙ୍କର ବିଘ୍ନପ୍ରାପ୍ତି ବୃତ୍ତାନ୍ତ କଥନେ ନାମ ସପ୍ତଦଶୋଽଧ୍ୟାୟଃ

---

# ଅଷ୍ଟାଦଶ ଅଧ୍ୟାୟ

## ସୂର୍ଯ୍ୟଙ୍କର ସ୍ତବ କବଚାଦି ବର୍ଣ୍ଣନ

ପୁଚ୍ଛିଲେ ନାରଦ ଆହେ ଶାସ୍ତ୍ରଜ୍ଞ ପ୍ରବର
ବେନ ଦାନବଙ୍କୁ ପୂର୍ବେ ବେଦ ଅଧୀଶ୍ୱର ।
ଯେବଣ କବଚ ସ୍ତୋତ୍ର ସୂର୍ଯ୍ୟଙ୍କର ଦେଲେ
ଆବର ଯେମନ୍ତ ପୂଜା ବିଧାନ କହିଲେ ।
ତାହାସବୁ ମୋ ଅଗ୍ରତେ କହନ୍ତୁ ବୁଝାଇ
ଶୁଣିବା ନିମନ୍ତେ ମନ ଉତ୍ସୁକ ହୁଅଇ ।
ନାରଦ ବଚନେ ତୋଷ ହୋଇ ନାରାୟଣ
ବୋଇଲେ ସେ ଗାଥା ଏବେ ମନଦେଇ ଶୁଣ ।
ମାଳୀ ସୁମାଳୀ ନାମରେ ଥିଲେ ଦୈତ୍ୟ ଦୁଇ
ସୂର୍ଯ୍ୟଙ୍କ କୋପରେ ଗଲେ ବ୍ୟାଧିଗ୍ରସ୍ତ ହୋଇ
ତେଣୁ ବିଧାତାଙ୍କୁ ସେହୁ ସୁମରଣା କଲେ
ଜାଣିପାରି ବେଦବର ସେଠାରେ ମିଳିଲେ ।
ଦେଖିଲେ ଦୁଇଟି ଭାଇ ବ୍ୟାଧିଗ୍ରସ୍ତ ହୋଇ
ପଡ଼ିଛନ୍ତି ଉଠିବାକୁ ତିଳେ ବଳନାହିଁ ।
ବୋଇଲେ କାହିଁକି ମୋତେ ସୁମରିଲ ବତ୍ସ
କହ କେଉଁ ଅଭିଳାଷ ମନେ କରିଅଛ ।
ସେ ଦୁହେଁ ବୋଇଲେ ଆମ୍ଭ ରୋଗ ପ୍ରତିକାର
କିରୂପେ ହୋଇବ ତାହା କହ ବେଦବର ।
ତା ଶୁଣି ବିଧାତା ତାଙ୍କୁ ପ୍ରବୋଧନା କରି
ପ୍ରବେଶ ହୋଇଲେ ଯାଇ ବଇକୁଣ୍ଠ ପୁରୀ ।
ପୂର୍ବରୁ ଶଙ୍କର ଯାଇ ବିଷ୍ଣୁଙ୍କର ପାଶେ
ବସି କଥାବାର୍ତ୍ତା ହେଉଥିଲେ ମନ ତୋଷେ ।
ତାହାଙ୍କ ପାର୍ଶ୍ୱରେ ବ୍ରହ୍ମା ଯାଇଣ ବସିଲେ
ଆସିବା କାରଣ କହିବାକୁ ଆରମ୍ଭିଲେ ।
ବୋଇଲେ ମାଳୀ ସୁମାଳୀ ଦୁଇଗୋଟି ଭାଇ
ସୂର୍ଯ୍ୟକୋପେ ପଡ଼ିଛନ୍ତି ବ୍ୟାଧିଗ୍ରସ୍ତ ହୋଇ ।
କେଉଁ ଉପାୟରେ ତହୁଁ ପାଇବେ ମୁକତି
କହ ଏବେ ତାହା ତୁମ୍ଭେ ଭାବି ନିଜ ମତି ।
ତାହା ଶୁଣି ନାରାୟଣ ବୋଇଲେ ସେ ଯେବେ
ପୁଷ୍କର ତୀର୍ଥରେ ଯାଇ ସୂର୍ଯ୍ୟଙ୍କୁ ସେବିବେ ।
ତେବେ ସେ ବ୍ୟାଧିରୁ ମୁକ୍ତ ପାଇବେଟି ଜାଣ
ଅନ୍ୟ ଉପାୟରେ କାର୍ଯ୍ୟ ନାହିଁ ମନେ ଘେନ ।
ଶଙ୍କର ବୋଇଲେ ସୂର୍ଯ୍ୟ ସ୍ତୋତ୍ର ପୂଜା ଧ୍ୟାନ
ଆବର କବଚ କଳ୍ପତରୁର ସମାନ ।
ସେ ବେନି ଭାଇଙ୍କୁ ତାହା ଦିଅ ବେଦବର
ବ୍ୟାଧିରୁ ମୁକତି ହେଉ ତାହାଙ୍କ ଶରୀର ।
ସକଳ ସମ୍ପଦଦାତା ଅଟନ୍ତି ଶ୍ରୀହରି
ବ୍ୟାଧିନାଶନ କରତା ସୂର୍ଯ୍ୟଙ୍କ ବିହାରି ।
ଏ ସକାଶୁଁ ତୁମ୍ଭେ ଯାଇ କହ ସେ ଦୁହିଁଙ୍କୁ
ଯତନରେ ଆରାଧନା କରନ୍ତୁ ସୂର୍ଯ୍ୟଙ୍କୁ ।
ତାହା ଶୁଣି ପ୍ରଜାପତି ବେଗ ହୋଇଗଲେ
ମାଳୀ ସୁମାଳୀଙ୍କ ପାଶେ ପ୍ରବେଶ ହୋଇଲେ ।
ଦେଖିଣ ତାହାଙ୍କୁ ବେନିଦୈତ୍ୟ ତୋଷମନେ
ପ୍ରଣାମ କରି ବସାଇ ରତ୍ନ ସିଂହାସନେ ।
ଯଥାବିଧି ଉପଚାରେ ପୂଜା କଲେ ତହିଁ
ଶିରେ କରଯୋଡ଼ି ଉଭାହେଲେ ଆଗେ ଯାଇ ।
ବ୍ରହ୍ମା ବୋଇଲେ ସୂର୍ଯ୍ୟଙ୍କୁ ପୂଜା କରି ତୁମ୍ଭେ
ରୋଗରୁ ମୁକ୍ତ ହୋଇବ କହିଅଛୁ ଆମ୍ଭେ ।
ମନ୍ତ୍ର ତନ୍ତ୍ର ପୂଜାବିଧି ଶୁଣି ଆମ୍ଭଠାରୁ
ପୁଷ୍କର ତୀର୍ଥକୁ ଯାଅ ନୋହି କଷ୍ଟ ଭୀରୁ ।
ସେହିଠାରେ ରହି ଉପାସନା କର ମାତ୍ର
ପ୍ରସନ୍ନ ହୋଇବ ନିଶ୍ଚେ ସୂର୍ଯ୍ୟଦେବ ପୁତ୍ର ।
ତାହା ଶୁଣି ବେନିଭାଇ ବୋଇଲେ ହେ ତାତ
ଆପଣଙ୍କ ଆଜ୍ଞା ଆମ୍ଭେ ପାଳିବୁ ନିୟତ ।
ମାତ୍ର ସମସ୍ତ ବିଧାନ ବତାଇଣ କହ
ବୁଝିକରି ନିବୁ ଆମ୍ଭେ ଆହେ ପିତାମହ ।
ତାହା ଶୁଣି ପ୍ରଜାପତି ବୋଇଲେ ତା ମୁହିଁ
କହିବାକୁ ତୁମ୍ଭ ଆଗେ ଆସିଅଛି ଧାଇଁ ।
କହୁଅଛି ଏବେ ମନ ଦେଇକରି ଶୁଣ
ଅବିଳମ୍ବେ ଏଠାରୁ ଯାଅ ଦୁଇଜଣ ।
କାର୍ଯ୍ୟସିଦ୍ଧ ହେବାପାଏ ପୁଷ୍କର ତୀର୍ଥରେ
କଠୋର ଯୋଗ ସାଧନା କର ନିରନ୍ତରେ ।
ତ୍ରିକାଳରେ ସ୍ନାନ ସନ୍ଧ୍ୟା ତର୍ପଣ କରିବ
ଭକତିଭରେ ସୂର୍ଯ୍ୟଙ୍କୁ ଜଳାଞ୍ଜଳି ଦେବ ।

ଆବର ଓଁକାର ମାୟାବୀଜ ପ୍ରଥମରେ
ନମଃ ଶବ୍ଦ ପ୍ରୟୋଜନ କରିବ ତା ପରେ ।
ଭଗବତ ସୂର୍ଯ୍ୟ ପରମାତ୍ମା ଶବ୍ଦ ତିନି
ଚତୁର୍ଥ ବିଭକ୍ତି ତାହା ଯେତେଦେଇ ପୁଣି ।
ସ୍ୱାହା ବେନି ଅକ୍ଷରକୁ ତା ଅନ୍ତରେ ଦେବ
ଏସ୍ୱରୂପେ ମନ୍ତ୍ରଗୋଟି ଉଦ୍ଧାର କରିବ ।
ଏ ମନ୍ତ୍ରରେ ନାନାବିଧ ଉପଚାର ଦେଇ
ବରଷେ ପର୍ଯ୍ୟନ୍ତ ପୂଜା କର ବେନିଭାଇ ।
ମୁକତି ପାଇବ ନିଶ୍ଚେଁ ସନ୍ଦେହ ନ କର
କବଚ ସ୍ୱରୂପ ଏବେ ଶୁଣ ହୋଇ ସ୍ଥିର ।
ପୂର୍ବକାଳେ ଅହଲ୍ୟାକୁ ବଳେ ସୁରପତି
ହରଣ କରନ୍ତେ କ୍ରୋଧେ ଗଉତମ ଯତି ।
ଶାପଦେଇ ତାହାଙ୍କର ଅଙ୍ଗେ ସହସ୍ରଯୋନି
ଜାତ କରାଇଲେ ସେ ତ ମୁନିଙ୍କ ଅଗ୍ରଣୀ ।
ସେ ସକାଶୁ ପୁରନ୍ଦର କଷ୍ଟ ଭୋଗ କଲେ
ବୃହସ୍ପତିଙ୍କ ପାଶରେ ଶରଣ ପଶିଲେ ।
ବୃହସ୍ପତି ଇନ୍ଦ୍ରଙ୍କର କଷଣକୁ ଦେଖି
ଦେଲେ ଏ କବଚ ମୁକ୍ତି ପାଇବା ପାଇଁକି ।
ବୋଇଲେ ହେ ପୁରନ୍ଦର ସୂର୍ଯ୍ୟଦେବଙ୍କର
କବଚ କହିବା ଶୁଣ ହୋଇ ତତପର ।
ଯେଉଁ କବଚ ଧାରଣ କରି ମୁନିମାନେ
ମୁକତ ହୁଅନ୍ତି ଥାଇ ଏ ମର୍ତ୍ତ୍ୟ ଭୁବନେ ।
ଯାହାଠାରେ ସେ କବଚ ଥାଏ ତାହା ପାଶେ
ବ୍ୟାଧିଗଣ ଯାଇ ନ ପାରନ୍ତି ମହାତ୍ରାସେ ।
ଯେଉଁରୂପେ ଗରୁଡ଼କୁ ଭୁଜଙ୍ଗମେ ଦେଖି
ପଳାନ୍ତି ଜୀବନ ଭୟେ ବୁଜି ବେନି ଆଖି ।
ସେହିପରି ସୂର୍ଯ୍ୟଙ୍କର କବଚକୁ ଭୟ
କରୁଥାନ୍ତି କୁଷ୍ଠଆଦି ଜ୍ୱରବ୍ୟାଧିଚୟ ।
ଶୁଦ୍ଧମତି ଗୁରୁଭକ୍ତ ହୋଇବ ଯେଉଁ ଶିଷ୍ୟ
ତା ଆଗେ କେବଳ ଏହା କରିବ ପ୍ରକାଶ ।
ଖଳ ଦୁଷ୍ଟମତି ଶଠଜନଙ୍କୁ ଯେ ଦେବ
ନିଶ୍ଚୟ ସେ ମୃତ୍ୟୁମୁଖେ ପଡ଼ି ନାଶିଯିବ ।
ଏହାର ଋଷି ଅଟନ୍ତି ଦେବ ପ୍ରଜାପତି
ଛନ୍ଦ ସ୍ୱରୂପରେ ଉକ୍ତ ଅଟନ୍ତି ଗାୟତ୍ରୀ ।
ଦେବତା ଅଟନ୍ତି ନିଜେ ପ୍ରଭୁ ଦିନକର
ବ୍ୟାଧିନାଶ ଅର୍ଥେ ବିନିଯୋଗଟି ଏହାର ।

ପ୍ରତିଦିନକାଳରେ ପୁଣି ପାପ ବିନାଶକ
ଅଟଇ ଏ କବଚ ଜାଣ ସୁରଙ୍କ ନାୟକ ।
ରକ୍ଷା କରନ୍ତୁ ଆଦିତ୍ୟ ମସ୍ତକକୁ ମୋର
କପାଳକୁ ମନ୍ତ୍ରରାଜ ଅଷ୍ଟାଦଶାକ୍ଷର ।
ସୂର୍ଯ୍ୟ କରନ୍ତୁ ମୋ ଚକ୍ଷୁ ନାସିକା ରକ୍ଷଣ
ଚକ୍ଷୁର କନୀନିକାକୁ ଦେବ ବିକର୍ତ୍ତନ ।
ଅଧର ଦ୍ୱୟକୁ ରକ୍ଷା କରନ୍ତୁ ଭାସ୍କର
ଦନ୍ତ ରକ୍ଷଣ କରନ୍ତୁ ଦିବସ ଈଶ୍ୱର ।
ଗଣ୍ଡଦେଶର ରକ୍ଷକ ହୁଅନ୍ତୁ ପ୍ରଚଣ୍ଡ
ପାଳନ୍ତୁ କର୍ଣ୍ଣ ଦୁଇଟି ପ୍ରଭୁ ମାରତଣ୍ଡ ।
ସ୍କନ୍ଧକୁ ରକ୍ଷା କରନ୍ତୁ ମିହିର ଦେବତା
ପୂଷା ହୋଇଥାନ୍ତୁ ମୋ ଜଙ୍ଘ ପାଳନ କରତା ।
ବକ୍ଷସ୍ଥଳକୁ ଯେ ରବି ରଖନ୍ତୁ ମୋହର
ନାଭି ରକ୍ଷଣରେ ସୂର୍ଯ୍ୟ ହୁଅନ୍ତୁ ତତ୍ପର ।
କଙ୍କାଳ ରଖନ୍ତୁ ସର୍ବଦେବ ନମସ୍କୃତ
ବ୍ରଧ୍ନ ପାଳନା କରନ୍ତୁ ମୋର ବେନିହସ୍ତ ।
ପ୍ରଭାକର ଦୁଇପାଦ ରକ୍ଷଣ କରନ୍ତୁ
ସକଳ ଅଙ୍ଗକୁ ବିଭାକର ରଖିଥାନ୍ତୁ ।
ଏମନ୍ତ ପ୍ରକାର ଅଟେ କବଚ ସ୍ୱରୂପ
କହିଲି ଯଥାର୍ଥ ରୂପେ ହେ ଦେବ ଅଧିପ ।
ଜଗଦ୍‌ବିଲକ୍ଷଣ ନାମ ଅଟଇ ଏହାର
ଦୁର୍ଲ୍ଲଭ ଅଟଇ ଏହା ଜଗତ ମଧ୍ୟର ।
ପୁଷ୍କର ତୀର୍ଥରେ ପୂର୍ବେ ପୁଲସ୍ତ୍ୟ ମହର୍ଷି
ମନୁଙ୍କୁ ପ୍ରଦାନ କଲେ ହୋଇ ମହାତୋଷୀ ।
ତୁମ୍ଭର ମଙ୍ଗଳ ହେବା ପାଇଁ ମୁଁ ତୁମ୍ଭଙ୍କୁ
ଦେଲି ମାତ୍ର ତୁମ୍ଭେ ଆଉ ନ ଦେବ କାହାକୁ ।
ଏହା ପ୍ରସାଦରେ ରୋଗୁଁ ମୁକତ ହୋଇବ
ଉତ୍ତମ ସୁନ୍ଦର ରୂପ ଲାବଣ୍ୟ ପାଇବ ।
ଲକ୍ଷବରଷ ହବିଷ୍ୟ କଲେ ଫଳ ଯେତେ
ହୁଅଇ ଏ କବଚର ଧାରଣେ କେତେ ।
ଏହା ନ ଜାଣି ଯେ ପୂଜାକରଇ ସୂର୍ଯ୍ୟଙ୍କୁ
ମୂଢ଼ ବୋଲି କରି ଲୋକେ ଜାଣିବ ତାହାକୁ ।
ସିଦ୍ଧ ହୁଅଇ ଏ ଦଶଲକ୍ଷ ଜପ କଲେ
ଆହେ ସୁନାସୀର ମନଦେଇ ଶୁଣ ଭଲେ ।
ମାଳୀ ସୁମାଳୀ ଦୈତ୍ୟଙ୍କ ଆଗେ ପିତାମହ
କବଚକୁ ଦେଇ ପୁଣି କରି ଅତି ସ୍ନେହ ।

ବୋଇଲେ ଏହାକୁ ତୁମ୍ଭେ ଧାରଣ କରିବ
ସୂର୍ଯ୍ୟଙ୍କର ସ୍ତୁତିପାଠ ଯତନେ ପଢ଼ିବ ।
ନିଶ୍ଚୟ ରୋଗରୁ ମୁକ୍ତ ପାଇବେଟି ଜାଣ
ନାହିଁ ଯେ ଏଥିରେ କିଛି ସନ୍ଦେହ କାରଣ ।
ସ୍ତୁତିର ସ୍ୱରୂପ ମଧ୍ୟ କହୁଛି ବତାଇ
ସାବଧାନ ହୋଇକରି ଶୁଣ ବେନିଭାଇ ।
ହେ ଦେବ ଦିବସନାଥ ବ୍ରହ୍ମ ଜ୍ୟୋତିର୍ମୟ
ସନାତନ ଦିବ୍ୟରୂପ ସ୍ୱଧା ପ୍ରାଣପ୍ରିୟ ।
ସ୍ତୁତି କରିବାପାଇଁକି ତୁମ୍ଭଙ୍କୁ ମୋ ମନ
ବଳୁଅଛି ଆହେ ଦେବ ସହସ୍ର କିରଣ
ତ୍ରୈଲୋକ୍ୟ ଈଶ୍ୱର ତୁମ୍ଭେ ସର୍ବ ଲୋକନାଥ
ପାପ ପ୍ରାଣୀଙ୍କ ସର୍ବ ଦେବଙ୍କ ପୂଜିତ ।
ତପସ୍ୱୀ ଜନଙ୍କୁ ତପ ଫଳ ଦାନକର
ପାପୀମାନଙ୍କର ସୁଖ ସମ୍ପଦକୁ ହର ।
କର୍ମବୀଜ କର୍ମରୂପ ଅଟ ଦୟାମୟ
ତୁମ୍ଭଙ୍କୁ ସେବିଲେ ଦୂର ହୁଏ ପାପ ଭୟ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପରେ ଜଗତେ
ପ୍ରକାଶିତ ହୋଇ ତୁମ୍ଭେ ରହିଅଛ ସତତେ ।
ବ୍ୟାଧିପ୍ରଦ ବ୍ୟାଧିନାଶ କର୍ତ୍ତା ଅଟ ତୁମ୍ଭେ ।
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ
ସୁଖମୋକ୍ଷ ଭକ୍ତିପ୍ରଦ ସର୍ବ ଶୁଭଦାତା
ସର୍ବେଶ୍ୱର ସର୍ବରୂପ ଭୁବନ ବିଧାତା ।
ପ୍ରତ୍ୟକ୍ଷ ଭାବରେ କେତେବେଳେ ଦେଖାଦିଅ
କେତେବେଳେ ନେତ୍ର ମନ ଅଗୋଚର ହୁଅ ।
ରସ ଦାନ କର ପ୍ରଭୁ ସମୟରେ ପୁଣି
ସକଳ ରସ ହରଣ କର କାଳ ଜାଣି ।
ସିଦ୍ଧରୂପ ସିଦ୍ଧେଶ୍ୱର ସିଦ୍ଧଜନ ଗୁରୁ
ଅଧିକ ସଂସାରେ କେହି ନାହିଁ ତୁମ୍ଭଠାରୁ ।
ପ୍ରସନ୍ନ ହୋଇଣ ମୋତେ କର ବର ଦାନ
ତୁମ୍ଭ ଦୟାବଳେ ମୋର ବାଞ୍ଛା ହେଉ ପୂର୍ଣ୍ଣ

ଏହିରୂପେ ଆଦିତ୍ୟଙ୍କ ସ୍ତବକୁ ଯେ ନିତି
ପଢ଼ିବ ତ୍ରିସନ୍ଧ୍ୟାକାଳେ ଧର୍ମେ ଦେଇ ମତି ।
ଅଶେଷ ରୋଗରୁ ମୁକ୍ତ ହେବ ସେ ନିଶ୍ଚୟ
କିଞ୍ଚିତ ମାତ୍ର ଏଥିରେ ନାହିଁଟି ସଂଶୟ ।
ଅନ୍ଧ କୁଷ୍ଠ ଦରିଦ୍ରତା ଶୋକ ତାପ ରୋଗ
ଏହାକୁ ଶୁଣିବା ମାତ୍ରେ ହୁଅଇ ବିଯୋଗ ।
ଚକ୍ଷୁହୀନ ଅବା ଯେହୁ ଅଟଇ ବଧିର
ଶୁଣେ ଅବା ପଢ଼େ ଯଦି ଯେହୁ ନିରନ୍ତର ।
ମୁକତି ଲଭି କରଣ ପାଏ ଦିବ୍ୟ ରୂପ
ପ୍ରସନ୍ନ ହୁଅନ୍ତି ଦେବ ବାସର ଅଧିପ
ଅଭିଜନ ଲୋକ ସୂର୍ଯ୍ୟ ପୂଜା ଭକ୍ତିଭରେ
ବିଧିବିଧାନରେ ଯେବେ କରେ ରବିବାରେ ।
ରୋଗ ଦୁଃଖ ତାହାର ଦେହରେ:
ରହି ନ ପାରନ୍ତି ସୂର୍ଯ୍ୟଦେବଙ୍କ ଭୟରେ ।
ମାସେ ଯାଏ ପ୍ରତିଦିନ ହବିଷ୍ୟ କରିବ
ଏ ମହାସ୍ତୋତ୍ରକୁ ବିଧି ପ୍ରକାରେ ପଢ଼ିବା ।
ତେମନ୍ତ ହେଲେ ସକଳ କାର୍ଯ୍ୟ ହେବ ସିଦ୍ଧ
ସୁଦୟା କରିବେ ପୁଣି ସକଳ ବିବୁଧ ।
ଏ ସକାଶୁ ଆହେ ବତ୍ସ ତୁମ୍ଭେ ବେନିଭାଇ
ପୁଷ୍କରକ୍ଷେତ୍ରେ ସୂର୍ଯ୍ୟଙ୍କୁ ପୂଜାକର ଯାଇ ।
ଏମନ୍ତ କହି ବିଧାତା ନିଜପୁରେ ଗଲେ
ମାଳୀ ସୁମାଳୀ ତାହାଙ୍କ ଆଜ୍ଞା ଘେନି ଗଲେ
ପୁଷ୍କରକ୍ଷେତ୍ରେ ସୂର୍ଯ୍ୟଙ୍କୁ ଉପାସନା କରି
ବ୍ୟାଧିରୁ ମୁକତି ହେଲେ ଆହେ ତପସ୍ୱୀ ।
ଶୁଣିଲ ତ ସବୁକଥା ବିସ୍ତାର ଭାବରେ
ଆଉ କି ଶୁଣିବା ଇଚ୍ଛା ଅଛି ମାନସରେ ।
ପରିର ଆମୂଳ କରି କହିବା ସମସ୍ତ
ଏମନ୍ତ ବୋଲିଣ ମୁନି ହୋଇଲେ ବିରତ ।
କହେ କ୍ଷେତ୍ରବାସୀ ବ୍ରହ୍ମବୈବର୍ତ୍ତ ପୁରାଣ
ସାଧୁଜନମାନେ ମନ ଦେଇକରି ଶୁଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ସୂର୍ଯ୍ୟଙ୍କର ସ୍ତବ କବଚାଦି ବର୍ଣ୍ଣନେ
ନାମ ଅଷ୍ଟାଦଶୋଽଧ୍ୟାୟଃ

———

# ଊନବିଂଶ ଅଧ୍ୟାୟ

## ଗଣେଶଙ୍କର ଗଜମସ୍ତକ ଧାରଣ

ନାରଦ ବୋଇଲେ ନାରାୟଣ ଋଷିଗଣ
ଶ୍ରୀକୃଷ୍ଣ ଅଂଶରେ ଜାତ ଅଟନ୍ତି ଆପଣ ।
ବୁଦ୍ଧି ବଳ ଦୟା କ୍ଷମା ପରାକ୍ରମ ଗୁଣେ
ଜଗତେ ନ ଥିବ ତୁମ୍ଭ ପରି କେହି ଜଣେ ।
ବିଶ୍ୱରାଜଙ୍କର ବିଘ୍ନ ପ୍ରାପତ ବିଷୟ
ତୁମ୍ଭଠାରୁ ଶୁଣି ତୋଷ ହେଲା ଅତିଶୟ ।
ଏବେ କେତେକ ବିଷୟେ ସନ୍ଦେହ ମୋହର
ହେଉଅଛି ଆହେ ଜ୍ଞାନୀଗଣଙ୍କର ବର ।
ସେ କଥା ସକଳ ମୋତେ କହିବ ବୁଝାଇ
ତୁମ୍ଭଙ୍କୁ ଶାସ୍ତ୍ର ପୁରାଣ ଅବିଦିତ ନାହିଁ ।
ତ୍ରୈଲୋକ୍ୟ ଈଶ୍ୱର ଶିବ ସଂସାର କାରଣ
ଗଣେଶ ଅଟନ୍ତି ତାହାଙ୍କର ସେ ନନ୍ଦନ ।
କାହିଁକି ବା ତାହାଙ୍କର ଅଙ୍ଗେ ଗଜଶିର
ଯୁକ୍ତ କରାଇଲେ ପ୍ରଭୁ ଶଙ୍ଖଚକ୍ରଧର ।
ଜଗତରେ ନାନାବିଧ ପ୍ରାଣୀ ଥିବାଠାରେ
ଗଜମୁଣ୍ଡ ଆଣିଲେ ସେ କେବଣ ହେତୁରେ ।
ଦେବତା ଗନ୍ଧର୍ବ ଯକ୍ଷ ବିଦ୍ୟାଧର ଆଦି
ଥିଲେ ତ ତାହାଙ୍କ ଶିର ନ ଦେଲେ ସମାଧି ।
ଏ ବିଷୟ ଭଲରୂପେ କହ ମୋ ଆଗର
ଶୁଣିଲେ ମୋହର ମନ ହୋଇବ ସୁସ୍ଥିର ।
ଏହିରୂପେ ନାରଦଙ୍କ ବଚନକୁ ଶୁଣି
ଆନନ୍ଦରେ ନାରାୟଣ ଋଷି ଶିରୋମଣି ।
ବୋଇଲେ ସେ କଥା ଏବେ କହିବା ସଂକ୍ଷେପି
ମନଦେଇ କରି ଶୁଣ ଆହେ ମହାତପି ।
ଅନ୍ୟାନ୍ୟ ପୁରାଣ ମଧ୍ୟେ ଏଥିର ସନ୍ଦେଶ
ବିଶଦ ଭାବରେ କାହିଁ ନୋହିଛି ପ୍ରକାଶ ।
ମହାଲକ୍ଷ୍ମୀଙ୍କ ଚରିତ ଥିବାରୁ ଏଥିରେ
ଶୁଣିବାମାନଙ୍କେ ସର୍ବ ସିଦ୍ଧି ଦାନ କରେ ।
ତାରଣ ଆବର ସର୍ବ ବିପଦ ହରଣ
ସକଳ ସମ୍ପଦ ଶୁଭ ଐଶ୍ୱର୍ଯ୍ୟ କାରଣ ।
ପୁରାତନ କଥା ଏହି ଇତିହାସ ସାର
ଅତ୍ୟନ୍ତ ରହସ୍ୟ ପୁଣି ସର୍ବପାପହର ।
ଭକ୍ତିଭରେ ଯେଣୁ ତୁମ୍ଭେ ପଚାରୁଛ ମୋତେ
ଆମୂଳ କରି କହିବି ତୁମ୍ଭର ଅଗ୍ରତେ ।
ପୂର୍ବକାଳେ ଏକଦିନେ ସୁର ଅଧିପତି
ପୁଷ୍ପଭଦ୍ରା ନଦୀତଟେ ମିଳିଲେ ଝଟତି ।
ରାଜସମ୍ପଦରେ ମଦ ତ ହୋଇଥିଲେ ଭୋଳ
ବିହାର କଲେ ସେଠାରେ ହୋଇ ଉତଫୁଲ ।
ଉତ୍ତମ ସୁନ୍ଦର ବନ ମଧ୍ୟେ ଏକାନ୍ତରେ
କୁସୁମିତ ବୃକ୍ଷଲତା ନିକୁଞ୍ଜ ଭିତରେ ।
ପୁଷ୍ପ ତଳପ ରଚନା କରିଣ ଯତନେ
ଶୟନ କରି ତହିଁରେ ହରଷିତ ମନେ ।
ସୁଗନ୍ଧ ଶୀତଳ ବାୟୁ ପରଶ ସୁଖରେ
ଆମୋଦ ପ୍ରମୋଦ ଭୋଗକରି ଆନନ୍ଦରେ ।
ବନଶୋଭା ଦରଶନେ ନିବେଶି ନୟନ
ଶୁଣୁଥିଲେ କଳକଣ୍ଠ ବିହଙ୍ଗ ନିସ୍ୱନ ।
ଏହିସମୟରେ ରମ୍ଭା ନାମେ ଅପସରା
ଯାଉଥିଲା ଚନ୍ଦ୍ରଲୋକ ତେଜ ନିଜପୁରୀ ।
ଅତ୍ୟନ୍ତ ସୁନ୍ଦରୀ ସେହି ରମଣୀଙ୍କ ବର
ପୂର୍ଣ୍ଣଚନ୍ଦ୍ର ବିମ୍ବ ପରି ବଦନ ତାହାର ।
ଅତୁଳ୍ୟ ନିତମ୍ବ ବିମ୍ବ ସୁବୃଦ୍ଧିତ ଶ୍ରେଣୀ
ଦନ୍ତ କାନ୍ତି ଦିଶେ କୁନ୍ଦ ଇନ୍ଦୁ ପ୍ରଭା ଜିଣି ।
ଗଜେନ୍ଦ୍ରଗାମିନୀ ସେହୁ ଗୁରୁ ବିମ୍ବାଧରା
ଶରୀର ଦିଶଇ ସ୍ୱର୍ଣ୍ଣ ଚମ୍ପାପୁଷ୍ପ ପରି ।
କଠିନ ଉନ୍ନତ ସ୍ଥୂଳ ତାର ବେନି ସ୍ତନ
ଦିଶଇ ପକ୍ୱଉନ୍ମୁଖ ଦାଡ଼ିମ୍ବ ସମାନ ।
ଶୋଭା ଦିଶେ ଶରଚ୍ଚନ୍ଦ୍ର ମୁଖେ ମନ୍ଦହାସ
କଟାକ୍ଷ ହୋଇଛି କାମ ସାୟକ ସଦୃଶ ।
ସୁନ୍ଦର କବରୀ ଭାର ମସ୍ତକରେ ସାଜେ
ମାଳତୀ କୁସୁମ ମାଳା ତା ପାଶେ ବିରାଜେ ।
ବହ୍ନିଶୁଦ୍ଧ ବସ୍ତ୍ର କରିଅଛି ପରିଧାନ
ମଣ୍ଡିଅଛି ସର୍ବାଙ୍ଗରେ ସୁବର୍ଣ୍ଣ ଭୂଷଣ ।
କସ୍ତୁରୀ ଯୁକ୍ତ ସିନ୍ଦୁରବିନ୍ଦୁ ଲଲାଟରେ
କଳଙ୍କିତ ବାଳ ଇନ୍ଦୁ ବିମ୍ବ ନିନ୍ଦା କରେ ।

କର୍ଣ୍ଣଯୁଗେ ମଣିରତ୍ନ ନିର୍ମିତ କୁଣ୍ଡଳ
କିରଣରେ ଗଣ୍ଡଦେଶ କରଇ ଉଜ୍ଜ୍ୱଳ ।
ସକଳ ବେଶରେ ପୂର୍ଣ୍ଣ ଅଟଇ ସେ ବାଳା
ଭରିଅଛି ପୁଣ୍ୟ ଅଙ୍ଗେ ଦିବ୍ୟ ପୁଷ୍ପମାଳା ।
ସ୍ଥିର ଯଉବନବତୀ ରସିକ ମଣ୍ଡନା
ନ ମିଳିବ ତାର ରୂପ ଗୁଣର ତୁଳନା ।
ପ୍ରାଣରୁ ଅଧିକ ସେହୁ ଅଟେ ଦେବଙ୍କର
ସ୍ୱଚ୍ଛନ୍ଦଗାମିନୀ ଅପସରାଗଣ ବର ।
କାମ ଗୃହ ଅଭିମୁଖେ କରନ୍ତେ ଗମନ
ପ୍ରବେଶ ହୋଇଲା ଯହିଁ ଥିଲେ ମଘବାନ ।
କାମଶରେ ଜର୍ଜ୍ଜରିତ ହୋଇ ତ ସେ ଥିଲା
ଇନ୍ଦ୍ରଙ୍କୁ ଦେଖି କଟାକ୍ଷ ଦୃଷ୍ଟିରେ ଚାହିଁଲା ।
ସେ ସକାଶୁ ପୁରନ୍ଦର କାମାତୁର ହୋଇ
ସମୀପରେ ଉପସ୍ଥିତ ହେଲେ ତାର ଯାଇ ।
ବେଶଭୂଷାରେ ମଣ୍ଡିତ ଦେଖିଣ ତାହାକୁ
ସ୍ଥିର କରି ନ ପାରିଣ ଆପଣା ଚିତ୍ତକୁ
ବୋଇଲେ ହେ ମତ୍ତଗଜ ମନ୍ଥରଗାମିନୀ
କେଉଁଠାକୁ ଯାଉଅଛ ହୋଇ ଏକାକିନୀ ।
କେଉଁଠାରୁ ଅବା ଏବେ ଆସିଲ ସୁନ୍ଦରୀ
କହ ମୋ ଆଗରେ କିଛି ଗୋପନ ନ କରି ।
ଅନ୍ୟ ସଦନକୁ ତୁମ୍ଭେ ଯାଉଅଛ ବୋଲି
ଦୂତଙ୍କ ମୁଖରୁ ମୁହିଁ ଶୁଣି ଆଗୋ ବାଳି ।
ଏତେବେଳଯାଏ ଖୋଜୁଥିଲି ଏହିଠାରେ
ଦଇବେ ପ୍ରବେଶ ତୁମ୍ଭେ ହେଲ ସମୀପରେ ।
ତୁମ୍ଭଠାରେ ମୋର ମନ ବଳିବାରୁ ଜାଣ
ଅନ୍ୟପ୍ରତି ଆସକତ ନ ହୁଅଇ ପୁଣ ।
ସୁବାସିତ ଜଳପାନ କରିବାକୁ ଯାର
ସତତରେ ମନ ହେଉଥିବଟି ଆତୁର ।
ପଙ୍କିଳ ଜଳକୁ ଇଚ୍ଛା କହିବ କି ସେହି
ମୋହର ମନ ସେରୂପେ ହେଉଅଛି ସହି ।
ଚନ୍ଦନ ଲେପିବା ପାଇଁ ଅଙ୍ଗରେ ଯେ ଲୋକ
ମାନସରେ ସବୁବେଳେ ହୋଇବ ଉତ୍ସୁକ ।
ପଙ୍କବୋଳହେବାପାଇଁକେତେବେଳେହେଲେ
ଇଚ୍ଛାକରିବ କି ତାହା କହ ତୁମ୍ଭେ ଭଲେ ।
ସୁଧାପାନ କରିବାକୁ ଯାର ଇଚ୍ଛାଥିବ
ସୁରାପାନ କରି ସେ କି ସନ୍ତୁଷ୍ଟ ହୋଇବ ।
ଯାର ଅଭିଳାଷ ଥିବ କ୍ଷୀର ପିଇବାକୁ
ଗଣନା ସେ କରିବ କି ପଙ୍କିଳ ଜଳକୁ ।
ସୁଗନ୍ଧ କୁସୁମ ଶଯ୍ୟାପରରେ ପ୍ରତିଦିନ
ଯେଉଁଲୋକ କରୁଥିବ ଆନନ୍ଦେ ଶୟନ ।
ଶର ତଳପରେ ସେହି ଶୋଇବା ପାଇଁକି
କେଉଁ ସମୟରେ ହେଲେ ଇଚ୍ଛା କରିବ କି ।
ସ୍ୱର୍ଗରେ ସେ ବାସ କରିଥିବ ନିରନ୍ତର
ନରକେ ରହିବା ଇଚ୍ଛା ହୋଇବ କି ତାର ।
ସୁଖଭୋଗ କଲା ଲୋକ ଦୁଃଖ ଅଭିଳାଷ
ମନରେ କି କେବେହେଲେ କରିବ ପ୍ରକାଶ ।
ପଣ୍ଡିତ ଜନଙ୍କ ସଙ୍ଗେ ସଂସର୍ଗ ଯେ କରେ
ଯିବ କି ସେ ରହିବାକୁ ମୂର୍ଖ ସମାଜରେ ।
ସ୍ୱର୍ଣ୍ଣ ରତ୍ନ ଅଳଙ୍କାର ଯେହୁ ଲୋଡୁଥିବ
ଲୌହ ଆଭରଣେ ସେ କି ସନ୍ତୁଷ୍ଟ ହୋଇବ ।
ସେହିପରି ତୁମ୍ଭଠାରେ ଥିବ ଯାର ମନ
ତୋଷି ପାରିବ କି ତାକୁ ଅନ୍ୟ ସ୍ତ୍ରୀର ମନ ।
ତୁମ୍ଭର ଯେ ଆଲିଙ୍ଗନ ପାଇଥିବ ଥରେ
ଗୁଡ଼ସିବା ପାଇଁ କାହିଁ ଇଚ୍ଛିବ ମନରେ ।
ଗଙ୍ଗାଜଳ ତ୍ୟାଗକରି ଅନ୍ୟ ନଦୀ ଜଳ
ଗ୍ରହଣ କରିବା ପାଇଁ କେ ହେବ ଆକୁଳ ।
ଇନ୍ଦ୍ରିୟସୁଖ ବାସନା ଥାଏ ସବୁଙ୍କର
ସୁଖ ଅଭିଳାଷୀ ଅଟେ ନିଖିଳ ସଂସାର ।
ଏ ରୂପେ କହିଣ ଇନ୍ଦ୍ର ଗଜରୁ ଓହ୍ଲାଇ
ରମ୍ଭା ଆଗେ ଉଭା ହେଲେ ତା ମୁଖକୁ ଚାହିଁ ।
ଇନ୍ଦ୍ରଙ୍କର ମନକଥା ଜାଣି ଅପସରା
ମନମଥ ଶରେ ପୀଡ଼ା ପାଇ ହେଲା ଭରା ।
ସହଜେ କାମୁକୀ ସେ ତ ସ୍ୱର୍ଗ ବାରସ୍ତ୍ରିରୀ
ବାସବଙ୍କ ଅଙ୍ଗସଙ୍ଗ ଭୋଗ ଇଚ୍ଛାକରି ।
ଅଳପ ହସି ତଳକୁ ନୁଆଁଇ ବଦନ
କଟାକ୍ଷରେ ନିରୀକ୍ଷଣ କରି ପୁନଃ ପୁନଃ ।
ସ୍ତନ ଉରୁ ଦେଖାଇଣ ଅନ୍ୟ ଛଳନାରେ
ହରିଲା ଇନ୍ଦ୍ରଙ୍କ ମନ ମିଷ୍ଟ ବଚନରେ ।
ଯେ ଅନ୍ତେ କୋମଳ ପ୍ରିୟ ସୁମଧୁର ବାଣୀ
କହିବାକୁ ଆରମ୍ଭିଲା ନ ହୋଇଣ ତୁନି ।
ବୋଇଲା ହେ ଦେବରାଜ ମୋ କାର୍ଯ୍ୟରେ ମୁହିଁ
ଯାଉଥିଲି ତୁମ୍ଭେ ଏବା କଥା ଜଣାନାହିଁ ।

ଏବେ ତୁମ୍ଭ ନିକଟରେ ହେଲି ପରବେଶ
କିନ୍ତୁ ତୁମ୍ଭଠାରେ କାର୍ଯ୍ୟ ନାହିଁ ମୋର ଲେଶ
ଆନନ୍ଦର ହୋଇ ତୁମ୍ଭେ ମୋତେ ଯାହା ଏଡେ
ପଚାରିଲ କେଉଁଫଳ ଅଛି ଅବା ଏଥେ ।
ଧୂର୍ତ୍ତମାନଙ୍କର ମୁହିଁ ସନ୍ତୋଷ ଜନନୀ
କହିଲି ମାନବକେ ଦୁର୍ବୃଦ୍ଧି ପୀରତି କାରଣୀ ।
ଯେଉଁରୂପେ ମଧୁକର ସକଳ ପୁଷ୍ପରେ
ବସି ବସି ରସ ଭୁଞ୍ଜୁଥାଏ ନିରନ୍ତରେ ।
କିନ୍ତୁ ଯେଉଁ ପୁଷ୍ପରସ ସବୁଠାରୁ ବଳି
ସୁସ୍ୱାଦୁ ଲାଗଇ ତହିଁ ରହିଥାଏ ଝୁଲି ।
ଭ୍ରମର ପରାୟେ କାମୀ ଲମ୍ପଟ ପୁରୁଷ
ଭୋଗ କରି ନାନା ସ୍ତ୍ରୀର ଅଙ୍ଗ ସଙ୍ଗ ରସ ।
ମନ ଅନୁରୂପ ତାର ହୁଏ ଯେ କାମିନୀ
ଜୀବନ ଯାପନ କରି ଥାଏ ତାକୁ ଘେନି ।
ଉତ୍ତମ ପୁରୁଷ ଯେହୁ ଏକ ପତ୍ନୀ ତାର
ପ୍ରାଣଠାରୁ ବଳି କରେ ପ୍ରିୟାକୁ ଆଦର ।
ସେହି ପୁରୁଷକୁ ସେବା କରିବା ଉଚିତ
ରସଦାୟକ କରଇ ସେ ଯେସନେ ଅମୃତ ।
ଲମ୍ପଟ ପୁରୁଷ ପକ୍ଷୀ ବୃକ୍ଷେ ଆସିକରି
ଫଳଭୁଞ୍ଜି ଗଲପ୍ରାୟେ ଯାଏ ଅପସରି ।
କାର୍ଯ୍ୟସିଦ୍ଧି ହେବାଯାଏ ବାସ ଆବଶ୍ୟକ
କାର୍ଯ୍ୟ ଅନୁରୋଧେ ସ୍ଥିତି କରଇଟି ଲୋକ ।
ଯେଉଁରୂପେ ତଡାଗରେ ଜଳପୂର୍ଣ୍ଣ ଥିଲେ
ଜଳଜନ୍ତୁମାନେ ତହିଁ ରହିଥାନ୍ତି ଭଲେ ।
ଜଳ ଶୁଖିଗଲେ ଅନ୍ୟ ସ୍ଥାନକୁ ପଳାନ୍ତି
ଲମ୍ପଟ ପୁରୁଷ ଅଟଇଟି ସେହି ମତି ।
ଦେବ ଅଧୀଶ୍ୱର ତୁମ୍ଭେ ଅତ୍ୟନ୍ତ ସୁନ୍ଦର
ବିଶେଷେ କାମିନୀଜନ ମନ ମୁଗ୍ଧକର ।
ତୁମ୍ଭଙ୍କୁ ଦେଖି କାହିଁକି ନ ହୋଇବ ଇଚ୍ଛା
ରସିକାର ରସବନ୍ତ ପୁରୁଷରେ ବାଞ୍ଛା ।
ସୁବେଶ ସୁନ୍ଦର କାମକଳାରେ କୁଶଳ
ଯୁବକ ଐଶ୍ୱର୍ଯ୍ୟବନ୍ତ ଧର୍ମ ଦୟାଶୀଳ ।
ଏମନ୍ତ ପତିକୁ ଇଚ୍ଛା କରଇ କାମିନୀ
ଆପଣାକୁ ପୁଣ୍ୟବନ୍ତୀ ମଣଇ ତା ଘେନି ।
ଦୁଃଶୀଳ ରୋଗ ପୀଡ଼ିତ ବୃଦ୍ଧ ରସହୀନ
ରତି ଶକତି ରହିତ ନିଷ୍ଠୁର କୃପଣ ।

ଏମନ୍ତ ପୁରୁଷ ଇଚ୍ଛା ସ୍ତ୍ରୀମାନଙ୍କର
କେବେହେଁ ନ ହୁଏ ନାହିଁ ବୋଲି ମନେକର ।
ଅଶେଷ ଗୁଣସମ୍ପନ୍ନ ଅଟ ତ ଆପଣ
ଆପଣଙ୍କୁ ନ ଭଜିବ କେଉଁ ସ୍ତ୍ରୀଜନ ।
ତୁମ୍ଭର ଆଜ୍ଞାକାରିଣୀ ଦାସୀ ଅଟେ ମୁହିଁ
ଇଚ୍ଛାରେ ଗ୍ରହଣ କର ଶଙ୍କା ଛାଡ଼ିଦେଇ ।
ଏହିରୂପେ କହି ରମ୍ଭା ଅଳପ ହସିଲା
ବକ୍ର ଚକ୍ଷୁରେ ଇନ୍ଦ୍ରଙ୍କୁ ପୁଣି ଅନାଇଲା ।
କାମ ତ ତାହାକୁ ଶର ଅନଳରେ ପୋଡ଼ି
ଦେଉଥିଲା ତେଣୁ ପାଶେ ଗଲା ଲଜ୍ଜା ଛାଡ଼ି ।
ତାହାର ହୃଦୟ କଥା ଜାଣି ପୁରନ୍ଦର
କୁସୁମ ତଳ୍ପକୁ ନେଲେ କରେ ଘେନି କର ।
ଗାଢ଼େ ଆଲିଙ୍ଗନ କରି ବସାଇଲେ କୋଳେ
ଚୁମ୍ବଦେଲେ ପୁନଃ ପୁନଃ ଚାରୁ ଗଣ୍ଡସ୍ଥଳେ ।
ଉରଜ ଘେନିଣ କରେ ବିଳସିଲେ ସୁଖେ
ଚୁମ୍ବ ଦିଆଇଲେ ପୁଣି ଆପଣାର ମୁଖେ ।
କେତେବେଳେ ନିଜେ ରତି ରସରେ ମାତନ୍ତି
କରାନ୍ତି ବା କେତେବେଳେ ବିପରୀତ ରତି ।
ନାନାପ୍ରକାର ଶୃଙ୍ଗାର କ୍ରୀଡ଼ାମାନ କଲେ
କାହାଠାରୁ କେହି ହେଲେ ଊଣା ତ ନ ଥିଲେ
କାମରେ ଆସକ୍ତ ହୋଇ ରଜନୀ ଦିବସ
ନ ଜାଣିଲେ କେତେକାଳ ହୋଇଗଲା ଶେଷ
ଏହିରୂପେ ସ୍ଥଳକ୍ରୀଡା ସାରି ପୁରୁହୂତ
ଜଳକ୍ରୀଡ଼ା କରିବାକୁ ବଳାଇଲେ ଚିତ୍ତ ।
ପୁଷ୍ପଭଦ୍ରା ନଦୀଜଳେ ଉପଗତ ହେଲେ
ରମ୍ଭାକୁ ଘେନିଣ ନାନା ରସେ କ୍ରୀଡାକଲେ ।
ମୁହୂର୍ତ୍ତେ ପର୍ଯ୍ୟନ୍ତେ ତହିଁ ରହି ସେ ଅନ୍ତରେ
ପୁଣି ଆସି ବିହରନ୍ତି ସ୍ଥଳ ପ୍ରଦେଶରେ ।
ଦଣ୍ଡେ ରହି ପୁଣି ଜଳେ ହୁଅନ୍ତି ପ୍ରବେଶ
କେତେକ ସମୟ ଏହିପରି ହେଲା ଶେଷ ।
ତେତେବେଳେ ନିଜ ଶିଷ୍ୟବର୍ଗ ସଙ୍ଗେ ଘେନି
ମିଳିଲେ ତହିଁ ଦୁର୍ବାସା ନାମେ ମହାମୁନି ।
ବୈକୁଣ୍ଠ ଭୁବନ ତେଜି ଶିବଙ୍କ ପୁରକୁ
ଯାଉଥିଲେ ତାଙ୍କୁ ଦରଶନ କରିବାକୁ ।
ମୁନିଙ୍କୁ ଦେଖିଣ ଆଗେ ସୁର ଅଧୀଶ୍ୱର
ରମ୍ଭା ତୁଲେ ଆସି ପାଦେ କଲେ ନମସ୍କାର ।

ଶୁଭ ଆଶୀର୍ବାଦ କରି ସେ ମୁନି ପୁଙ୍ଗବ
ବୋଇଲେ ସକଳ ଶୁଭେ ଅଛ ନା ବାସବ ।
ଏମନ୍ତ ବୋଲି ତାହାଙ୍କୁ ମହା ସମାଦରରେ
ପାରିଜାତ ପୁଷ୍ପଟିଏ ଦେଲେ ନେଇ କରେ ।
ବୋଇଲେ ଏ ପୁଷ୍ପ ମୋତେ ଦେବ ନାରାୟଣ
ଦେଇଥିଲେ ସନ୍ତୋଷରେ ଆହେ ସୁରରାଣ ।
ଏହାର ମହିମା ଅଟେ ତ୍ରୈଲୋକ୍ୟ ଦୁର୍ଲ୍ଲଭ
ଏହା ପ୍ରଭାବରେ ସର୍ବକାର୍ଯ୍ୟ ସିଦ୍ଧ ହେବ ।
ଏ ଦିବ୍ୟ କୁସୁମ ଥିବ ଯାହାର ମସ୍ତକେ
ଆଗ ପୂଜା ପାଇବ ସେ ସବୁଠାରେ ଲୋକେ ।
ତାହାର ଗୃହକୁ ମହାଲକ୍ଷ୍ମୀ କେତେବେଳେ
ଛାଡ଼ିକରି ଅନ୍ୟଠାକୁ ନ ଯାଆନ୍ତି ହେଲେ ।
ଜ୍ଞାନ ବୁଦ୍ଧି ପରାକ୍ରମ ତେଜ ପ୍ରଭାବରେ
ସବୁଠାରୁ ଅଧିକ ସେ ହେବ ନିରନ୍ତରେ ।
ସମସ୍ତ ଦେବଙ୍କ ମଧ୍ୟେ ପୂଜ୍ୟ ବୋଲାଇବ
ଶ୍ରୀମନ୍ତ ଐଶ୍ୱର୍ଯ୍ୟଶାଳୀ ସୁଶୀଳ ହୋଇବ ।
ଅଭିମାନ କରି ଯେଉଁ ଦୁର୍ବୁଦ୍ଧି ପାମର
ଏ ପୁଷ୍ପକୁ ନ ଧରିବ ଆପଣାର ଶିର ।
ଭ୍ରଷ୍ଟଶିରୀ ହୋଇବ ସେ ସମସ୍ତଙ୍କଠାରୁ
ଏ କଥା ନିଶ୍ଚୟ ଜାଣ ମୋର କହିବାରୁ ।
ଏରୂପେ କହି ଶଙ୍କର ଅଂଶଜାତ ମୁନି
କଇଲାସ ଭବନକୁ ଚଳେ ହୋଇ ତୁନି ।
ଇନ୍ଦ୍ର ତ କାମଭୋଗରେ ମତ୍ତ ହୋଇଥିଲେ
ଦୁର୍ବାସା ମୁନିଙ୍କ ବାକ୍ୟ ପାସୋରି ସେ ଦେଲେ ।
ପାରିଜାତ ପୁଷ୍ପଟିକୁ ଗଜ ମସ୍ତକରେ
ଥୋଇଲେ ନେଇଣ ରମ୍ଭା ଅପ୍ସରା ପାଶରେ ।
ସେହିକ୍ଷଣି ମୁନିଙ୍କର ବଚନ ପ୍ରକାରେ
ଭ୍ରଷ୍ଟଶିରୀ ହେଲେ ଇନ୍ଦ୍ର ମୁହୂର୍ତ୍ତ ମଧ୍ୟରେ ।
ତାହା ଦେଖି ରମ୍ଭା ତାଙ୍କ ପାଶରେ ନ ରହି
ସ୍ୱର୍ଗ ଭୁବନରେ ପରବେଶ ହେଲା ଯାଇ ।
ଚଞ୍ଚଳ କାମିନୀଙ୍କର ଅଟେ ସେ ତ ରୀତି ।
ଅଯୋଗ୍ୟ ପୁରୁଷଠାରେ ନ କରନ୍ତି ପ୍ରୀତି ।
ତେଜ ଗୁଣରେ ଅଧିକ ହୋଇ ଗଜରାଜ
ଇନ୍ଦ୍ରଙ୍କୁ ପକାଇ ଚଳେ ପ୍ରକାଶିଲା ଓଜ ।
ମହା ଅରଣ୍ୟ ମଧ୍ୟରେ ହେଲା ପରବେଶ
କରିଣୀ ଗୋଟିଏ ଦେଖି ବନେ କଲା ବଶ୍ୟ ।
ସେ କରିଣୀ ତାର ପ୍ରିୟା ହୋଇଣ ରହିଲା
ସହଜେ ତ ସୁଖାର୍ଥିନୀ ଅଟନ୍ତି ଅବଳା ।
କେତେକାଳ ଅନ୍ତେ ତାଙ୍କଠାରୁ ଦିବ୍ୟ ସୁତ
ଦୁହିତାଗଣ ସେପରି ହୋଇଲେ ସମ୍ଭୂତ ।
ସେ ମହାଗଜର ମୁଣ୍ଡ ଆଣି ଶିରୀପତି
ଗଣେଶଙ୍କଠାରେ ଯୁକ୍ତ କଲେ ଆହେ ସତି ।
ଏରୂପେ ଗଣେଶଙ୍କର ଚରିତ ବିସ୍ତାର
କହିଲି ତ ଯଥାବିଧି ଆହେ ତପେଶ୍ୱର ।
ଆଉ କେଉଁ କଥା ଶୁଣିବାକୁ ଅଛି ମନ
ପଚ୍ଚର କହିବା ବସି ଏଠାରେ ବନ୍ଦନ ।
ଗଜାସ୍ୟ ଯୋଜନ କଥା ହୋଇଲା ସମ୍ପୂର୍ଣ୍ଣ
ଗୀତରେ ଭଣଇ କ୍ଷେତ୍ରବାସୀ ଘନ ଘନ

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶଙ୍କ ଗଜମସ୍ତକ ଧାରଣ
କଥନେ ନାମ ଊନବିଂଶୋଽଧ୍ୟାୟଃ ।

---

# ବିଂଶ ଅଧ୍ୟାୟ

## ଇନ୍ଦ୍ରଙ୍କର ଲକ୍ଷ୍ମୀପ୍ରାପ୍ତି ବର୍ଣ୍ଣନ

ନାରାୟଣଙ୍କୁ ପୁନଶ୍ଚ ପୁଚ୍ଛିଲେ ନାରଦ,
ଋଷିଶାପେ ଶିରୀହୀନ ହେଲେ କିମ୍ପା ଇନ୍ଦ୍ର ।
ଦେବଗଣେ କାହିଁପାଇଁ ହେମନ୍ତ ହୋଇଲେ
ମୋ ଆଗେ ବିସ୍ତାର କରି କୁହ ଦେବ ହେଲେ ।
ପୁଣି କିରୂପେ ଲକ୍ଷ୍ମୀଙ୍କୁ ପ୍ରାପ୍ତ ହେଲେ ଇନ୍ଦ୍ର
ଆବର କପଟ ଲଭି କଲେ ସମ୍ପଦ ।
ଶୁଣିବା ପାଇଁକି ଏହା ବଳଅଛି ମନ
ଦୟାକରି ତାହା ବାରେ କୁହ ତପୋଧନ ।

ନାରାୟଣ ବୋଇଲେ ମୁଁ ତହିଁର ବୃତ୍ତାନ୍ତ
କହୁଅଛି ଶୁଣ ଏବେ ସ୍ଥିରକର ଚିତ୍ତ ।
ନିଶ୍ରୀକ ହେବାରୁ ଇନ୍ଦ୍ର ରମ୍ଭା ଅପସରୀ
ଅନାଦର କରି ଚାଲିଗଲା ନିଜ ପୁରୀ ।
ଗଜ ମଧ୍ୟ ଆପଣାର ଇଚ୍ଛାମତେ ଗଲା
ଶିରର ଝାଡ଼ି ଉପରୁ ପକାଇଣ ଦେଲା ।
ସେ ସକାଶୁ ମହାଦୁଃଖେ ଶଚୀଦେବୀ ପତି
ସ୍ୱର୍ଗକୁ ଆସିଲେ ନିଜ ଅଦୃଷ୍ଟକୁ ଚିନ୍ତି ।
ଦେଖିଲେ ସେଠାରେ ନାହିଁ କାହାର ଆନନ୍ଦ
ସବୁରି ଅବସ୍ଥା ହୋଇଅଛି ଅତି ମନ୍ଦ ।
ବନ୍ଧୁଗଣ ସ୍ଥାନ ଛାଡ଼ି ଗଲେଣି ପଳାଇ
ଶତ୍ରୁମାନେ ପୁଣି ରହି ଅଛନ୍ତି ବେଢ଼ାଇ ।
ଏରୂପେ ପୁରକୁ ଦେଖି ଆପଣା ମନ୍ଦିରେ
ପ୍ରବେଶ ହୋଇଲେ ଖେଦ ପାଇଣ ମନରେ ।
ସେହିଠାରେ ମଧ୍ୟ କିଛି ଶୁଭ ନ ଦେଖିଲେ
ଦେବତାଙ୍କୁ ଡାକି ତହୁଁ ପାଶେ ଅଣାଇଲେ ।
ସେମାନଙ୍କୁ ସଙ୍ଗେ ଘେନି ବ୍ରହ୍ମଲୋକ ଯାଇ
ମିଳିଲେ ବ୍ରହ୍ମାଙ୍କୁ ଦୁଃଖ ଜଣାଇବା ପାଇଁ ।
ଦେଖିଲେ ସଭାମଧ୍ୟରେ ବସିଛନ୍ତି ଧାତା
ପ୍ରଣାମ କଲେ ପାଦେ ସକଳ ଦେବତା ।
ବେଦବାକ୍ୟ ଅନୁସାରେ ବାସବ ସେ କାଳେ
ମସ୍ତକ ନୁଆଇଁ ପୁଣି ବହୁ ସ୍ତୁତି କଲେ ।
ସେ ଅନ୍ତରେ ତାହାଙ୍କର ସକଳ ବୃତ୍ତାନ୍ତ
ଜଣାଇଲେ ବୃହସ୍ପତି ବ୍ରହ୍ମାଙ୍କ ଅଗ୍ରତ ।
ତାହା ଶୁଣି ପ୍ରଜାପତି ନମ୍ରମୁଖ ହୋଇ
ବୋଇଲେ ବାସବ ମୋର ବଂଶେ ଜନ୍ମିଥାଇ ।
ସକଳ ସମ୍ପଦ ଦ୍ରବ୍ୟ ଭୋଗ ପାଇକରି
ଦେବଙ୍କ ମଧ୍ୟରେ ହୋଇଅଛ ଅଧିକାରୀ ।
ରୂପଗୁଣେ ଲକ୍ଷ୍ମୀସମ ଶଚୀ ମହାସତୀ
ହୋଇଅଛନ୍ତି ତୁମ୍ଭର ପ୍ରାଣପ୍ରିୟାବତୀ ।
ତଥାପି ପରକାମିନୀ ଲମ୍ପଟରେ ତୁମ୍ଭେ
ବୁଲିବାର ଦେଖି ସ୍ତବ୍ଧ ହେଉ ଜାଣ ଆମ୍ଭେ ।
ପୂର୍ବକାଳେ ଗଉତମ ଋଷିଙ୍କ ଭାର୍ଯ୍ୟାକୁ
ହରିବାରୁ ବହିଅଛ ସହସ୍ର ଯୋନିକୁ ।
ନିର୍ଲଜ୍ଜ ଭାବରେ ପୁଣି ସେହି ରୀତି ଘେନି
ଧାଉଁଅଛ ହରିବାକୁ ପରର କାମିନୀ ।

ଯେଉଁ ଲୋକ ପରସ୍ତ୍ରୀରି ଇଚ୍ଛା କରୁଥାଏ
ତାହାଠାରେ ଲକ୍ଷ୍ମୀ କେଭେ ନ ରହଇ ସ୍ନେହେ ।
ସେହି ଲୋକ ସବୁଠାରେ ଅପଯଶ ପାଏ ।
ଧନମାନ ଐଶ୍ୱର୍ଯ୍ୟ ତାର ନାଶଯାଏ ।
ଶ୍ରୀହରିଙ୍କ ନଇବେଦ୍ୟ ତୁମ୍ଭ ହସ୍ତେ ନେଇ
ଆନନ୍ଦେ ଦେଲେ ଦୁର୍ବାସା ଋଷିକୁଳ ସାଇଁ ।
ରମ୍ଭାରେ ଆସକ୍ତ ହୋଇ ଗଜ ମସ୍ତକରେ
ଥୋଇଲ ତା ତୁମ୍ଭେ କିଛି ନ ଭାବି ମନରେ ।
ଏବେ ସେ ରମ୍ଭା କାମିନୀ ଅଛି କେଉଁଠାରେ
ବଶ୍ୟ ହୋଇଥିଲ ତୁମ୍ଭେ ଯାହାର ରୂପରେ ।
ଯାହା ଯୋଗେ ତୁମ୍ଭଠାରୁ ଛାଡ଼ିଗଲେ ଶିରୀ
ସେ ପୁଂଶ୍ଚଳୀ ସ୍ତିରୀ ଏବେ ଗଲା ଦୂରକରି ।
ସହଜରେ ବେଶ୍ୟାମାନେ ଶ୍ରୀମନ୍ତ ଲୋକଙ୍କୁ
ଭଜିଥାନ୍ତି ଧନ ଦେଇ ସୁଖ ଭୁଞ୍ଜିବାକୁ ।
ଧନ ସମ୍ପଦ ବିହୀନ ହୁଅଇ ସେ ଯେବେ
ସେହିକ୍ଷଣି ଛାଡ଼ି ତାକୁ ଯାନ୍ତି ଅନ୍ୟଠାବେ ।
ନୂତନ କାମୁକ ପାଶେ ଗଲାବେଳେ ସେହି
ନିନ୍ଦୁଥାନ୍ତି ପୁରାତନ ସୁହୃଦକୁ ତହିଁ ।
ଯେଉଁଠାରେ ଥିଲେ ହେଲେ ଗତ ହେବା କଥା
ଖୋଜିଲେ ଲେଉଟି ଆଉ ନ ଆସେ ସର୍ବଥା ।
ମୋର ବୋଲ କରି ଏବେ ତୁମ୍ଭେ ଏଥି ଯାଅ
ନାରାୟଣଙ୍କ ସେବାରେ ମନ ଦେଇ ରହ ।
ତାଙ୍କ ପ୍ରସାଦରେ ଲକ୍ଷ୍ମୀ ଲେଉଟି ଆସିବେ
ତାଙ୍କ ବିନା କେହି ତାହା କରି ନ ପାରିବେ ।
ଏହିରୂପେ କହି ବ୍ରହ୍ମା ନାରାୟଣଙ୍କର
କବଚ ସ୍ତୋତ୍ର ପ୍ରଦାନ କଲେ ସେ କାଳର ।
ଆବର ସେ ପୂଜାବିଧି ମନ୍ତ୍ର ଆଦିକରି
ସକଳ ପ୍ରଦାନ କଲେ ମଙ୍ଗଳ ବିସ୍ତାରି ।
ତାହା ଘେନି ପୁରନ୍ଦର ସୁରଗୁରୁଙ୍କ ସହିତେ
ପୁଷ୍କର ତୀର୍ଥରେ ଯାଇ ମିଳିଲେ ତ୍ୱରିତେ ।
ଶ୍ରୀହରିଙ୍କୁ ଉପାସନା କଲେ ସେହିଠାରେ
ବରଷେ ପର୍ଯ୍ୟନ୍ତ ପୁଣି ରହି ନିରାହାରେ ।
ନାନା ପ୍ରକାରେ ସ୍ତୁତିସ୍ତୋତ୍ର ପାଠକଲେ
କେତେ ଦିନ ଅନ୍ତେ ବିଷ୍ଣୁ ପ୍ରସନ୍ନ ହୋଇଲେ ।
ଆଗେ ଉଭାହୋଇ ଦେବ କମଳାରମଣ
ଇଚ୍ଛା ଅନୁରୂପେ ତାଙ୍କୁ କଲେ ବରଦାନ ।

ଲକ୍ଷ୍ମୀଙ୍କ ସ୍ତୋତ୍ର କବଚ ମନ୍ତ୍ର ସହିତରେ
ଦେଲେ ମଧ୍ୟ ତୁଷ୍ଟ ହୋଇ ତାହାଙ୍କ ସୁତରେ ।
ବଇକୁଣ୍ଠେ ଉପସ୍ଥିତ ହେଲେ ତହୁଁ ଯାଇ
କ୍ଷୀର ସାଗର ତଟକୁ ଗଲେ ଶଚୀସାଇଁ ।
କବଚ ଘେନିଣ ସ୍ତୁତି କଲେ ପୁନଃ ପୁନଃ
ତାହା ଜାଣି ପଦ୍ମାଳୟା ହୋଇ ପରସନ୍ନ ।
ସ୍କନ୍ଦଦେଶେ ବିଜେ କଲେ ଅତି ଅନୁରାଗେ
ପରବେଶ ହେଲେ ଇନ୍ଦ୍ର ଯାଇ ବହ୍ନି ମାର୍ଗେ ।
ଶତ୍ରୁ କୁଳ ଜୟ କରି ହୃଷ୍ଟଚିତ୍ତ ମନରେ
ଦେବତାଙ୍କୁ ଘେନି ରାଜ୍ୟ କଲେ ଆନନ୍ଦରେ ।
ବୋଲେ ବନ କ୍ଷେତ୍ରବାସୀ ଆହେ ଦେବ ହରି
ସଂସାର ସାଗର ଗର୍ଭୁ ମୋତେ କର ପାରି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଇନ୍ଦ୍ରଙ୍କର ଲକ୍ଷ୍ମୀପ୍ରାପ୍ତି
ବର୍ଣ୍ଣନେ ନାମ ବିଂଶୋଽଧ୍ୟାୟଃ ।

# ଏକବିଂଶ ଅଧ୍ୟାୟ

## ଲକ୍ଷ୍ମୀଦେବୀଙ୍କର ସ୍ତବାଦ ବିବରଣ

ନାରାୟଣଙ୍କୁ ଅନାଇଁ ନାରଦ ମହର୍ଷି
ପଚାରିଲେ ପୁଣି ମନେ ହୋଇ ମହାତୋଷୀ ।
ବୋଇଲେ ଇନ୍ଦ୍ରଙ୍କୁ ନେଇ ଦେବ ନାରାୟଣ
ଲକ୍ଷ୍ମୀଙ୍କର ଯେଉଁ ସ୍ତୋତ୍ର ମନ୍ତ୍ର କଲେ ଦାନ ।
ତାହାର ସ୍ୱରୂପ ମୋତେ କହ ତପସ୍ୱୀ
ଶୁଣିବା ସକାଶେ ଶ୍ରଦ୍ଧା ହେଉଅଛି ମୋହର ।
ନାରାୟଣ ବୋଇଲେ ମୁଁ କହୁଅଛି ତାହା
ସ୍ଥିର ହୋଇ ଶୁଣ ଆହେ ଋଷିକୁଳନାହା ।
ପୁଷ୍କର ତୀର୍ଥରେ ତପ କରି ସୁରେଶ୍ୱର
ବହୁତ କଷ୍ଟେ ଯାପିରେ ରଜନୀ ବାସର ।
ତାହାଙ୍କର କଷ୍ଟ ଦେଖି ପ୍ରଭୁ ଲକ୍ଷ୍ମୀପତି
ଉପସ୍ଥିତ ହେଲେ ଆସି ସେଠାରେ ଝଟତି ।
ବୋଇଲେ ତପସ୍ୟା ତୁମ୍ଭ ଆହେ ସୁରେଶ୍ୱର
ପ୍ରସନ୍ନ ହୋଇଲି ଏବେ ମାଗ ମୋତେ ବର ।
ଇନ୍ଦ୍ର ତାହା ଶୁଣି ତାଙ୍କ ପାଦରେ ନମିଲେ
ଲକ୍ଷ୍ମୀ ପ୍ରଦାନ କରନ୍ତୁ ବୋଲିଣ ମାଗିଲେ ।
ହେଉ ବୋଲି କହି ପ୍ରଭୁ ଶଙ୍ଖ ଚକ୍ରଧର
କହି ଆରମ୍ଭିଲେ ପୁଣି ସ୍ତବ ମନ୍ତ୍ରଗିର ।
ବୋଇଲେ ଲକ୍ଷ୍ମୀଦେବୀଙ୍କ କବଚକୁ ମୁହିଁ
କହୁଅଛି ଆହେ ଇନ୍ଦ୍ର ଶୁଣ ମନ ଦେଇ ।
ଯାହାଯୋଗେ ଦୂର ହେବ ସବୁ ଶୋକଦୁଃଖ
ପରିଣାମେ ପୁଣି ଉପୁଜିବ ମହାସୁଖ ।
ସକଳ ଐଶ୍ୱର୍ଯ୍ୟଲାଭ ହେବ ଏଥିରେ
ବଶୀଭୂତ ହୋଇବେ ଶତ୍ରୁଗଣ ଅନ୍ତରରେ ।
ଯେତେବେଳେ ଜଳେ ପ୍ଲୁତ ହୋଇଥିଲା ମହୀ
ସ୍ଥାବର ଜଙ୍ଗମେ ତୃଷ୍ଣା ନୋହୁଥିଲେ କାହିଁ ।
ସେ ସମୟେ ନାରାୟଣ ପ୍ରଜାପତିଙ୍କର
ହସ୍ତେ ସମର୍ପଣ କଲେ ଏ କବଚବର ।
ଧାରଣ କରନ୍ତେ ଏହା ସାବିତ୍ରୀଙ୍କ ପତି
ଅକ୍ଳେଶରେ ନିର୍ମିକଲେ ସକଳ ବିଭୂତି ।
ମୁନିମାନେ ଐଶ୍ୱର୍ଯ୍ୟ ସମ୍ପଦ ପାଇଲେ
ତପସ୍ୟାରେ ରତ ହୋଇ ମୁକ୍ତି ଅର୍ଜିଲେ ।
ଏ କବଚରେ ଋଷି ଅଟନ୍ତି ବିଧାତା
ପଂକ୍ତି ଛନ୍ଦ ସ୍ୱୟଂ ପଦ୍ମାଳୟା ଦେବତା ।
ସିଦ୍ଧି ଐଶ୍ୱର୍ଯ୍ୟ ଜୟଲାଭେ ବିନିଯୋଗ
ପୁଣ୍ୟ ଆଦି ସାଧିବ ଏଥିରେ ପ୍ରୟୋଗ ।
ଏହା ପ୍ରଭାବରେ ଲୋକ ଜୟଲାଭ କରେ
ଆଦର ସମ୍ମାନ ପାଏ ଜଗତ ଲୋକରେ ।
ମସ୍ତକେ ବୋଲିବ ସଦା ମସ୍ତକ ରଖନ୍ତୁ
ଶ୍ରୀପ୍ରିୟା କଣ୍ଠଦେଶ ପାଳନ କରନ୍ତୁ ।
ଗ୍ରୀବାକୁ ମହାଲକ୍ଷ୍ମୀ କରନ୍ତୁ ରକ୍ଷଣ
କମଳା ରକ୍ଷା କରନ୍ତୁ ମୋ ବେନି ନୟନ ।
କେଶକୁ କେଶବକାନ୍ତା ପାଳନ କରନ୍ତୁ
କମଳାଳୟା କପାଳ ଦେଶକୁ ରଖନ୍ତୁ ।
ଜଗତଜନନୀ ଦେବୀ ଯେହି ସୁରେଶ୍ୱରୀ
ସ୍କନ୍ଧକୁ ସ୍କନ୍ଦରଞ୍ଜିକା ସମ୍ପଦଦାୟିନୀ ।
ଗୋଲୋକବାସିନୀ ପୃଷ୍ଠଦେଶକୁ ସର୍ବଦା
ସର୍ବାଙ୍ଗକୁ ସେ ପଦ୍ମାଳୟା ସର୍ବପ୍ରଦା ।

ଶ୍ରୀଦେବୀ ମୋହର ଅସ୍ଥିମାଳାକୁ ରଖନ୍ତୁ
ବାହୁଯୁଗଳକୁ ମଧ୍ୟ ପାଳନ କରନ୍ତୁ ।
ପାଦଦ୍ୱୟ ରଖନ୍ତୁ ମୋ ନାରାୟଣ ପ୍ରିୟା
ଅନନ୍ତ ଦେଶକୁ ସ୍ୱାହାଯୁକ୍ତ ପଦ୍ମାଳୟା ।
ମହାଲକ୍ଷ୍ମୀ ରଖନ୍ତୁ ମୋ ସକଳ ଅଙ୍ଗକୁ
ଆଉର ସକଳସ୍ଥାନ ଅନନ୍ତଭାଗକୁ ।
ଏହିରୂପେ ଲକ୍ଷ୍ମୀଙ୍କର କବଚ ପ୍ରକାର
କହିଲି ତୁମ୍ଭ ଆଗରେ ଆହେ ସୁରେଶ୍ୱର ।
ସର୍ବୈଶ୍ୱର୍ଯ୍ୟ ବୋଲି ନାମ ଅଟଇ ଏହାର
ଅଦ୍ଭୁତ ଅଟଇ ଏହି ସଂସାର ମଧ୍ୟର ।
ବିଧି ପ୍ରକାରେ ଗୁରୁଙ୍କୁ ଅର୍ଚ୍ଚନା କରି
ଧାରଣ କରିବ ଭକ୍ତିଭାବ ମନେ ଧରି ।
ଦକ୍ଷିଣ ବାହୁରେ ଅବା କଣ୍ଠ ପ୍ରଦେଶରେ
ଧାରଣ କରିବା ଯୁକ୍ତ ପୁରୁଷ ପକ୍ଷରେ ।
ସ୍ତ୍ରୀପକ୍ଷେ ବାମବାହୁ ମୂଳରେ ଧାରଣ
କରିବା ଉଚିତ ବୋଲି ଜାଣ ସୁରଗଣ ।
ଏହାଯୋଗେ ସବୁଠାରେ ଜୟଲାଭ ହୁଏ
ବାସ କରନ୍ତି କମଳା ସବୁବେଳେ ଗୃହେ ।
କାୟାକୁ ଯେରୂପେ ଛାୟା ଥାଏ ଅନୁସରି
ସେ ରୂପେ ପାଶରେ ଥାନ୍ତି ମହାମାୟାଶିରୀ ।
ଏହି ବଚନ ନ ବୁଝି ଲକ୍ଷ୍ମୀଙ୍କୁ ଯେ ନର
ପୂଜା କରଇ ସକଳ ବୃଥା ହୁଏ ତାର ।
ଶତଲକ୍ଷ ଜପିଲେହେଁ ସିଦ୍ଧ ନୁହେଁ ଏହା
ଏରୂପେ ଇନ୍ଦ୍ରଙ୍କ ଆଗେ କହି ଲକ୍ଷ୍ମୀ ନାହା ।
ସନ୍ତୋଷରେ ପୁଣି ତାଙ୍କୁ ଷୋଡ଼ଶ ଅକ୍ଷର
ମନ୍ତ୍ରଧ୍ୟାନ ସହିତରେ ଦେଲେ ସେ କାଳର ।
ସେ ମନ୍ତ୍ର ଧ୍ୟାନ ସ୍ୱରୂପ କହୁଅଛୁ ଶୁଣ
ଓଁକାର ସେ ମାୟା ମହାକାଳୀ ବୀଜ ପୁଣ ।
ଲକ୍ଷ୍ମୀ କାମ ବୀଜାକ୍ଷର ଅନ୍ତେ ନମଃ ଶବ୍ଦ
ସେ ଅନ୍ତରେ ଚତୁର୍ଥ୍ୟନ୍ତ ମହାଲକ୍ଷ୍ମୀ ପଦ ।
ଆଉର ଚତୁର୍ଥୀ ଯୁକ୍ତ ହରିପ୍ରିୟା ତହିଁ
ରଖିବ ସ୍ୱାହା ପଦକୁ ଶେଷ ଭାଗେ ନେଇ ।
ଏରୂପେ ମନ୍ତ୍ର ନିର୍ମାଣ କରିଣ ଧ୍ୟାନକୁ
ପଢ଼ିବ ତା ପୂର୍ବେ ଯେଉଁ ପ୍ରକାରେ ତାହାକୁ ।
ଆମୂଳ କରିଣ ମୁହିଁ କହିବି ବତାଇ
ଶୁଣ ମନଦେଇ କରି ଆହେ ଶଚୀସାଇଁ ।

ସାମବେଦରେ ଉକ୍ତ ଯେ ତ୍ରୈଲୋକ୍ୟ ଦୁର୍ଲ୍ଲଭ
ସିଦ୍ଧମୁନି ଜନଙ୍କର ଜୀବନର ସବ ।
ଶୁକ୍ଳ ଚମ୍ପକ ତୁଲ୍ୟ ଅଟଇ ବରନ
କାନ୍ତି ବିରାଜଇ ଶରତଚନ୍ଦ୍ର ପ୍ରଭା ସମ ।
ବହ୍ନିଶୁଦ୍ଧ ବସ୍ତ୍ର ଅଙ୍ଗେ ଧରଇ ସୁନ୍ଦର
ଆଉର ବିରାଜମାନ ରତ୍ନ ଅଲଙ୍କାର ।
ଈଷତ ହାସ ମଣ୍ଡିତ ପ୍ରସନ୍ନ ବଦନ
କସ୍ତୁରୀ ସିନ୍ଦୁର ବିନ୍ଦୁ ଲଲାଟେ ଶୋଭନ ।
ଅମୂଲ୍ୟ ରତ୍ନ ରଚିତ ଉଜ୍ଜ୍ୱଳ କୁଣ୍ଡଳ
ପ୍ରଭାରେ ଜାଜ୍ୱଲ୍ୟମାନ ଦିଶେ ଗଣ୍ଡସ୍ଥଳ ।
ସୁନ୍ଦର କବରୀଭାର ମାଳତୀ ମାଳରେ
ତ୍ରୈଲୋକ୍ୟ ଦୁର୍ଲ୍ଲଭ ଶୋଭା ପରକାଶ କରେ ।
ସହସ୍ର ଦଳ କମଳ ମଧ୍ୟେ ବିରାଜିତା
ନମସ୍ତେ ସୁନ୍ଦର ମୂର୍ତ୍ତି ନାରାୟଣ କାନ୍ତା ।
ଆହେ ଦେବରାଜ ଏହି ଲକ୍ଷ୍ମୀଙ୍କର ଧ୍ୟାନ
ପୂଜା ସମୟରେ କରି ଭକ୍ତିରେ ସଘନ ।
ଉପଚାର ଦେଇ ପୁଣି ଷୋଡ଼ଶ ପ୍ରକାର
ପୂଜା କରିବ ମନରେ ହୋଇ ତୋଷଭର
ସେ ଅନ୍ତରେ ସ୍ତୋତ୍ର ପଢ଼ି ପ୍ରାର୍ଥନା କରିବ
ତେବେ ସେ ବାଞ୍ଛିତ ଫଳ ପ୍ରାପତ ହୋଇବ ।
ସ୍ତବର ସ୍ୱରୂପ ମଧ୍ୟ ମୋହଠାରୁ ଶୁଣ
ଅତ୍ୟନ୍ତ ଗୁପତ ତାହା ଅଟଇଟି ଜାଣ ।
ପ୍ରଥମେ ବୋଲିବ ମହାମାୟା ଭଗବତୀ
ଇଚ୍ଛା କରଇ ତୁମ୍ଭଙ୍କୁ କରିବାକୁ ସ୍ତୁତି ।
କିନ୍ତୁ ତୁମ୍ଭର ମହିମା ବର୍ଣ୍ଣିବାକୁ ମୁହିଁ
କେତେବେଳେ ହେଲେ ସମରଥ ହେବନାହିଁ ।
ସୂକ୍ଷ୍ମରୂପା ତେଜୋମୟୀ ଦେବୀ ସନାତନୀ
ବୁଦ୍ଧି ଅଗୋଚର ସର୍ବସମ୍ପଦ ଦାୟିନୀ ।
କାୟ ମନ ବାକ୍ୟ ଅଗୋଚରେ ଅଟ ଦେବୀ
ତୁମ୍ଭ ରୂପ କେହି ଜାଣି ନ ପାରିବ ଭାବି ।
ତ୍ରିବେଦଙ୍କର ତୁମ୍ଭେ ଅଟ ମୂଳହେତୁ
ଭବସ୍ୱରୂପ ସାଗର ତରଣର ସେତୁ ।
ସକଳ ଶସ୍ୟ ଦେବତା ସମ୍ପଦ ଦାୟିନୀ
ଯୋଗୀଜନଙ୍କର ଜ୍ଞାନ ବର୍ଦ୍ଧନ କାରିଣୀ ।
ତୁମ୍ଭଙ୍କୁ ବର୍ଣ୍ଣିବାପାଇଁ ମୋହର ଶକତ
ସମର୍ଥ ନୁହଇ ଦୟାକର ଦୟାବତୀ ।

ତୁମ୍ଭବିନା ଜଗତରେ ସକଳ ପଦାର୍ଥ
ଫଳ ବିହୀନେ ହୁଅଇ ନଷ୍ଟପ୍ରାୟେ ବ୍ୟର୍ଥ ।
ସ୍ତନ୍ୟପାୟୀ ବାଳକର ମାତାଠାରେ ମନ
ଯେଉଁରୂପେ ଅତିଶୟ ହୋଇଥାଏ ମଗ୍ନ ।
ସେରୂପେ ଜଗତ ପ୍ରାଣୀ ତୁମ୍ଭର ଦୟାରେ
ସର୍ବଦା ରହିଅଛନ୍ତି ବିନଷ୍ଟ ଭାବରେ ।
ପ୍ରସନ୍ନ ହୋଇଣ ଦେବୀ ଜଗତ ଜନନୀ
ଆମ୍ଭଙ୍କୁ ରକ୍ଷା କରନ୍ତୁ ଦୟା ମନେ ଘେନି ।
ତୁମ୍ଭ ପାଦପଦ୍ମ ତଳେ ପଶୁଛୁ ଶରଣ
ଆମ୍ଭଙ୍କୁ କର ଏ ଘୋର ସଂସାରୁ ତାରଣ ।
ନମଃ ଶକ୍ତିସ୍ୱରୂପିଣୀ ଜ୍ଞାନବୁଦ୍ଧି ଦାତ୍ରୀ
ସର୍ବପାପ ସଂହାରଣୀ ଦେବୀ ଜଗଦ୍ଧାତ୍ରୀ ।
ହରିଭକ୍ତି ମୁକ୍ତିମାର୍ଗ ଦର୍ଶନକାରିଣୀ
ନମସ୍ତେ ଶ୍ରୀମହାଲକ୍ଷ୍ମୀ ଦୁଃଖ ସଂହାରିଣୀ ।
ପୁତ୍ର ଯେବେ ଦୋଷ କରିଥାଏ ମାତାଠାରେ
ତାହାକୁ ମାତା କି କେବେ ତ୍ୟାଗ ଦେଇ ପାରେ ।
ଯେହ୍ନମନ୍ତେ ମାତା ମୁହିଁ ତୁମ୍ଭର ସନ୍ତାନ
ମୋହଗ୍ରସ୍ତ ନୁହ କେବେ ହେଲେ ଦୟାଶୂନ୍ୟ ।
ଦରଶନ ଦିଅ ମୁହିଁ ତୁମ୍ଭର ସନ୍ତାନ
ମୋହଗ୍ରସ୍ତ ନୁହ କେବେ ହେଲେ ଦୟାଶୂନ୍ୟ ।
ଦରଶନ ଦିଅ ମୁହିଁ ହୋଇଛୁ କାତର
ତୁମ୍ଭବିନା ଗତି ନାହିଁ ଜଗତ ମଧ୍ୟର ।
ଆହେ ବତ୍ସ ଏହିପରି ଲକ୍ଷ୍ମୀଙ୍କର ସ୍ତୋତ୍ର
ଭୁକ୍ତିଦ ମୋକ୍ଷଦ ପୁଣି ଅଟଇ ପବିତ୍ର ।
ଏ ମହାସ୍ତୋତ୍ରକୁ ପୂଜାକାଳରେ ଯେ ପଢ଼େ
ନିଶ୍ଚୟ ତାହାର ଧନ ଅଇଶ୍ୱର୍ଯ୍ୟ ବଢ଼େ ।
ଏରୂପେ କହି ଶ୍ରୀହରି ଅନ୍ତର୍ଦ୍ଧାନ ହେଲେ
କ୍ଷୀରସାଗର ତଟକୁ ଇନ୍ଦ୍ର ଚଳିଗଲେ ।
ମନଦେଇ ଲକ୍ଷ୍ମୀନାରାୟଣଙ୍କ ପାଦରେ
ବିରଚିଲା ଘନ କ୍ଷେତ୍ରମୋହନ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଲକ୍ଷ୍ମୀଦେବୀଙ୍କର ସ୍ତବାଦି
ବିବରଣ କଥନେ ନାମ ଏକବିଂଶୋଽଧ୍ୟାୟଃ ।

# ଦ୍ୱାବିଂଶ ଅଧ୍ୟାୟ

## ଇନ୍ଦ୍ରଙ୍କର ମହାଲକ୍ଷ୍ମୀଙ୍କ ଦ୍ୱାରା ସମ୍ପଦ ଲାଭ

ଏଥୁ ଅନନ୍ତରେ କଥା ଶୁଣ ମୁନିବର
ଦେବତାମାନଙ୍କୁ ସଙ୍ଗେ ଘେନି ପୁରନ୍ଦର ।
ବୃହସ୍ପତିଙ୍କୁ ଆଗରେ ଚଳାଇଣ ଗଲେ
କ୍ଷୀରସମୁଦ୍ର ତଟରେ ପ୍ରବେଶ ହୋଇଲେ ।
ରତ୍ନଗୁଟିକା ସହିତେ କବଚକୁ ଗଳେ
ଧାରଣ କରିଣ ସ୍ତୁତି ପଠନ ଯେ କଲେ ।
ଭକତିଭରେ ସକଳ ଦେବତା ଯେପରି
ଚିନ୍ତିଲେ ଲକ୍ଷ୍ମୀଙ୍କୁ ମନେ ଭକ୍ତିଭାବ ଧରି ।
ତାହା ଜାଣି ମହାଲକ୍ଷ୍ମୀ ସେହିକ୍ଷଣି ଆସି
ଦେଖାଇଲେ ଆପଣାର ରୂପ ପରକାଶି ।
ଶରତଚନ୍ଦ୍ର ସମାନେ ତାହାଙ୍କର କାନ୍ତି
ଶତଦଳ ପଦ୍ମ ପରେ ବିଜେ କରିଛନ୍ତି ।
ତେଜରେ ଦିଶଇ ବୃହଦଗ ସମୁଜ୍ଜ୍ୱଳ
ବିରାଜଇ ଚନ୍ଦ୍ରପରି ଶ୍ରୀମୁଖ ମଣ୍ଡଳ ।
ଦେବତାଙ୍କୁ ଅନାଇଣ ତିନିଲୋକ ମାତ
କହିଲେ ବଚନ ଯାହା ଅଟେ ସତ୍ୟାନ୍ୱିତ ।
ବୋଇଲେ ହେ ଦେବଗଣ ତୁମ୍ଭ ଗୃହେ ମୁହିଁ ।
ପ୍ରବେଶ ହୋଇବା ପାଇଁ ଇଚ୍ଛା କରୁ ନାହିଁ ।
ଯେଣୁ ସକାଶୁ ବ୍ରହ୍ମଶାପ ପାଇ ତୁମ୍ଭଠାରୁ
ଭ୍ରଷ୍ଟ ହୋଇଛନ୍ତି ଦ୍ୱିଜବାକ୍ୟ ହୋଇ ଥାରୁ ।
ବ୍ରାହ୍ମଣମାନେ ମୋହର ପ୍ରାଣର ସମାନ
ପୁତ୍ରରୁ ଅଧିକ ସ୍ନେହପାତ୍ର ବୋଲି ଜାଣ ।
ବ୍ରାହ୍ମଣଙ୍କଠାରୁ ଯାହା କରନ୍ତି ଆମ୍ଭେମାନେ
ନଇବେଦ୍ୟରୂପେ ପ୍ରାଇଥାନ୍ତି ପ୍ରତିଦିନେ ।
ଯଜ୍ଞାନ୍ତରେ ଯେବେ ଦ୍ୱିଜ କହିବେଟି ମୋତେ
ତୁମ୍ଭମାନଙ୍କ ଗୃହକୁ ଯିବି ତୋଷଚିତ୍ତେ ।
ବ୍ରାହ୍ମଣେ ଯଦ୍ୟପି କ୍ରୋଧ କରିବେ ମୋଠାରେ
ଅପୂଜ୍ୟ ହୋଇବି ମୁହିଁ ଜଗତ ମଧ୍ୟରେ ।

ବ୍ରାହ୍ମଣ ଶାପକୁ ପ୍ରଭୁ ସ୍ୱୟଂ ନାରାୟଣ
ନମ୍ର କରିଣ ସର୍ବଦା ରହିଥାନ୍ତି ଜାଣ ।
ଏହିରୂପେ ମହାଲକ୍ଷ୍ମୀ ଦେବୀଙ୍କ ଆଗରେ
କହୁଥିଲେ କଥା ବସି ନାନା ପରକାରେ ।
ବ୍ରାହ୍ମଣମାନେ ସେଠାରେ ଉପସ୍ଥିତ ହେଲେ
ବ୍ରହ୍ମ ତେଜରେ ସମସ୍ତ ପୂର୍ଣ୍ଣ ହୋଇଥିଲେ ।
ସେମାନଙ୍କ ନାମ ଶୁଣ କହୁଅଛି ମୁହିଁ
ଅଙ୍ଗିରା ପ୍ରଚେତା ବ୍ରହ୍ମ ଭୃଗୁ ଋଷିସାଇଁ ।
ପୁଲହ ପୁଲସ୍ତ୍ୟ ଅତ୍ରି ମରୀଚି କପିଳ
ସନକ ସନନ୍ଦ ସନାତନ ତପଶୀଳ ।
ସନତ୍‌କୁମାର ବୋଢ଼ୁ ପଞ୍ଚଶିଖ ମୁନି
ଆସୁରି ଦୁର୍ବାସା ଗଉତମ ମହାଜ୍ଞାନୀ ।
କଶ୍ୟପ ଅଗସ୍ତ୍ୟ କଣ୍ୱ ପାଣିନି ବଶିଷ୍ଠ
କଣାଦ ଲୋମଶ କାତ୍ୟାୟନ ଋଷିଶ୍ରେଷ୍ଠ ।
ମାର୍କଣ୍ଡେୟ ଆଦିକରି ସକଳ ବ୍ରାହ୍ମଣ
ଆସିଲେ ବିବିଧ ପୂଜା ଦ୍ରବ୍ୟକୁ ଘେନିଣ ।
ଦେବଙ୍କ ସଙ୍ଗରେ ମିଶି ମହାଲକ୍ଷ୍ମୀଙ୍କର
ଉପାସନା ଆରମ୍ଭିଲେ ହୋଇ ତତପର ।
ସ୍ତବ କବଚ ପଢିଣ ବୋଇଲେ ଈଶ୍ୱରୀ
ଦେବଙ୍କର ଭୁବନକୁ ଆସ ଦୟାକରି ।
ତାହା ଶୁଣି ମହାଲକ୍ଷ୍ମୀ ହରଷିତା ହେଲେ
ଦେବ ବ୍ରାହ୍ମଣଙ୍କ ସନ୍ଧିଁ ବଚନ କହିଲେ ।
ବୋଇଲେ ଦ୍ୱିଜଙ୍କ ଆଜ୍ଞା ପାଇକରି ମୁହିଁ ।
ନିର୍ଭୟ ହୋଇଲ ଆହେ ଦେବେ କହୁଥାଇ ।
ଏବେ ତୁମ୍ଭମାନଙ୍କର ଗୃହେ ପରବେଶ
ହୋଇବି ନିଶ୍ଚୟ ମନେ ନ ହୁଅ ବିରସ ।
ଆହେ ଦ୍ୱିଜଗଣ ତୁମ୍ଭ ଆଜ୍ଞା ପରମାଣେ
ଦେବଙ୍କ ଗୃହରେ ବାସ କରିବି ସୁମନେ ।
କେବଳ ଯେଉଁମାନଙ୍କ ଗୃହକୁ ନ ଯିବି
ସେ କଥା କହୁଛି ମାନସରେ ଥାଅ ଭାବି ।
ଯାହାଠାରେ ପିତାମାତା ଗୁରୁ ବନ୍ଧୁଜନ
ଅସନ୍ତୋଷ ପ୍ରକାଶିଣ ହୋଇଥିବେ ବିମନ ।
ସେମାନଙ୍କ ଗୃହେ ରହିବାକୁ କେବେ ମୁହିଁ
ମାନସରେ ଥରେ ହେଲେ ବିଚାରିବି ନାହିଁ ।
ମିଥ୍ୟାବାଦୀ ନାସ୍ତିକ ଯେ କୃତଘ୍ନ ପାମର
ସତ୍ୟହୀନ ଦୟାଶୂନ୍ୟ ଦୁଃଶୀଳ ଯେ ନର ।

ତାହା ପାଶେ ରହିବାକୁ ମୋହର ମାନସ
ନ ବଳିବ ଜାଣ ଆହେ ଯାଜକ ତ୍ରିଦଶ ।
ଶିନା ଦମ୍ଭ ଶନ୍ତ୍ରୀଡ଼ା ଗ୍ରସ୍ତ ଯେ ଅଟଇ
ଅଥବା ଅତି କୃପଣ ଋଣୀ ହୋଇଥାଇ ।
ତାହାଙ୍କ ମନ୍ଦିରେ ମୁହିଁ ନରହିବି କ୍ଷଣେ
ଗୃହକରି ନିଶ୍ଚେ ଚଳିଯିବି ଅନ୍ୟସ୍ଥାନେ ।
ପାଷାଣ୍ଡହୀନ ମନ୍ଦବୁଦ୍ଧି କାମିମା ଲମ୍ପଟ
ଅଟଇ ଯେ ମନେରଖ ସର୍ବଦା କପଟ ।
ତାହାଙ୍କ ଘରେ ପୂର୍ବରୁ ଥିଲେ ହେଲେ ମୁହିଁ
କ୍ଷଣକ ମଧ୍ୟରେ ଯିବି ଅନ୍ତର୍ଦ୍ଧାନ ହୋଇ ।
ବେଶ୍ୟାପୁଅର ଘରକୁ ଯିବାପାଇଁ ମୋର
ମନ ନ ବଳିବ କେବେ ଜାଣ ସର୍ବସୁର ।
ଯାହା ଘରେ ନିରନ୍ତର ହେଉଥିବ କଳି ।
ପ୍ରଳୟ ହୋଇଥିବେ ସ୍ତ୍ରୀ ସ୍ୱ ତୁଣ୍ଡକୁ ବଳି ।
ତାହା ପାଶେ କେବେ ମୁହିଁ ନ ରହିବି ଜାଣ
ଯେଉଁ ଗୃହେ ନୋହୁଥିବ ଶ୍ରୀହରି ପୂଜନ ।
ଅଥବା ଦେବତାଙ୍କର ଅର୍ଚ୍ଚନା ବିଧି
ନ ହେଉଥିବ ଯେବଣ ଗୃହେ ନିରବଧି ।
ସେହି ଗୃହମାନଙ୍କରେ ମୋହର ବସତି
ନ ହୋଇବ ଜାଣ ଆହେ ଦେବମୁନି ଯତି ।
ଯେଉଁ ଲୋକ କନ୍ୟା ଅବା ବେଦ ବିକୁଥାଇ
ଅଥବା ଯେ ନରଘାତୀ ହିଂସକ ଅଟଇ ।
ନରକ ସଦୃଶ ଅଟେ ତାହାଙ୍କର ଘର
ସେଠାରେ କଦାପି ବାସ ନୋହିବ ମୋହର ।
ମାତା ପିତା ଭାର୍ଯ୍ୟା ଗୁରୁପତ୍ନୀ ଗୁରୁସୁତ
ଅନାଥା ଭଗିନୀ କନ୍ୟା ଅନ୍ୟାନ୍ୟ ଆଶ୍ରିତ ।
ଏମାନଙ୍କୁ ଯେଉଁଲୋକ କୃପଣ ଭାବରେ
ନ ପୋଷିବ ମୁହିଁ ନ ରହିବି ତାହା ଘରେ ।
ବସନ ଦନ୍ତ ଯାହାର ଅଟେ ମଳଯୁକ୍ତ
ମସ୍ତକ ଅଟଇ ରୂକ୍ଷ ବଦନ ବିକୃତ ।
ଗ୍ରାସ ହାସର ନିୟମ ନ ଥାଏ କଣ୍ଠରେ
ମୁହିଁ ନ ରହିଲି କେବେ ତାହାଙ୍କ ଅଗାରେ ।
ମଳମୂତ୍ର ତ୍ୟାଗକରି ଯେ ତାହାକୁ ଗୃହେଁ
ଅଥବା ପାଦ ଧୋଇଣ ନ ପୋଛି ତା ଶୁଏ ।
ତାହା ମନ୍ଦିରକୁ ମୁହିଁ ନ ଯାଏ କଦାପି
ପାପୀଙ୍କ ମଧ୍ୟେ ଯେ ଲୋକ ଅଟେ ମହାପାପୀ ।

ସନ୍ଧ୍ୟା ଦିବସରେ ଯେବୁ ଶୟନ କରଇ
ତାହା ମନ୍ଦିରକୁ ମୁହିଁ କେବେ ନ ଯାଇ ।
ପ୍ରଥମରୁ ତୈଳ ଯେବେ ମସ୍ତକ ଉପରେ
ଅନ୍ୟଅଙ୍ଗରେ ଲେପନ କରେ ଯେ ଅନ୍ତରେ ।
ପ୍ରଣାମ କରଇ ଅବା କୁସୁମ ତୋଳଇ
ତାହା ନିକଟରେ ମୁହିଁ ଦଣ୍ଡେ ନ ରହଇ ।
ଯେଉଁ ଲୋକ ନଖ ଯେବେ ତୃଣ ଛିନ୍ନ କରେ
ନୋହିଲେ ବା ଗାରକାଟେ ପୃଥ୍ୱୀ ଉପରେ ।
ଦେହରେ ପାଦରେ ଅବା ଜଳ ନ ଧୋଇଇ
ତାହାଘରେ କେବେହେବେଳେ ନ ରହଇ ମୁହିଁ ।
ଦମ ଦମ ବୋଲି ପାରେ ଟାଣୁଆ ବଚନ
ନ ପାରଇ ହୋଇ ତାକୁ ମୁହିଁ ତ ପ୍ରସନ୍ନ ।
ଜାଣି ଜାଣି ଯେଉଁ ଲୋକ ଦେବ ବିପ୍ରଧନ
ହରଣ କରେ ନଅଇ ହୋଇ ଲୋଭମନ ।
କର୍ମ କରଇ ଦକ୍ଷିଣା ନ ଦିଅଇ ଲୋଭେ
ତାହା ଘରେ ମୁହିଁ ବାସ ନ କରଇ କେବେ ।
ମନ ବିଦ୍ୟାରେ ଜୀବନ ବୃତ୍ତି ଯେ କରଇ
ପୁରୋହିତ ଶକସ୍ରକ କାର୍ଯ୍ୟେ ଅବା ଥାଇ ।
ଅଥବା ଦେବଳ ସୂପକାର ହୋଇଥାଏ
ତା ଘରେ ନ ରହେ ମୁହିଁ ଆହେ ଦେବତାଏ ।
ବିବାହ କର୍ମକୁ ଭଗ୍ନ କରେ ଯେଉଁ ମୂର୍ଖ
ଅଥବା ଯେ ଦିବସରେ ଭୋଗେ ରତିସୁଖ ।

ତାହା ଘରେ ନ ରହଇ କ୍ଷଣମାତ୍ର ମୁହିଁ
ଯେତେ ଆରାଧନା କଲେ ଯାଏ ଅନ୍ତହୋଇ ।
ଯତ୍ନକରି ରଖେ ନାହିଁ ଘରେ ଯେଉଁ ଜନ
ଘର ଶିଶୁ ଦେଖି ଘାଣ୍ଟି ହୁଏ ଯାର ମନ ।
ଘରକୁ ଆଘାତ କରେ ଯେବୁ ବାକ୍ୟରେ
ରହେନାହିଁ କେବେହେଲେ ମୁହିଁ ତା ପାଖରେ ।
ଏମନ୍ତ କହିଣ ଲକ୍ଷ୍ମୀ ଅନ୍ତର୍ଦ୍ଧାନ ହେଲେ
ଦେବତାଙ୍କ ଗୃହେ କଳାମାନେ ପ୍ରବେଶିଲେ ।
ଆବର ମର୍ତ୍ତ୍ୟ ଲୋକରେ ହେଲେ ଉପସ୍ଥିତ
ଯେ ସକାଶୁ ସ୍ୱର୍ଗ ମର୍ତ୍ତ୍ୟ ଦିଶିଲା ଶୋଭିତ ।
ଆନନ୍ଦ ମନରେ ଦେବ ଋଷିଏ ସମସ୍ତେ
ନିଜ ନିଜ ମନ୍ଦିରକୁ ଚଳିଲେ ତ୍ୱରିତେ ।
ଦେବଗଣ ସ୍ୱର୍ଗପୁରେ ହେଲେ ପରବେଶ
ଦେଖିଲେ ଧନ ଧାନ୍ୟରେ ପୂରିଅଛି ଦେଶ ।
ଯେ ସକାଶୁ ନାନାବିଧ ଉତ୍ସବ କରାଇ
ପୁଷ୍ପ ବରଷିଲେ କ୍ଷୀର ସିନ୍ଧୁ ମଧେ ନେଇ ।
ଏରୂପେ ମହାଲକ୍ଷ୍ମୀଙ୍କ ଚରିତ ଆଖ୍ୟାନ
ଶୁଣିଲ ତ ଭଲରୂପେ ଆହେ ତପୋଧନ ।
ଆଉ କେଉଁ କଥା ଶୁଣିବାକୁ ଯେବେ ଇଚ୍ଛା
ଅଛି ତା କହିବା ଏବେ କର ବସି ପୃଚ୍ଛା ।
ଏମନ୍ତ କହି ଯେ ନାରାୟଣ ମୁନିବର
ମଉନେ ରହିଲେ ଗୀତେ କହେ କ୍ଷେତ୍ରଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଇନ୍ଦ୍ରଙ୍କର ମହାଲକ୍ଷ୍ମୀଙ୍କ ଦ୍ୱାରା ସମ୍ପଦ
ଲାଭ କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—*—

## ତ୍ରୟୋବିଂଶ ଅଧ୍ୟାୟ

### ଗଣେଶଙ୍କର ଏକଦନ୍ତ ବୃତ୍ତାନ୍ତ ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ମହାମତି
ହରିଙ୍କ ବଂଶେ ଆପଣ ଜନମି ଅଛନ୍ତି ।
ଗଣେଶ ଚରିତ କଥା ଆପଣଙ୍କଠାରୁ
ଶୁଣିଣ ସଂଶୟ ଦୂର ହୋଇଲା ମନରୁ ।
ଏବେ ଆଉ କଥାଟିଏ କହିନ୍ତୁ ବତାଇ
ଶ୍ରଦ୍ଧା ହେଉଅଛି ମୋର ଶୁଣିବାର ପାଇଁ ।
ଗଣେଶଙ୍କ ପିଣ୍ଡେ ଗଜମୁଣ୍ଡ ଆଣିକରି
ଯୁକ୍ତ କରାଇଲେ ଯେତେବେଳେ ନରହରି ।

ଦୁଇଗୋଟି ଦନ୍ତ ତାହିଁ ଥିଲା ତ ନିଶ୍ଚଳେ
କାହିଁକି ସେ ଅବା ଏକଦନ୍ତ ବୋଲାଇଲେ ।
ଆଉ ଏକଦନ୍ତ କାହିଁ ଗଲା ତାହାଙ୍କର
ବତାଇଣ ଏହା ମୋତେ କହ ମୁନିବର ।
ତାହା ଶୁଣି ନାରାୟଣ ବୋଇଲେ ସେ କଥା
କହୁଅଛି ମନଦେଇ ଶୁଣ ସାରକଥା ।
ଇତିହାସ ସିଦ୍ଧ ଏହା ପୁରାଣ ଚରିତ
ଶୁଣିଲେ ଖଣ୍ଡିତ ହେବ ଅଶେଷ ଦୁରିତ ।

ଏକଦିନେ କାର୍ତ୍ତବୀର୍ଯ୍ୟ ନାମେ ନରପତି
ମୃଗୟା କରିବାପାଇଁ ବାହାରିଣ ସତି ।
ବନମଧ୍ୟେ ପରବେଶ ହୋଇଲେ ବେଗେ ଯାଇ
ବହୁତ ମୃଗଙ୍କୁ ଶରେ ବଧ କଲେ ସେହିଁ ।
ଦିବସ ଶେଷରେ ନିଶା ହୋଇଲା ପରବେଶ
ରହିଲେ ସେହି ବନରେ ନରଙ୍କର ଈଶ ।
ସେହିଠାରେ ଯମଦଗ୍ନି ମୁନିଙ୍କ ଆଶ୍ରମ
ଅଳପ ଦୂରରେ ହୋଇଥିଲା ମନୋରମ ।
ସୈନ୍ୟ ସହିତରେ ରାଜା ସେ ଆଶ୍ରମ ପାଖେ
ଯାପନ କଲେ ସେ ନିଶା ରହି ମହାସୁଖେ ।
ପ୍ରଭାତ ହେବାରୁ ଶେଯ୍ୟା ତ୍ୟାଗ କରିଥିଲେ
ନଦୀଜଳେ ସ୍ନାନ ସନ୍ଧ୍ୟା ତରପଣ କଲେ ।
ଦତ୍ତାତ୍ରେୟ ଦେଇଥିବା ମନ୍ତ୍ର ମହାମନ୍ତ୍ର
ଜପକଲେ ବସି ପୁଣି ହୋଇଣ ସ୍ୱତନ୍ତ୍ର ।
ଯମଦଗ୍ନି ମୁନିବର ସେହି ସମୟରେ
ସ୍ନାନ କରୁଥିଲେ ମଧ୍ୟ ସେ ସରିତ ନୀରେ ।
ନୃପତିଙ୍କୁ ଦେଖିକରି ହୋଇ ଆନନ୍ଦିତ
ପଚାରିଲେ ନାନାମତେ କୁଶଳ ବୃତ୍ତାନ୍ତ ।
ପ୍ରଣାମ କରିଣ ରାଜା ମୁନିଙ୍କ ପଦରେ
ଭକ୍ତହୋଇ କରଯୋଡ଼ି ବିନୟ ଭାବରେ ।
ଆପଣା କୁଶଳ କଥା ନିବେଦନ କଲେ
ଆଜ ମୋର ପୂର୍ବତପ ଫଳିଲା ବୋଇଲେ ।
ଆବର ବୋଇଲେ ମୁହିଁ ମୃଗୟା ଇଚ୍ଛାରେ
ସୈନ୍ୟ ସେନ ଉପସ୍ଥିତ ହେଲି ଏ ବନରେ
ନିଶାମୁଖ ହେବାଯୋଗୁଁ ବୃକ୍ଷମୂଳେ ରହି
ରଜନୀ ଯାପନ କଲି ହେ ମୁନି ଗୋସାଇଁ ।
ସ୍ନାନ କରିବାକୁ ଏହିଠାକୁ ଆସିଥିଲି
ଭାଗ୍ୟବଳେ ଆପଣଙ୍କ ଦର୍ଶନ ପାଇଲି ।
ତାହା ଶୁଣି ମୁନିବର ସନ୍ତୁଷ୍ଟ ହୋଇଲେ
ଆମନ୍ତ୍ରଣ କରି ତାଙ୍କ ଆଶ୍ରମକୁ ଗଲେ ।
ଭାବିଲେ ରାଜାଙ୍କୁ ମୁଁ ତ କଲି ଆମନ୍ତ୍ରଣ
ସତ୍କାର ନ କଲେ ଲଜ୍ଜା ପାଇବି ସେ ପୁଣ ।
ଏମନ୍ତ ବିଚାରି କାମଧେନୁଙ୍କୁ ମହର୍ଷି
କହିଲେ ସେକାଳେ ସବୁ ବୃତ୍ତାନ୍ତ ବିଶେଷି ।
ଧେନୁ ବୋଇଲେ ହେ ମୁନି ନ ହୁଅ କାତର
ମୁହିଁ ଥିବାଠାରେ କିବା ଅଭାବ ତୁମ୍ଭର ।

ଉତ୍ତମ ସତ୍କାରେ ଆଜ ରାଜାଙ୍କୁ କରିବ
ସେ ଯାହା ମାଗିବ ତାହା ଆଣି ତାଙ୍କୁ ଦେବ
ତୁମ୍ଭ ପ୍ରସାଦରେ ଯେତେ ଦୁର୍ଲ୍ଲଭ ପଦାର୍ଥ
ଆଣି ଦେବାପାଇଁ ମୁହିଁ ଅଟଇ ସମର୍ଥ ।
ଏମନ୍ତ କହି ସୁରଭି ନିଜ ପ୍ରଭାବରେ
ନାନାବିଧ ଦ୍ରବ୍ୟ ଅଣାଇଲେ ସେ ସତ୍ୱରେ ।
ସୁବର୍ଣ୍ଣ ରଜତମୟ ଭୋଜନ ଭାଜନ
ଗଦାକରି ଦେଲେ ଆଣି ପର୍ବତ ସମାନ ।
ସେହି ଅନ୍ନ କୂପେ ପାକପାତ୍ର ଅପ୍ରମିତ
ରଖାଇଲେ ପାକଶାଳେ ହୋଇଣ ଜାଗ୍ରତ ।
ପକ୍ୱ ପରିଷ୍କୃତ ଖାଦ୍ୟପେୟ ସ୍ଥାନେ ସ୍ଥାନେ
ଯୋଗାଇ ରଖିଲେ ପୁଣି ହରଷିତ ମନେ ।
ନାରିକେଳ ପକ୍ୱରମ୍ଭା ଶ୍ରୀଫଳ ପନସ
ଚୂତାଦି ଫଳମାନ ଆଣିଲେ ବିଶେଷ ।
ଲଡ଼୍ଡୁ ପିଷ୍ଟକ ଅନ୍ନ ବ୍ୟଞ୍ଜନ ଆମିଷ
ଦ୍ରବ୍ୟମାନ ରଖାଇଲେ ଆହେ ମୁନିଈଶ ।
ଯବ ଗୋଧୂମ ପିଷ୍ଟକ ଦଧି ଦୁଗ୍ଧ ଘୃତ
ଅଣାଇ ରଖିଲେ ଯଥା ସ୍ଥାନରେ ବହୁତ ।
ଶର୍କରା ମୋଦକ ପ୍ରପାନକ କେତେ ସ୍ଥାନେ
ଥୋଇଲେ ଅଣାଇ ରୌପ୍ୟ ସୁବର୍ଣ୍ଣ ଭାଜନେ
କର୍ପୂର ଚନ୍ଦନ ମିଶା ତାମ୍ବୁଳ ସଜାଡ଼ି
ଥୋଇଲେ ସୁବର୍ଣ୍ଣ ପାତ୍ରମାନଙ୍କରେ ବାଢ଼ି ।
ରାଜଯୋଗ୍ୟ ଅଳଙ୍କାର ବସ୍ତ୍ର କୋଟି କୋଟି
ବାସ ଗୃହମାନଙ୍କରେ କରାଇଲେ ଗୋଟି ।
ଏମନ୍ତ ସମ୍ଭାର ଦେଖି ଯମଦଗ୍ନି ମୁନି
ସୈନ୍ୟ ସହିତେ ରାଜାଙ୍କୁ ଡକାଇ ସେ କ୍ଷଣି ।
ରହିବା ପାଇଁକି ସେହି ଦ୍ରବ୍ୟପୁରେ ନେଇ
ବସା ଦେଇଣ କହିଲେ ପ୍ରୀତିମନ୍ତ ହୋଇ ।
ବୋଇଲେ ରାଜନ ତୁମ୍ଭେ ଇଚ୍ଛା ଅନୁସାରେ
ଏ ସମସ୍ତ ଦ୍ରବ୍ୟ ଭୋଗ କର ଆନନ୍ଦରେ ।
ତାହାଶୁଣି ରାଜା ନିଜ ଅନୁଚର ତୁଲେ
ମହାସୁଖେ ସେ ଦୁର୍ଲ୍ଲଭ ଭବନେ ରହିଲେ ।
ଶୈଶବ କାଳରୁ ଯେଉଁ ଯେଉଁ ଦ୍ରବ୍ୟମାନ
କରି ନ ଥିଲେ ସେ ନିଜ ଚକ୍ଷୁରେ ଦର୍ଶନ ।
ସେ ସକଳ ଦ୍ରବ୍ୟ ସେହିଠାରେ ଦେଖି କରି
ବିସ୍ମୟ ରସରେ ମଗ୍ନ ହେଲା ଦଣ୍ଡଧାରୀ ।

ମନ୍ତ୍ରୀଙ୍କ ପାଶକୁ ଯାଇ ବୋଇଲେ ଯାଦବ
ଏହିଠାରେ ପୂର୍ଣ୍ଣ ହୋଇଅଛି ଯେତେ ଦ୍ରବ୍ୟ ।
ଦୁର୍ଲ୍ଲଭ ଅଶ୍ରୁତପୂର୍ବ ଅଟଇ ସବୁ ଏହି
ଏମନ୍ତ ପଦାର୍ଥ କାହିଁ ନ ଦେଖିଛି ମୁହିଁ ।
କେଉଁଠାରୁ ଏହାସବୁ ଅଣାଇଲେ ମୁନି
ଆଲୋଚନା କର ତୁମ୍ଭେ ନ ହୋଇଣ ତୁନି ।
ନୃପଙ୍କ ଆଦେଶ ଶିରେ ଘେନି ମନ୍ତ୍ରୀବର
ଅନ୍ୱେଷଣ କଲେ ବୁଲି ବୁଲି ସେ ସ୍ଥାନର ।
ଋଷିଙ୍କ ଆଶ୍ରମ ସବୁଆଡ଼ରେ ବୁଲିଲେ
ପୁଣି ଆସି ରାଜାଙ୍କର ଆଗେ ଜଣାଇଲେ ।
ବୋଇଲେ ଆହେ ରାଜନ ଆଶ୍ରମରେ ବୁଲି
ମୁନିଙ୍କର ଗୃହ ସବୁ ଦେଖି ଦେଖି ଗଲି ।
ଯଜ୍ଞକୁଣ୍ଡ ହୋମକାଷ୍ଠ କୁଶ ପୁଷ୍ପଫଳ
ମୃଗଚର୍ମ ସ୍ରୁବ ସ୍ରୁଚେ ହୋଇଛି ସଙ୍କୁଳ ।
ଯାଗ ଯୋଗ୍ୟ ନାନା ଶସ୍ୟ ପୂରି ରହିଅଛି
ଏଥୁ ଅନ୍ୟ ଦ୍ରବ୍ୟ କାହିଁ ଦେଖାନାହିଁ କିଛି ।
ବସିଛନ୍ତି ମୁନିଙ୍କର ପାଶେ ଶିଷ୍ୟଗଣ
ସମସ୍ତେ ବଲକଲଧାରୀ ହିଂସା ରାଗ ଶୂନ୍ୟ ।
ସ୍ତ୍ରୀମାନେ ମଧ୍ୟ ପିନ୍ଧି ବଲ୍କଲ ବସନ
କାହା ଦେହେ ଅଳଙ୍କାର ନାହିଁ କିଛି ଜାଣ ।
ବାଳକମାନେ ମସ୍ତକେ ବହି ଜଟାଭର
ତପସ୍ୱୀ ବେଶରେ ଦିଶୁଛନ୍ତି ମନୋହର ।
କେବଳ ଦେଖିଲି ଏକସ୍ଥାନେ ଗାଈଟିଏ
ବନ୍ଧା ହୋଇଅଛି ଆହେ ନରଙ୍କର ସ୍ୱୟେ ।
କପିଳ ବରନ ତାର ଚନ୍ଦ୍ରତୁଲ୍ୟ କାନ୍ତି
ରକ୍ତ ପଙ୍କଜ ପରାୟେ ନୟନ ଦିଶନ୍ତି ।
ସକଳ ଗୁଣ ଆଧାର ଅଟଇ ସେ ଗାଈ
ଦେବତା ସମାନ ତେଜ ବହିଅଛି ସେହି ।
ସେହି ଧେନୁ ପ୍ରଭାବରେ ଏ ଦ୍ରବ୍ୟ ସକଳ
ଆମ୍ଭଙ୍କୁ ଦେଲେଟି ଯମଦଗ୍ନି ତପଶୀଳ ।
ଯେବେ ସେହି ଗାଈଟିକୁ ଆମ୍ଭେ ନେଇପାରେ
ବହୁତ କାର୍ଯ୍ୟ ଆମ୍ଭର ହେବ କଷ୍ଟପୁରେ ।
ଏହିରୂପେ ମନ୍ତ୍ରୀମୁଖୁ ଶୁଣି ନରପତି
ସୁବର୍ଣ୍ଣର ଗାଡ଼ି କେଉଁ ବଳାଇଲେ ମତି ।
କାଳ ତ ତାହାଙ୍କ କାଳ ଧରିଥିଲା ଆସି
ସେ ସକାଶୁ ଧେନୁ ପାଇଁ ହୋଇଲେ ଲାଳସୀ

ବଳବନ୍ତ ଲୋକଠାରେ ଧର୍ମାଧର୍ମ ଭାବ
ରହି ନ ପାରଇ ସବୁ ଦେବଳେ କରି ଠାବ ।
ପୁଣ୍ୟବନ୍ତ ବୁଦ୍ଧିମନ୍ତ ହେଲେହେଁ ରାଜନ
ନ ରହିଲା ତାହାଙ୍କର ହିତାହିତ ଜ୍ଞାନ ।
ପୁଣ୍ୟ କଲେ ପୁଣ୍ୟକର୍ମ କରଇ ମନୁଷ୍ୟ
ପାପକର୍ମ ଆଚରଇ ହେଲେ ପାପବଶ ।
ପୁଣ୍ୟକର୍ମ ବଳେ ଆନ ହୁଏ ସ୍ୱର୍ଗଗତି
ପାପକଲା ଲୋକେ ନରକରେ ପଡ଼ିଥାନ୍ତି ।
ଆହେ ନାରଦ ମହର୍ଷି କର୍ମଳିପ୍ତ ହେଲେ
ସଂସାରରୁ ମୁକତି ନ ମିଳେ କେତେବେଳେ ।
ସେହି କାରଣରୁ ସନ୍ତତରେ ସାଧୁଜନ
କର୍ମକ୍ଷୟ କରିବାକୁ ହୁଏ ଯତ୍ନବାନ ।
ଯେଉଁଲୋକ କର୍ମକ୍ଷୟ କରାଏ କୌଶଳେ
ତା ସମାନ ବନ୍ଧୁ କେହି ନାହିଁ ମହୀତଳେ ।
ଜୀବମାନଙ୍କର କର୍ମଭୋଗ ଶୁଭାଶୁଭ
ଦାରୁଣ ରୋଗ ବୋଲିଣ ମାନସରେ ଭାବ ।
ଶ୍ରୀକୃଷ୍ଣ ଭକତ ବୈଦ୍ୟ ଭକ୍ତି ରସାୟନେ
ସେହି ରୋଗ ଶାନ୍ତ କରି କରଇ ଯତନେ ।
ସନ୍ତୁଷ୍ଟ ହୋଇଲେ ବିଷ୍ଣୁମାୟା ମହାମାୟା
ସେହି ଭକ୍ତ ଦାନକରେ ପରକାଶି ଦୟା ।
ରୁଷ୍ଟ ହେଲେ ସଂସାରିକ କର୍ମଜାଲେ ନେଇ
ଆବରଣ କରିଦେଇ ଥାଏ ସେ ପକାଇ ।
ସେ ମାୟାରେ ବିମୋହିତ ହୋଇ ନରରାଣ
କରଯୋଡ଼ି ତପସ୍ୱୀଙ୍କୁ କହିଲେ ବଚନ ।
ବୋଇଲେ ଆହେ ତପସ୍ୱୀବର ଆମ୍ଭେମାନେ
ଉତ୍ତମ ସୁଖରେ ଆଜ ରହିଲୁ ଏ ସ୍ଥାନେ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ଯେଉଁ ଦ୍ରବ୍ୟମାନ ତାହା
ଆମ୍ଭଙ୍କୁ ପ୍ରଦାନ କଲ ଋଷିକୁଳ ନାହା ।
ଏବେ ଆପଣଙ୍କଠାରୁ ଆଉ କିଛି ମୁହିଁ
ମାଗିବା ପାଇଁକି ମନେ ବଳେଇ ଅଛଇ ।
ଆପଣ ତ ଦାତାପଣେ ଅଟନ୍ତି ଉତ୍ତମ
ଏ ପ୍ରକାଶୁ ଜାଣୁଅଛି ହେବ ପୂର୍ଣ୍ଣକାମ ।
ଯେଉଁ କାମଧେନୁ ଗୋଟି ଆଶ୍ରମେ ତୁମ୍ଭର
ଅଛି ତାକୁ ଦେଲେ ତୁଷ୍ଟ ହେବ ମନ ମୋର ।
ଶୁଣାଅଛି ପୂର୍ବକାଳେ ମହର୍ଷି ଦଧିଚି
ଦେବଙ୍କୁ ଆପଣ ଅସ୍ଥି ଦେଇଥିଲେ ଯାଚି ।

ତାହାଙ୍କଠାରୁ ଆପଣ ଅଟ ତ ଅଧିକ
ଆପଣଙ୍କ ପକ୍ଷେ ଏହା ଅଟଇ ଟିକେକ ।
ମନ କଲେ ନିଅବଟେ କ୍ଷଣକ ମଧ୍ୟରେ
ଧରଜ ପାଡ଼ିବ କେତେ ତାହା ଏ ପ୍ରକାରେ ।
ଏ ଗୋଟିକ ଦେଲେ କଷ୍ଟ ନୋହିବ ତୁମ୍ଭର
ଆନନ୍ଦରେ ପୁଣି ଆନମ୍ଭ ବାହୁଡ଼ିବୁ ଘର ।
ଏ ରୂପେ ରାଜାଙ୍କ ବାକ୍ୟ ଯମଦଗ୍ନି ଶୁଣି
ଅଳପ କ୍ରୋଧେ ତାହାଙ୍କୁ କହିଲେ ଏ ବାଣୀ ।
ବୋଇଲେ ହେ ନୃପ ତୁମ୍ଭେ ଶାଠଲୋକ ପରି
କହୁଅଛ କଥାଗୁଡ଼ିକ କିଛି ନ ବିଚାରି ।
ଫନ୍ଦ କରିଅଛ ଯାହା ନ୍ୟାୟ ବ୍ୟତିକ୍ରମ
ଜାଣିଲି ତୁମ୍ଭଦେହରୁ ଛାଡ଼ିଲଣି ଧର୍ମ ।
ବ୍ରାହ୍ମଣ ହୋଇଣି ମୁହିଁ କ୍ଷତ୍ରିୟକୁ ଦାନ
ଦେବି କି ରୂପେ ବୋଲୁଛ ହେ ମୂଢ଼ ରାଜନ ।
ସବୁଠାରୁ ହୀନ ଦାନ ବ୍ରାହ୍ମଣେ ଘେନନ୍ତି
ଦ୍ୱିଜଠାରୁ ଦାନ ନ ଘେନଇ ଅନ୍ୟଜାତି ।
ଏହି କାମଧେନୁଟିକୁ ଶ୍ରୀକୃଷ୍ଣ ଗୋଲକେ
ବ୍ରହ୍ମାଙ୍କୁ ପ୍ରଦାନ କଲେ ଅତ୍ୟନ୍ତ ଉତ୍ସୁକେ ।
ଆପଣାର ପୁତ୍ର ଭୃଗୁ ମୁନିଙ୍କୁ ସେ ନେଇ
ଦେଲେ ପ୍ରଜାପତି ମନେ ହରଷ ବଢ଼ାଇ ।
ମୁହିଁ ତ ଅଟଇ ଭୃଗୁଙ୍କର ପ୍ରିୟସୁତ
ତେଣୁ ସେ ମୋତେ ଏହାକୁ କଲେ ସମର୍ପିତ
ଏହିପରି ପିତାର୍ଜିତ ସମ୍ପଦ ମୋହର
ଅଟନ୍ତି ଏହି ସୁରଭି ଆହେ ନରବର ।
ଗୋଲକ ଅଟଇ ଏହାଙ୍କର ଜନ୍ମସ୍ଥାନ
ତ୍ରିଭୁବନେ ନାହିଁ ଗାଈ ଏହାଙ୍କ ସମାନ ।
କଥା ମାନକରେ ମୁହିଁ କି ରୂପେ ଏହାଙ୍କୁ
ତ୍ୟାଗ କରିବି ଏ କଥା ନ ଆସେ ମନକୁ ।
ଆହେ ମୂଢ଼ ନରପତି ମୁଁ ନୁହେଁ ବାଳକ
ତୁମ୍ଭ ତର୍ଜ୍ଜନାରେ ମନେ ପାଇବାକୁ ଦକ ।
ଅତିଥି ବିନା ସଂସାର ସମସ୍ତ ଲୋକଙ୍କୁ
ସମର୍ଥ ଅଟଇ ମୁହିଁ ଭସ୍ମ କରିବାକୁ ।
ଏବେ ମୋରବୋଲେ ତୁମ୍ଭେ ଗୃହେ ଫେରିଯାଅ
ବୃଥା କଥା କହି କ୍ରୋଧ ବଢ଼ାଇ ନ ଦିଅ ।
ପୁତ୍ର ଭାର୍ଯ୍ୟାଙ୍କୁ ଘେନି ରହ ଯଥା ସୁଖେ
ଲୁଚା କପା ପଡ଼ୁଅଛ କାଳ ମୃତ୍ୟୁ ମୁଖେ ।

ଏରୂପେ ମୁନିଙ୍କ ବାକ୍ୟ ଶୁଣି ନରପତି
ଆପଣା ମନରେ କ୍ରୋଧ ଜାତକଲେ ଅତି ।
ମୁନିଙ୍କୁ ପ୍ରଣାମ କରି ସୈନ୍ୟ ମଧ୍ୟେ ଗଲେ
କିଙ୍କରଗଣଙ୍କୁ ପାଶେ ଡକାଇ ଆଣିଲେ ।
ବଳାତ୍କାରେ ଆଣିବାକୁ ଋଷିଙ୍କର ଗାଈ
କହି ସାମନ୍ତଙ୍କୁ ଦେଲେ ସେକ୍ଷଣି ପଠାଇ ।
ରାଜନର ମନକଥା ଜାଣି ରମଣୀକ
କପିଳା ପାଶକୁ ଯାଇ କହିଲେ ସକଳ ।
ଭୃଗୁ ଘେନ ପୁଣି ନେତ୍ରୁ ଲୋତକ ବୁହାଇ
ବହୁତ କ୍ରନ୍ଦନ କଲେ ଭୁହାଇ ଭୁହାଇ ।
ମୁନିଙ୍କର ଶୋକ ଦେଖି ଧେନୁ ଶିରୋମଣି
ଆଶ୍ୱାସନା କରି ତାଙ୍କୁ କହିଲେ ଏ ବାଣୀ ।
ବୋଇଲେ ହେ ତପୀଶ୍ରେଷ୍ଠ ନ ହୁଅ ଆତୁର
ମୁହିଁ ପାଖେ ଥିଲେ ଭୟ ହେବ କି ତୁମ୍ଭର ।
ଇନ୍ଦ୍ର ହେଉ ନୋହିଲେ ବା ହେଉ ସେହ୍ନାଳକ
ଆପଣା ଦ୍ରବ୍ୟରେ ହୋଇଥାଏ ସେ ନାୟକ ।
ତାହାକୁ ସେ ସ୍ୱଇଚ୍ଛାରେ ଦାନ କରିପାରେ
ଅନ୍ୟଲୋକର ସମ୍ବନ୍ଧ ନାହିଁ ସେ ଦ୍ରବ୍ୟରେ ।
ନୃପତିକୁ ଯେବେ ତୁମ୍ଭେ ଦେବ ଦାନକରି
ଯିବି ମୁଁ ତାହାର ପଛେ ପଛେ ଅନୁସରି ।
ନ ଦେଲେ ତୁମ୍ଭ ପାଶରେ ସବୁବେଳେ ଥିବି
ଯେତେବେଳେ ଯାହା ବତାଇବ ତା କରିବି ।
ଯୁଦ୍ଧ କରିବାକୁ ରାଜା ଆସୁଅଛି ଯେବେ
ସୈନ୍ୟ ଦେଉଅଛି ଘେନିଯାଅ ତୁମ୍ଭେ ତେବେ ।
ସେହି ସୈନ୍ୟ ସାହାଯ୍ୟରେ ରାଜାକୁ ଏଠାରୁ
ଘଉଡ଼ାଇ ଦିଅ ମନେ ନୋହି କିଛି ଭୀରୁ ।
ସର୍ବଜ୍ଞ ହୋଇ ସା ତୁମ୍ଭେ ମାୟାରେ ମୋହିତ
ହେଉଛ ଦେଖିଣ ମୋତେ ଲାଗେ ଆଚମ୍ବିତ ।
ସଂଯୋଗ ବିୟୋଗ ଅଟେ କାଳର ଅଧୀନ
ସେଥିରେ କାହାର ଶକ୍ତି ନାହିଁ କିଛି ଜାଣ ।
ସମ୍ବନ୍ଧ ଥିବା ପର୍ଯ୍ୟନ୍ତ ଅହଙ୍କାର ଥାଏ
ଛିନ୍ନ ହେବାମାତ୍ରେ ତାର ସଙ୍ଗେ ସଙ୍ଗେ ଯାଏ ।
ଯେଉଁ ଦ୍ରବ୍ୟରେ ଆସକ୍ତ ହୋଇଥାଏ ମନ
ସହଜରେ ଛାଡ଼ ତାହା ନୁହେଁ କଦାଚନ ।
ତହିଁରେ ମରମଘାତି କଷ୍ଟ ଉପୁଜଇ
ମାତ୍ର ଜ୍ଞାନୀ ଲୋକଙ୍କୁ ତା ଜାଣି ନ ପାରଇ ।

ଏମନ୍ତ କହି ସୁରେଖ ବହୁତ ସୈନ୍ୟ
ଜାତକଲେ ଅସ୍ତ୍ର ଶସ୍ତ୍ର ସହିତରେ ଜାଣ ।
ଖଡ୍ଗଧାରୀ ତିନକୋଟି ବଳ ତାହାଙ୍କର
ମୁହୂର୍ତ୍ତକେ ହେଲେ ମୁଖ ମଧ୍ୟରୁ ବାହାର ।
ନାସିକାରୁ ଶୂଳହସ୍ତ ପାଞ୍ଚକୋଟି ହେଲେ
ଶତକୋଟି ଧନୁର୍ଦ୍ଧର ନେତ୍ରୁ ବାହାରିଲେ ।
କପାଳରୁ ଦଣ୍ଡହସ୍ତ ବୀର ତିନକୋଟି
ବାହାରହୋଇ ସେଠାରେ ହେଲେ ଆସି ଗୋଟି
ବକ୍ଷସ୍ଥଳୁ ଶକ୍ତି ଘେନି ତିନକୋଟି ବଳ
ବାହାର ହୋଇଲେ ଜାଣ ଆହେ ତପଶୀଳ ।
ପୃଷ୍ଠଦେଶ କଟୀପାର୍ଶ୍ୱ ଶତକୋଟି ଜାତ
ହେଲେ ପୁଣି ପାଦରୁ ବାଦ୍ୟକାର ଜାତ ।

ଅନେକୋଟି ରାଜସୁତ ଜଙ୍ଘୁ ବାହାରିଲେ
ଗୁହ୍ୟଦେଶୁ ତିନକୋଟି ମ୍ଲେଚ୍ଛ ଜନମିଲେ ।
ଏରୂପେ ମୁନିଙ୍କ ସୈନ୍ୟ ଦେଇଣ ସୁରେଖ
ନାନାଶସ୍ତ୍ର ଅସ୍ତ୍ର ପୁଣି ଦେଲେ ତାଙ୍କୁ ଲକ୍ଷ ।
ଏହାଙ୍କୁ ଘେନିଣ ଯୁଦ୍ଧ କର ହେ ବୋଇଲେ
ତା ଦେଖି ମନରେ ମୁନି ସନ୍ତୋଷ ପାଇଲେ ।
ରାଜାଙ୍କର ଗୁପ୍ତଚରେ ଆସି ସେହ୍ନେ ତାକୁ
ଦେଖିକରି ଯାଇ ସବୁ କହିଲେ ନୃପଙ୍କୁ ।
ଏ ଅଦ୍ଭୁତ କଥା ଶୁଣି ରାଜା ଭୟ କଲେ
ଦୂତ ପେଷି ରାଜ୍ୟୁ ଆଉ ସୈନ୍ୟ ଅଣାଇଲେ ।
ବୋଇଲେ ଘନ କ୍ଷେତ୍ରବାସୀ ଆହେ ନରବର
ମୁନିଙ୍କ ସଙ୍ଗତେ ବୃଥା କଳହ ନ କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶଙ୍କର ଏକଦନ୍ତ ବୃତ୍ତାନ୍ତ
ବର୍ଣ୍ଣନେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

—*—

# ଚତୁର୍ବିଂଶ ଅଧ୍ୟାୟ

## ରାଜା ଓ ମୁନିଙ୍କର ସୈନ୍ୟ ସମାଗମ ଓ ଯୁଦ୍ଧର ଆରମ୍ଭ

ଏଥୁ ଅନନ୍ତେ ଶୁଣ ହେ ନାରଦ ତପସ୍ୱୀ
ହରଙ୍କୁ ସ୍ମରଣେ କାର୍ତ୍ତବୀର୍ଯ୍ୟ ଦଣ୍ଡଧାରୀ ।
ମନରେ ସନ୍ତପ୍ତ ହୋଇ କ୍ରୋଧ ପ୍ରକାଶିଲେ
ମୁନିଙ୍କ ପାଶକୁ ଏକ ଦୂତ ପଠାଇଲେ ।
ସେକ୍ଷଣି ଯାଇ ମୁନିଙ୍କୁ କହିଲା ସେ ଦୂତ
ବୋଇଲେ ଶୁଣିମା ହେଉ ଆହେ ତପୋବନ୍ତ ।
କାର୍ତ୍ତବୀର୍ଯ୍ୟ ରାଜା କହି ପଠାଇ ଅଛନ୍ତି
ଗାଈଟିକି ଦେଇ ତାଙ୍କୁ ରୋଗକର ଶାନ୍ତି ।
ନୋହିଲେ ଯୁଦ୍ଧକୁ ଆସ ହୋଇ ସାବଧାନ
ଏ ଦୁଇ କଥାରୁ କଥେ ହେବାର ବିଧାନ ।
ଦୂତର ବଚନ ଶୁଣି ମୁନି ହସିଦେଇ
କହିଲେ ତାହାକୁ ହିତ ବଚନ ବତାଇ ।
ବୋଇଲେ ରେ ଦୂତ ଯାଇ ରାଜା ଆଗେ କହ
ଅନ୍ୟାୟ କରୁଛୁ କିମ୍ପା ହୋଇ ରାଜପୁତ୍ର ।
କ୍ଷୁଧାରେ ଆତୁର ହୋଇ ବନେ ବୁଲୁଥିଲ
ଆମ୍ଭ ଘରେ ଯଥାବିଧି ସତ୍କାର ପାଇଲ ।
କପିଳା ଗାଈଟି ମୋର ପ୍ରାଣର ସମାନ
ତାଙ୍କୁ ଦେବାପାଇଁ କେବେ ନୋହିବ ମୋର ମନ

ଯେବେ ଶ୍ରଦ୍ଧା କରୁଅଛ ଯୁଦ୍ଧ କରିବାକୁ
ଦେବୁ ଆମ୍ଭେ ସୈନ୍ୟ ଘେନି ଆସନ୍ତୁ ପାଶକୁ ।
ମୁନିଙ୍କଠାରୁ ଏମନ୍ତ ଶୁଣି ଦୂତ ଗଲା
ରାଜାଙ୍କ ସଙ୍ଗରେ ମିଳି ଏମନ୍ତ କହିଲା ।
ସେ ଅନ୍ତରେ କପିଳାକୁ ସ୍ମରି ମୁନିବର
ବୋଇଲେ କହ ଗୋ ମୋତେ ଯୁଦ୍ଧର ବଗର ।
ସେମାନଙ୍କ ବିନା ସୈନ୍ୟ ପାଇବେ କ ଠାର
ଯାଉଛନ୍ତି ଦେବେ କାର୍ତ୍ତବୀର ଶୂନ୍ୟ ନାବ ପର ।
ତା ଶୁଣି କପିଳା ତାଙ୍କୁ ଅସ୍ତ୍ର ଶସ୍ତ୍ର ଦେଇ
ସେମାନଙ୍କ ପାଇଁ ସେ ପୁଣି ସେନାପତି ହୋଇ ।
ଆଦେଶ ସେନାଙ୍କ ମଧ୍ୟ ଦେଇ ସେ ଅନ୍ତରେ
ଯୁଦ୍ଧବେଶେ ଯୋଦ୍ଧାଗଣ ଅତି ଯତନରେ
ପୁଣି ବୋଇଲେ ତୁମ୍ଭର ଜୟ ହେବ ରଣେ
ମୁନି ନ ହୋଇବ କେବେ ଶତ୍ରୁଙ୍କର ବାଣେ ।
ଯାଇ ସୁ ଭୁଲେ ସ୍ୱାମୀଙ୍କ ପୂଜା କରିବାର
ସୁଧାଇ କେଉଁ ଜାଣେ ବା ଉଚିତ ବେଭାର ।
ତଥାପି ଅନ୍ୟାୟ କାର୍ଯ୍ୟ କରିବାକୁ ରାଜା
ଯୁଝିବା ଉଚିତ ବୋଲି ଘାବୁଛି ମୋ ମଜ୍ଜା ।

ଏମନ୍ତ ବୋଲି କପିଳା ଯୋଗପାରେ ଭୁନ
ସୈନ୍ୟ ସଜକରି ସୃଷ୍ଟି ବାହାରିଲେ ମୁନି ।
ସମର ସ୍ଥଳରେ ପାଳ ପ୍ରବେଶ ହୋଇଲେ
ରାଜା ମଧ୍ୟ ନିଜ ସେନା ବେଷ୍ଟନ ଆସିଲେ ।
ଦୁଇହେଁପାଳ ଆସି ଦୁହେଁ ବେହାବେଣି ହେଲେ
ଧର୍ମ ରକ୍ଷ ମହର୍ଷିଙ୍କୁ ରାଜା ପ୍ରଣମିଲେ ।
ସେ ଅନ୍ତରେ ଦୁଇ ସୈନ୍ୟ ମିଶାମିଶି ହୋଇ ।
ଯୁଦ୍ଧକଲେ ଦେବାସୁର ଉପମାକୁ ପାଇ ।
କପିଳା ସୈନ୍ୟବଳରେ ରାଜାଙ୍କର ସେନା
ସ୍ଥିର ପଳାଇଲେ ସର୍ବେ ହୋଇଣ ବିମନା ।
ବିଚିତ୍ର ନାମକ ରଥ ଭାଜି ନୃପଙ୍କର
ଖଣ୍ଡ ଖଣ୍ଡ ହେଲା ପଡ଼ି ଅବନୀ ଉପର ।
କପିଳା ପ୍ରେରିତ ସେନା ତୀକ୍ଷ୍ଣ ଶରାଘାତେ
ଧନୁ ଭଗ୍ନ ଆଦିକରି ଛାଡ଼ିଲେ ସମସ୍ତେ ।
ନାନା ଶସ୍ତ୍ର ଅସ୍ତ୍ରମାନ ଅଙ୍ଗରେ ବାଜି
ରକ୍ତପାତ କଲେ କେତେ ରହିଗଲେ ମଜ୍ଜି ।
ସେ ସକାଶୁ ନରପତି ବିରସ ହୋଇଲେ
ନୟନ ବେନି ବୁଜିଣ ମୋହରେ ଶୋଇଲେ ।
ତାହାଙ୍କ ସୈନ୍ୟ ମଧ୍ୟରୁ ମଲେ କେତେ ଜଣ
ପଳାଇଲେ ଆଉ କେତେ ହୋଇ ରଣଭଣ ।
ତାହା ଦେଖି ମୁନିବର ଦୟା ପ୍ରକାଶିଲେ
ଆପଣା ସୈନ୍ୟଙ୍କୁ ତହୁଁ ବାହୁଡ଼ାଇ ଦେଲେ ।
ସେମାନେ କପିଳାଠାରେ ହେଲେ ଯାଇ ଲୀନ
ଏଥୁଅନନ୍ତରେ କଥା ଶୁଣ ତପୋଧନ ।

ରାଜାଙ୍କ ମସ୍ତକେ ଋଷି ପାଦରେଣୁ ଦେଇ
ଆଶୀର୍ବାଦ କଲେ ଅତି ପ୍ରୀତମନ୍ତ ହୋଇ ।
କମଣ୍ଡଳୁ ଜଳ ସିଞ୍ଚି ଚେତା କରାଇଲେ
ସୁସ୍ଥହୋଇ ରଜା ଆଗେ ମୁନିଙ୍କୁ ଦେଖିଲେ ।
ଭକ୍ତିଭରେ କରଯୋଡ଼ି ଉଭାହେଲେ ଆଗେ
ଆଲିଙ୍ଗନ କଲେ ତାଙ୍କୁ ମହର୍ଷି ସରାଗେ ।
ସେ ଅନ୍ତେ ସ୍ନାନକରାଇ ଭୁଞ୍ଜିବା ପାଇଁକି
ଦିବ୍ୟ ଅନ୍ନ ବ୍ୟଞ୍ଜନାଦି ଦେଲେ ପୁଣି ଡାକି ।
ତପସ୍ବୀ ବ୍ରାହ୍ମଣଙ୍କର ହୃଦୟ ନିର୍ମଳ
ଆବର ସେ ନବନୀତ ସମାନ କୋମଳ ।
ଅନ୍ୟ ଲୋକଙ୍କର ହୃଦ କ୍ଷୁରଧାର ପରି
ଯମପୁରେ ଦିଏ ପର ମର୍ମକୁ ବିଦାରି ।
ନୃପଙ୍କୁ ଅନାଇ ମୁନି ବୋଇଲେ ରାଜନ
ଆପଣା ଗୃହକୁ ଏବେ କର ହେ ଗମନ ।
ତାହା ଶୁଣି ନରପତି ସୁସ୍ଥମତି ହୋଇ
ବୋଇଲେ ହେ ଋଷି ତୁମ୍ଭେ ହୋଇଲକ ବାଇ ।
ଗାଈଟିକି ଦିଅ ମୋତେ ଅନୁଗ୍ରହ କରି
ନୋହିଲେ ଯୁଦ୍ଧକୁ ଆସ କରେ ଶସ୍ତ୍ର ଧରି ।
ଏ ଦୁଇ କଥାରୁ କଥାଟିଏ ନ କରିଲେ
ସାମାନ୍ୟରେ ଫେରି ମୁହିଁ ଯିବନାହିଁ ଭଲେ ।
ଏ ଗାଈ ରତନ ରାଜାଙ୍କର ପ୍ରାପ୍ୟଧନ
କି କରିବ ତୁମ୍ଭେ ବନବାସୀ ତପୋଧନ ।
ଏହିରୂପେ କଥାବାର୍ତ୍ତା ରାଜା ମୁନିଙ୍କର
କହିଲି ଶୁଣ ପ୍ରବନ୍ଧେ ପାନ କ୍ଷେତ୍ରସ୍ଥିର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ରାଜା ଓ ମୁନିଙ୍କର ସୈନ୍ୟ ସମାଗମ ଏବଂ ଯୁଦ୍ଧର ପ୍ରାରମ୍ଭ କଥନେ ନାମ ଚତୁର୍ବିଂଶୋଽଧ୍ୟାୟଃ ।**

## ପଞ୍ଚବିଂଶ ଅଧ୍ୟାୟ

### ଋଷି ଓ ନୃପତିଙ୍କର ଘୋରଯୁଦ୍ଧ

କହନ୍ତି ନାରାୟଣ ନାରଦଙ୍କୁ ତହୁଁ
ଏଥୁ ଅନନ୍ତରେ କଥା ଶୁଣ ଋଷିପାଳି ।
ରାଜାଙ୍କ ବଚନ ଶୁଣି ସମଦର୍ଶୀ ମୁନି
ହରିଙ୍କୁ ସ୍ମରଣ କଲେ କ୍ଷଣେ ହୋଇ ତୁନି ।
ସେ ଅନ୍ତରେ ମନ୍ତ୍ରମୟ ହିତ ତଥ୍ୟ ଗୀର
କହିବାକୁ ଆରମ୍ଭିଲେ ମନ କରି ସ୍ଥିର ।

ବୋଇଲେ ଆହେ ରାଜନ ଏରେ ଯୁଦ୍ଧକରି
ମୋହର ସୈନ୍ୟଙ୍କ ଆଗେ ଗଲ ତୁମ୍ଭେ ହାରି ।
ଆଉ ଏରେ ଯୁଝିବାକୁ କାହିଁପାଇଁ ଚିତ୍ତ
ବଳାଉଅଛ ଏ କଥା ନୁହଇ ଉଚିତ ।
ମୋର ବୋଲକରି ଏବେ ନିଜପୁରେ ଯାଅ
ନିଜ ଧର୍ମ ରକ୍ଷାକରି ଆନନ୍ଦରେ ରହ ।

ଧର୍ମରକ୍ଷାକରିଥିଲେ ସକଳ ଧର୍ମନୀତି
ସ୍ଥିରହୋଇ ରହନ୍ତେ ଯାଣେ ନ ଆସେ ବିପତ୍ତି ।
ନିରାହାର ହୋଇ ତୁମ୍ଭେ ବୁଲୁଥିଲ ବନେ
ଦେଖିକରି ଦୟା ଜାତ ହେଲା ମୋର ମନେ ।
ଗୃହକୁ ଆଣି ତୁମ୍ଭଙ୍କୁ ଉଚିତ ସତ୍କାର
କରାଇଲି ମୁହିଁ କିଛି ନ ହୋଇ କାତର ।
ଯୁଦ୍ଧରେ ମୂର୍ଚ୍ଛିତ ଏବେ ହେଲ ବୋଲି ଜାଣି
ସଚେତ କଲି ଆପଣା ସମୀପକୁ ଆଣି ।
ସୁସ୍ଥ ହୋଇବାରୁ ଯାହା ଏରୂପେ ବଚନ
କହୁଛ ଏ କଥା ଯୁକ୍ତ ନୁହଇ ରାଜନ ।
ଏରୂପେ ମୁନିଙ୍କ ବାଣୀ ଶୁଣି ନରବର
ପ୍ରଣାମ କଲେ ତାହାଙ୍କୁ ଯୋଡ଼ି ବେନିକର ।
ସେ ଅନ୍ତରେ ଦିବ୍ୟରଥ ଆରୋହଣ କରି
ଯୁଦ୍ଧ ଦିଅ ବୋଲିକରି କହିଲେ ଡାକାରି ।
ତାହା ଦେଖି ଯମଦଗ୍ନି କ୍ରୋଧରେ ଜଳିଲେ
ଶସ୍ତ୍ର ଅସ୍ତ୍ର ଘେନି ଯୁଝିବାକୁ ବାହାରିଲେ ।
ସେ ଦୁହିଙ୍କ ମଧ୍ୟେ ରଣ ହେଲା ଘୋରତର
ମରାମରି ହେଲେ ଦୁହେଁ ଆୟୁଧ ଅପାର ।
କପିଳା ଦେବା ଅସ୍ତ୍ରକୁ ପ୍ରହାରନ୍ତେ ଋଷି
ରାଜାଙ୍କର ଧନୁଅସ୍ତ୍ର ଦେଲା ସେ ବିନାଶି ।
ନିରାୟୁଧ ହୋଇ ରାଜା ଥିବା ସମୟରେ
ଶକତି ଫିଙ୍ଗିଲେ ମୁନି ତାହାଙ୍କ ଉପରେ ।
ସେ ଘାତରେ ନରପତି ପୁଣି ଜ୍ଞାନହେଜ
ପଡ଼ିଲେ ମୁହୂର୍ତ୍ତେ ବେନି ନୟନକୁ ବୁଜି ।
ସେ ଅନ୍ତରେ ଚେତାପାଇ ଧରି ଧନୁଶର
ଅଗ୍ନିଅସ୍ତ୍ର ପ୍ରହାରିଲେ ହୋଇ କୋପଭର ।
ବାରୁଣ ଅସ୍ତ୍ରରେ ମୁନି କରି ନିବାରଣ
ରାଜାଙ୍କ ଉପରେ କଲେ ଜଳ ବରଷଣ ।
ବାୟୁବ୍ୟ ଅସ୍ତ୍ର ପ୍ରହାରି ରାଜା ସେ ଅସ୍ତ୍ରକୁ
ସଂହାରିଲେ ଦେଖାଇଣ ଆପଣା ବଳକୁ ।
ସେ ଅସ୍ତ୍ର ପ୍ରଭାବ ଦେଖି ମୁନି ସେହିକାଳେ
ଗନ୍ଧର୍ବଅସ୍ତ୍ର ପ୍ରହାରି ନିବାରଣ କଲେ ।
ନାଗାସ୍ତ୍ର ବନ୍ଧନେ ରାଜା ହୋଇ କୋପମୂର୍ତ୍ତି
ଛେଦିଲେ ଗରୁଡ଼ ଅସ୍ତ୍ର ଯମଦଗ୍ନି ସତି ।
ମାହେଶ୍ୱର ମହାଅସ୍ତ୍ର ବିନ୍ଧିଲେ ନୃପତି
ପ୍ରକାଶିଲା ଶତସୂର୍ଯ୍ୟ ପରାୟେ ସେ ଜ୍ୟୋତି ।

ତାହା ଦେଖି ମୁନିବର ବିସ୍ମିତ ହୋଇଲେ
ଦିବ୍ୟ ବଇଷ୍ଣବ ଅସ୍ତ୍ର ଧନୁରେ ଯୋଡିଲେ ।
ମନ୍ତ୍ର ପଢ଼ି ଛାଡ଼ିଦେବା କାଳରେ ସେ ଯାଇ
ଦେଲା ମାହେଶ୍ୱର ଅସ୍ତ୍ରବରକୁ ଲିଭାଇ ।
ସେ ଅନ୍ତରେ ନାରାୟଣ ଅସ୍ତ୍ରକୁ ମହର୍ଷି
ସରଜନା କଲେ ରଣେ ହୋଇ ମହାରୋଷୀ ।
ସେ ଅସ୍ତ୍ର ବିକଳରୂପରେ ଆକାଶେ ଚହଟି
ଆସିଲା ଦିଗ ବିଦିଗ ପୃଥିବୀକି ଘୋଟି ।
ବରଷାଧାରା ପରାୟେ ଶସ୍ତ୍ର ମାଳ ମାଳ
ରାଜାଙ୍କ ମସ୍ତକ ପରେ କଲା ନେଇ ଠୁଳ ।
କ୍ଷଣକ ମଧ୍ୟରେ ସବୁଆଡ଼େ ଅନ୍ଧକାର
ଆଚ୍ଛାଦନ କଲା ଯେସ୍ନେ ନବ ଜଳଧର ।
ସେ ଅସ୍ତ୍ର ପ୍ରତାପ ସହି ନ ପାରି ରାଜନ
ଶସ୍ତ୍ର ଅସ୍ତ୍ର ତ୍ୟାଗକରି ପଶିଲେ ଶରଣ ।
ତାହା ଜାଣି ଅସ୍ତ୍ରବର ଆପଣା ଇଚ୍ଛାରେ
ଅନ୍ତର୍ଦ୍ଧାନ ହୋଇ ଛାଡ଼ିଗଲା କ୍ଷଣକରେ ।
ସେ ଅନ୍ତରେ ଯମଦଗ୍ନି ଜୃମ୍ଭଣ ଶରକୁ
ପ୍ରହାରିଲେ ଉଦ୍ଦେଶିଣ ନୃପ ଉପରକୁ ।
ସେ ଅସ୍ତ୍ର ବଳରେ ରାଜା ନିଦ୍ରାରେ ଅଚେତ
ହେବାରୁ ପଡ଼ିଲେ ତଳେ ହୋଇଣ ଆସକ୍ତ ।
ଅର୍ଦ୍ଧଚନ୍ଦ୍ର ଶର ତହିଁ ପେଷି ମୁନିବର
ଖଣ୍ଡ ଖଣ୍ଡ କଲେ ରଥ ଅଶ୍ୱ ଧନୁଶର ।
ସାରଥିର ଗଣ୍ଡିରୁ ମୁଣ୍ଡଟିକ କାଟି
ଗଡ଼ାଇ ଦେଲେ ଗଲା ସେ ମହୀତଳେ ଲୋଟି ।
କ୍ଷୁରକାଣ୍ଡେ ଛିନ୍ନଭୁଲେ କବଚ କୁଣ୍ଡଳ
କାଟିଣ ପକାଇ ତଳେ ଦେଲେ ତପଶୀଳ ।
ସେନାପତି ଆଦି ମନ୍ତ୍ରୀ ଯେତେ ତହିଁ ଥିଲେ
ନାଗଅସ୍ତ୍ରେ ସମସ୍ତଙ୍କୁ ବାନ୍ଧି ପକାଇଲେ ।
ସେ ଅନ୍ତେ ମନ୍ତ୍ରପ୍ରଭାବେ ରାଜାଙ୍କୁ ଉଠାଇ
ମନ୍ତ୍ରୀମାନଙ୍କ ଅବସ୍ଥା ଦେଲେ ସେ ଦେଖାଇ ।
ମୁକ୍ତ କରିଣ ତାହାଙ୍କୁ ବୋଇଲେ ଯେ ତୁମ୍ଭେ
ଘରକୁ ବାହୁଡ଼ି ଯାଅ ବୋଲୁଅଛୁ ଆମ୍ଭେ ।
ସହି ନ ପାରିଣ ତାହା ରାଜା ବେଗେ ଉଠି
ଫିଙ୍ଗିଲେ ମୁନିଙ୍କ ପରେ ତୀକ୍ଷ୍ଣ ଶୂଳଗୋଟି ।
ଶକତି ଗୋଟିଏ ମାରି ସେ ଶୂଳକୁ ଋଷି
ଧାଡିକୁ ନ ଆସୁ ବେଗେ ପକାଇଲେ ନାଶି ।

ସେତେବେଳେ ରାଜା ହେଉଥାନ୍ତି ମ୍ଳାନବଳ
ସେତେ ତାଙ୍କ ମନେ କ୍ରୋଧ ହୁଅଇ ପ୍ରବଳ ।
ବ୍ରହ୍ମର୍ଷି ଅଙ୍ଗିରା ଯୋଗବଳେ ବଳୀଧ୍ୟାନ
ତାଙ୍କୁ ଜିଣିବାକୁ ତ୍ରିଜଗପୁରେ କେବା କ୍ଷମ ।
ଏହି ସମୟରେ ବ୍ରହ୍ମା ସେଠାକୁ ଆସିଲେ
ଦୁହିଙ୍କ ମଧ୍ୟରେ ଯୁଦ୍ଧ ନିବାରଣ କହିଲେ ।
ବିବିଧ ପ୍ରକାରେ ତାଙ୍କୁ କହି ଧରମରେ
ପ୍ରୀତିଜାତ କରାଇଲେ ଜାଣ ସେ କାଳରେ ।
ଭକ୍ତିଭାବରେ ଯମଦଗ୍ନି ବ୍ରହ୍ମାଙ୍କ ଚରଣେ
ପ୍ରଣମିଲେ ଆହେ ମୁନିବର ତତକ୍ଷଣେ ।
ରାଜା ମଧ୍ୟ ସେମନ୍ତରେ ବିଧାତାଙ୍କୁ ଦେଖି
ତାହାଙ୍କ ପାଦେ ପଡ଼ିଲେ ହୋଇ ମହାସୁଖୀ ।
ସେ ଅନ୍ତେ ଦୁଇଜଣ ମାଗି ନିଜ ନିଜ ଗୃହେ
ଗମନ କଲେ ହେ ମୁନି ନରପତି ଦୁହେଁ ।
ବ୍ରହ୍ମଲୋକେ ପ୍ରବେଶ ହୋଇଲେ ବେଦବର
ଶ୍ରୀକୃଷ୍ଣ ସ୍ମରଣ ଗୀତେ କହେ କ୍ଷେମଙ୍କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଋଷି ଓ ନୃପତିଙ୍କର ଘୋର ଯୁଦ୍ଧ କଥନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

---

# ଷଡ଼ବିଂଶ ଅଧ୍ୟାୟ

## କାର୍ତ୍ତବୀର୍ଯ୍ୟଙ୍କଦ୍ୱାରା ମୁନିଙ୍କର ପ୍ରାଣନାଶ ଓ ଭୃଗୁଙ୍କ ରେଣୁକାଙ୍କର ଆଳାପଆଲୋଚନ ।

ଏଥୁଅନ୍ତେ ସହସ୍ରାର୍ଜ୍ଜୁନ ବସିଷ୍ଠ ମନରେ
ପ୍ରବେଶ ହୋଇଲେ ଯାଇଁ ଆପଣାର ପୁରେ ।
ଶ୍ରୀହରିଙ୍କ ମାନସରେ ସୁମରଣା କରି
ଆପଣାର ଚତୁରଙ୍ଗ ସୈନ୍ୟ ସଙ୍ଗେ ଧରି ।
ଯମଦଗ୍ନି ମୁନିଙ୍କର ଆଶ୍ରମେ ମିଳିଲେ
ଯୁଦ୍ଧ କରିବା ସକାଶେ ପୁଣି ବାହାରିଲେ ।
ତ୍ରିଲକ୍ଷ ରଥ ଦଶସହସ୍ର ମହାଗଜ ।
ଅସଂଖ୍ୟ ପଦାତି ବାହାରିଲେ ହୋଇ ସଜ ।
ମହାବଳ ପରାକ୍ରମୀ ସହସ୍ର ସାମନ୍ତ
ଦଶ ଅଯୁତ ଘୋଟକ ମହାବଳବନ୍ତ ।
ଏ ରୂପେ ସଇନ୍ୟ ହୋଇ ମୁନିଙ୍କ ଆଶ୍ରମ
ଆବରଣ କଲେ ଯାଇଁ ହୃଦେ ବହି ତମ ।
କବଚ ଲଗାଇ କରେ ଧନୁଶର ଧରି
ଦିବ୍ୟରଥେ ବସି ସହସ୍ରାର୍ଜ୍ଜୁନ ଦଣ୍ଡଧାରୀ ।
ଇନ୍ଦ୍ର ପରିପ୍ରାୟେ ଯୁଦ୍ଧକୁ ବାହାର ହୋଇଲେ
ବାଦ୍ୟଘୋଷେ ଦଶଦିଗ ମତ୍ତ କମ୍ପାଇଲେ ।
ସେ ଶବଦେ ମୁନିଙ୍କର ଅନୁଚରମାନେ ।
ମୂର୍ଚ୍ଛିତ ହୋଇଲେ ଭୟ ଜାତ କରି ମନେ ।
ସେ ସମସ୍ତେ ରାଜାଙ୍କର ସୈନ୍ୟମାନେ ଯାଇ
ମୁନିଙ୍କ ଆଶ୍ରମେ ବେଗେ ପଶିଲେ ଧସାଇ ।
ବଳାତ୍କାରେ କପିଳାକୁ ବାନ୍ଧି ଘେନିଗଲେ
ପୁରକୁ ନେବା ପାଇଁକ ମନ ବଳାଇଲେ ।
ତାହାଦେଖି ମୁନିବର ଧନୁଶର ଧରି
ଦତ୍ତଙ୍କୁ ଭକତିଭାବରେ ନମସ୍କାର କରି ।
ଶ୍ରୀହରିଙ୍କୁ ସୁମରଣା କରି ମନେ ମନେ
ଏକ ମାତ୍ର ପ୍ରବେଶ ହେଲେ ରଣସ୍ଥାନେ ।
ଆଶ୍ରମବାସୀ ଜନଙ୍କୁ ଆଶ୍ୱାସନା କରି
ନାରୀଙ୍କରେ ଛିଡ଼ାହେଲେ କରେ ଶସ୍ତ୍ର ଧରି ।
ମନ୍ତ୍ରପଢ଼ି ନାନାବିଧ ଅସ୍ତ୍ରମାନ ବିନ୍ଧି
ଶରବଦଗ ଭୁଲେ ଦିବ୍ୟମାର୍ଗ ଦେଲେ ରୁନ୍ଧି ।
ଆପଣା ଆଶ୍ରମ ଶରେ ଆଚ୍ଛାଦନ କଲେ
ପୁଣି ଆଉ ଏକ ଶରଜାଳ ସରଜିଲେ ।
ଦଣ୍ଡରେ ଶତ୍ରୁବୃନ୍ଦଙ୍କୁ କଲେ ଆକ୍ରମଣ
ଯେରୂପେ ପଞ୍ଜୁରୀ ମଧ୍ୟେ କ୍ଷୁଦ୍ର ପକ୍ଷୀଗଣ ।
ସେହିରୂପେ ରାଜାଙ୍କର ସୈନ୍ୟଥିଲେ ଯେତେ
ପୀଡ଼ାପାଇଣ ବ୍ୟାକୁଳ ହୋଇଲେ ସମସ୍ତେ ।
ତାହାଦେଖି ସହସ୍ରାର୍ଜ୍ଜୁନ ରଥୁ ଓହ୍ଲାଇଲେ
ମୁନିଙ୍କର ପାଦଧରି ପ୍ରଣାମ ସେ କଲେ ।
ନମସ୍କାର କରି ତହୁଁ ଆସିଣ ଲେଉଟି
ଆରୋହଣ କଲେ ଆପଣାର ରଥଗୋଟି ।
ତୋମର ମୁଦ୍ଗର ଶକ୍ତି ପରଶୁ ଆଦି
ମୁନିବର ଉପରକୁ ଫିଙ୍ଗିଲେ ସମ୍ପାଦି ।
ଦିବ୍ୟଅସ୍ତ୍ରେ ମୁନି ତାହା କରି ଖଣ୍ଡ ଖଣ୍ଡ
କଣ୍ଟିତ ମାତ୍ରେ ପକାଇ ଦେଲେ ରଣଦାଣ୍ଡ ।

ପୁଣି ଦିବ୍ୟ ଅସ୍ତ୍ରଟାଏ ବିନ୍ଧିଲେ ଆକର୍ଷି
ନ ବାଜୁ ଦେହରେ ରଜା ଦେଲେ ତାକୁ ନାଶି
ତୀକ୍ଷ୍ଣ ଶୂଳ ଗୋଟିଏ ଯେମନ ବହ୍ନି କରେ
ଲକ୍ଷ୍ୟ କରିଣ ଫିଙ୍ଗିଲେ ମୁନିଙ୍କ ଉପରେ ।
କ୍ଷୁରକାଣ୍ଡେ ଯମଦଗ୍ନି କାଟି ସେ ଶୂଳକୁ
ବର୍ଷାଧାରା ପରି ବାଣ ବିନ୍ଧିଲେ ନୃପଙ୍କୁ ।
ସେ ଘାତେ ନରପତିଏ ପ୍ରିୟପ୍ରାଣ ଛାଡ଼ି
ଗଲେ ମହାମହଳାର ପୃଷ୍ଠଦେଶେ ଚଢ଼ି ।
ଶରଜାଳେ ଆବେଷ୍ଟିତ ହୋଇ ତ ସେ ଥିଲେ
ପଳାଇବାପାଇଁ ଆଉ ବାଟ ନ ପାଇଲେ ।
ଏହା କରସାର ପୁଣି ଭୃଗୁଗଣ ଈଶ
ଜୃମ୍ଭଣ ଅସ୍ତ୍ର ପ୍ରୟୋଗ କଲେ ବହ୍ନି ବେଷ ।
ସେ ଅସ୍ତ୍ରରେ ସୈନ୍ୟ ସଙ୍ଗେ ହୈହୟ ନୃପତି
ମୋହଯାଇ ସେହିକ୍ଷଣି ଆଶ୍ରେ କଲେ କ୍ଷିତି ।
ରାଜାର ଏମନ୍ତ ଦଶା ଦେଖି ମୁନିବର
ଯେମନ୍ତ ନାହିଁ ସେକାଳେ ଜୀବ ତାହାଙ୍କର ।
କପିଳାକୁ ବନ୍ଧନରୁ ମୁକତ କରାଇ
ଆଶ୍ରମ ଅଭିମୁଖରେ ଗଲେ ସଙ୍ଗେ ନେଇ ।
ଏହି ସମୟରେ ରାଜା ଚେତନା ପାଇଲେ
ଶସ୍ତ୍ର ଧରିଣ ମୁନିଙ୍କୁ ବାଟ ଓଗାଳିଲେ ।
ତା ଦେଖି କପିଳା ସେହି ସ୍ଥାନରୁ ପଳାଇ
ଆଶ୍ରମେ ପ୍ରବେଶ ହେଲା ଅତିଭୀର ହୋଇ ।
ଧନୁଶର ଧରି ମୁନି ରାଜାଙ୍କ ଆଗରେ ।
ଯୁଦ୍ଧ କରିବାକୁ ଉଭା ହୋଇଲେ ରଗରେ ।
ବ୍ରହ୍ମାସ୍ତ୍ର ବସାଇ ପୁଣି ସହସ୍ରାର୍ଜ୍ଜୁନ
ବିନ୍ଧିଲେ ହେନିବା ପାଇଁ ଋଷିଙ୍କ ଜୀବନ ।
ଯମଦଗ୍ନି ମହର୍ଷି ତ ବ୍ରାହ୍ମଣ ଅଟନ୍ତି
ବ୍ରହ୍ମାସ୍ତ୍ରେ ଛେଦିଲେ ତାହା ଛାଡ଼ିଦେଇ ଖିତି ।
ପୁଣି ଦିବ୍ୟଅସ୍ତ୍ର ବିନ୍ଧ ଧନୁଶର ରଥ
କବଚ ସହିତେ କାଟି କଲେ ଭୂମିସାଥ ।
ତାହା ଦେଖି କାର୍ତ୍ତବୀର୍ଯ୍ୟ ମହାକୋପ କରି
ଧରିଲେ ଏକଘ୍ନୀ ଶକ୍ତି ହସ୍ତରେ ଉଞ୍ଚାରି ।
ଦତ୍ତ ଯେ ଶକତି ପୂର୍ବେ ଦେଇଥିଲେ ତାଙ୍କୁ
ନିଷ୍ଠୁରରେ ମାରିବ ଯେ ଗୋଟିଏ ବୀରକୁ ।
ଆଗ ତାକୁ ନମସ୍କାର କରି ସହସ୍ରାର୍ଜ୍ଜୁନ
ବୁଲାଇଲେ ଦୁଇହାତେ ଚକ୍ରର ସମାନ ।
ଶତସୂର୍ଯ୍ୟ ପରି ତେଜ ଦିଶିଲା ତାହାର ।
କୋଟି ଅଗ୍ନି ଶିଖା ବହ୍ନି ହୋଇଲା ବାହାର ।
ସେ ଅନ୍ତରେ ମନ୍ତ୍ରପଢ଼ି ହରିନମୁ ପଣ୍ଡ
ବ୍ରହ୍ମା ବିଷ୍ଣୁ ଶିବଆଦି ଦେବଙ୍କୁ ବନନ୍ତ ।
କରିଣ ତାହାଙ୍କ ତେଜ ଅଣାଇ ସତ୍ୱର
ସୃଷ୍ଟିକରି ରଖାଇଲେ ସେ ଶକ୍ତି ମଧ୍ୟର ।
ସେ ସକାଶୁ କାଳଅଗ୍ନି ଦେବତା ପରଶେ
ଜଳିଲା ସେ ଅସ୍ତ୍ରବର ତେଜେ ଅତିଶୟେ ।
ଫିଙ୍ଗନ୍ତେ ଗର୍ଜନ କରି ଆକାଶକୁ ଗଲା
ସ୍ୱର୍ଗ ପାତାଳ ସହିତେ ମର୍ତ୍ତ୍ୟ କମ୍ପାଇଲା ।
ଯୁଦ୍ଧଦେଖିବାକୁ ଦେବ ବ୍ୟୋମେ ରହିଥିଲେ
ସେ ଶକ୍ତି ଫିଙ୍ଗିବା ଦେଖି ହାହାକାର କଲେ
ଉଲ୍‌କା ପରି ଖସି ଯମଦଗ୍ନି ମୁନିବର
ପୃଷ୍ଠଦେଶ ଫୁଟାଇଣ ହୋଇଲା ବାହାର ।
ସେ ଅନ୍ତରେ ଶ୍ରୀହରିଙ୍କ ସମୀପରେ ଯାଇଁ
କହିଲା ସମସ୍ତ କଥା ପରବେଶ ହୋଇ ।
ଶକତି ଆଘାତ ପାଇ ମୁନି ମହାମନା
ପଡ଼ିଲେ ପୃଥିବୀ ପରେ ହରାଇ ଚେତନା ।
ଉପବାସ ବ୍ରତକରି ତାହାଙ୍କ ଶରୀର
ପୂର୍ବରୁ ତ ହୋଇ ଯାଇଥିଲା କ୍ଷୀଣତର ।
ସେ ସକାଶୁ ଶକ୍ତିଘାତ ସହି ନ ପାରିଲେ
ସେହିକ୍ଷଣି ପ୍ରିୟ ପରାଣକୁ ଛାଡ଼ିଦେଲେ ।
ଦେହରୁ ବାହାର ହୋଇ ଦିବ୍ୟତେଜ ରାଶି
ଦେଖୁଥିଲେ ସର୍ବେ ଗଲା ଗଗନରେ ମିଶି ।
କ୍ଷଣେ ପର୍ଯ୍ୟନ୍ତେ ବୁଲି ବ୍ରହ୍ମଲୋକେ ଯାଇ
ରହିଲେ ସେ ମୁନିବର ମହାସୁଖ ପାଇ ।
ଯୁଦ୍ଧରେ ମୁନିଙ୍କ ମୃତ୍ୟୁ ଦେଖିଣ କପିଳା
ଆହେ ତାତ ତାତ ବୋଲି ବହୁତ କାନ୍ଦିଲା ।
ସେ ଅନ୍ତେ ଗୋଲୋକେ ଯାଇ ଶ୍ରୀକୃଷ୍ଣଙ୍କ ପାଶେ
ଉପସ୍ଥିତ ହେଲା ଅତି ମାନସ ବରଷେ ।
ସେ କପିଳା ଗାଈଟିକୁ ଶ୍ରୀକୃଷ୍ଣ ପୂର୍ବରେ
ସମର୍ପଣ କରିଥିଲେ ବ୍ରହ୍ମାଙ୍କ ହସ୍ତରେ ।
ଭୃଗୁ ମହର୍ଷିଙ୍କୁ ବ୍ରହ୍ମା ଦେଇଥିଲେ ତୋଷେ
ପୁଷ୍କର ତୀର୍ଥରେ ଯମଦଗ୍ନିଙ୍କୁ ହରଷେ ।
ଦାନ କରିଣ ଭୃଗୁ ମୁନିଗଣନାଥ
[illegible]ଲେ ଅଟେ ଏ କାମଧେନୁଙ୍କ ସଦୃଶ ।

ଯେତେବେଳେ ତୁମ୍ଭେ ଯାହା ଇଚ୍ଛା କରିଥିବ
ଏହାଙ୍କ ପ୍ରସାଦ ଯୋଗେ ନିଶ୍ଚୟ ପାଇବ ।
ସେହି ଦିନଠାରୁ ଯମଦଗ୍ନି ମୁନିବର
ରଖିଥିଲେ ସେ ଧେନୁକୁ ଆପଣା ପାଶର ।
ଶ୍ରୀକୃଷ୍ଣଙ୍କୁ ନମି କାମଧେନୁଙ୍କ ଗୋଷ୍ଠରେ
ରଖିଲେ ସେ ଗାଈ ଯାଇ ଅତ୍ୟନ୍ତ ତୋଷରେ ।
ତା ନେତ୍ରରୁ ଯେତେ ଅଶ୍ରୁ ବିନ୍ଦୁ ପଡ଼ିଥିଲା
ମର୍ତ୍ତ୍ୟଭୁବନରେ ରତ୍ନଶଙ୍ଖ ସେ ହୋଇଲା ।
ଏଥୁଅନ୍ତେ କାର୍ତ୍ତବୀର୍ଯ୍ୟ ମୁନିଙ୍କୁ ସଂହାରି
ଆପଣାର ସୈନ୍ୟଙ୍କୁ ଆଶ୍ୱାସନା କରି ।
ବ୍ରାହ୍ମଣ ବଧର ପ୍ରାୟଶ୍ଚିତ୍ତ ଶେଷ କଲେ
ବାହୁଡ଼ି ନିଜଗୃହରେ ପରବେଶ ହେଲେ ।
ଯମଦଗ୍ନି ମୁନିଙ୍କର ଭାର୍ଯ୍ୟା ସୁନ୍ଦରୀ
ସତୀପଣେ ଜଗତେ କେ ନୁହେ ତାଙ୍କ ସରି ।
ଯୁଦ୍ଧରେ ପ୍ରାଣପତିଙ୍କ ମୃତ୍ୟୁକଥା ଶୁଣି
ଶୋକରେ ଅସ୍ଥିର ହୋଇ ଆସିଲେ ସେକ୍ଷଣି ।
ମୁନିଙ୍କ ଶରୀର ନିଜ ବକ୍ଷସ୍ଥଳେ ରଖି
କାନ୍ଦିଲେ କେତେ ବିକଳେ ହୋଇ ମହାଦୁଃଖୀ ।
କ୍ଷଣେ ମୂର୍ଚ୍ଛାଯାଇ ପୁଣି ଚେତନା ପାଇଲେ
ଶୋକ ନ କରିଣ ନିଜ ପୁତ୍ରକୁ ଡାକିଲେ ।
ବୋଇଲେ ରେ ରାମ ତୋର ତାତଙ୍କ ମରଣ
ହୋଇଅଛି ଆସି ବାବୁ ଦେଖରେ ବଦନ ।
ମାତାଙ୍କର ଡାକ ଶୁଣି ରାମ ତପସ୍ୱୀ
ଆସିଲେ ମୁହୂର୍ତ୍ତି ମାତ୍ର ବିଳମ୍ବ ନ କରି ।
ତାଙ୍କ ବେନିପାଦ ଧରି ନମସ୍କାର କଲେ
ମରି ପଡ଼ିଛନ୍ତି ନିଜ ପିତାଙ୍କୁ ଦେଖିଲେ ।
ସକଳ ବୃତ୍ତାନ୍ତ ପୁଚ୍ଛା କରିଣ ମାତାଙ୍କୁ
ଶୁଣିଲେ ଆମୂଳ କରି ଯୁଦ୍ଧର କଥାକୁ ।
ଶୋକରେ କପିଳା ଧେନୁ ସ୍ୱର୍ଗକୁ ଯିବାର
ଶୁଣିଲେ ମଧ୍ୟ ସେ ରାମ ତପୀଗଣବର ।
ସେ ଅନ୍ତେ ପିତାଙ୍କ ନାମ ସୁମରଣା କରି
ବହୁତ କାନ୍ଦିଲେ ଘନ ଦୁଃଖୀଲୋକ ପରି ।
ପୁଣି ଧୈର୍ଯ୍ୟବନ୍ତ ହୋଇ ଚନ୍ଦନ କାଷ୍ଠରେ
ଚିତା ଗୋଟିଏ ନିର୍ମାଣ କଲେ ସେହିଠାରେ ।
ତା ଦେଖି ରେଣୁକା ଷଷ୍ଠ ପୁତ୍ରକୁ କୋଳରେ
ବସାଇ କହିଲେ ଅତି ଆନନ୍ଦ ଭୋଳରେ ।

ବୋଇଲେ ରେ ବାବୁ ତୋତେ ଛାଡ଼ିକରି ମୁହିଁ
କେଉଁଆଡ଼େ ଯିବି କିଛି ବୁଦ୍ଧି ଦିଶୁ ନାହିଁ ।
ମୋହର ବଚନ ଶୁଣ ଆରେ ପ୍ରିୟସୁତ
ପିତାଙ୍କର ଶୁଦ୍ଧକାର୍ଯ୍ୟ କରି ସମାପତ ।
ସଂସାର ଭାବରେ ରହି ଦିନ ନେଉଥାଅ
ଯୁଦ୍ଧ କରିବାକୁ ଆଉ ମନ ନ ବଳାଅ ।
ଆପଣା ଧର୍ମରେ ରହି କାଳ କଟାଇଲେ
ପ୍ରମାଦ ପରଶ କରି ନ ପାରଇ ଭଲେ ।
ଦୁଷ୍ଟ କ୍ଷତ୍ରିୟଙ୍କ ସଙ୍ଗେ କେବେ ହେଲେ ଯୁଦ୍ଧ
ନ କରିବୁ ଆରେ ବାବୁ ମନେ ବହି କ୍ରୋଧ ।
କ୍ଷତ୍ରିୟଙ୍କଠାରେ ଦୟା ଧର୍ମ କିଛି ହେଲେ
ସ୍ଥାନ ପାଇ ନାହିଁ ବୋଲିକରି ଜାଣ ଭଲେ ।
ଏରୂପେ ମାତାଙ୍କଠାରୁ ଶୁଣିକରି ରାମ
କହିଲେ ସେ କ୍ରୋଧାନ୍ଧରେ ହୋଇ ତମତମ ।
ବୋଇଲେ ଗୋ ମାତ ମୋର ପ୍ରତିଜ୍ଞାଟି ଏହି
ଏକବିଂଶ ଥର ବୁଲି ବୁଲି ସର୍ବ ମହୀ ।
ବାଳବୃଦ୍ଧ ସହିତରେ କ୍ଷତ୍ରିୟଙ୍କ କୁଳ
ବିନାଶ କରିଣ ସବୁ କରିବି ନିର୍ମୂଳ ।
ପ୍ରଥମେ କ୍ଷତ୍ରିୟ ମୂଢ଼ ସହସ୍ରାର୍ଜ୍ଜୁନକୁ
ମାରିବି ଯୁଦ୍ଧକ୍ଷେତ୍ରରେ ପ୍ରକାଶି ବଳକୁ ।
ତା ରକ୍ତ ତର୍ପଣ କରି ପିତୃଙ୍କୁ ତୋଷିବି
ସେ ଅନ୍ତରେ ଅନ୍ୟ କ୍ଷତ୍ରିୟଙ୍କ ପ୍ରାଣ ନେବି ।
ଏମନ୍ତ କହିଣ ପୁଣି ବହୁତ କାନ୍ଦିଲେ
ମିଷ୍ଟମୟ ବାକ୍ୟେ ତହିଁ ମାତାଙ୍କୁ ବୋଧିଲେ ।
ବୋଇଲେ ଯେ ପିତାଙ୍କର ଜୀବନ ଘେନଇ
ନୋହିଲେ ବା ତାହାଙ୍କର ବୃତ୍ତି ହରିନେଇ ।
ତାର ପ୍ରତିଶୋଧ ନ କରଇ ଯେଉଁ ସୁତ
ମୂର୍ଖ ବୋଲିଣ ତାହାକୁ ବୋଲନ୍ତି ଜଗତ ।
ଅନ୍ତଃକାଳେ ରୌରବ ନରକ ମଧ୍ୟରେ
ପଡ଼ି ସେହି ଲୋକ ନାନାକଷ୍ଟ ଭୋଗ କରେ ।
ଅଗ୍ନିଦ ବିଷଦ କ୍ଷେତ୍ର ଦାରାପହାରକ
ଶସ୍ତ୍ରଧାରୀ ଧନ ପିତୃ ବନ୍ଧୁ ବିଧ୍ୱଂସକ ।
ସର୍ବଦା ମନ୍ଦ ବଚନ କହିବାରେ ରତ
ନିନ୍ଦାବାକ୍ୟ କଟୁକଥା ଭାଷଣେ ଆସକ୍ତ ।
ଏମନ୍ତ ଲୋକ ପାପୀଷ୍ଠ ବୋଲନ୍ତି ସଂସାରେ
ଏହାଙ୍କୁ ବଧିଲେ ପାପ ପରଶ ନ କରେ ।

ବ୍ରାହ୍ମଣମାନଙ୍କଠାରୁ ଧନ ହରନେଲେ
ଅଥବା ବାମସ୍ଥାନରୁ ଶୃଗାଳ ଗଲେ ।
ବଧ କରିବା ସମାନ ଅଟଇ ସେ ଜାଣ
ସେପରି କରିବା ଲୋକ ବ୍ରହ୍ମଘାତ୍ୟ ପୁଣ ।
ଏହିରୂପେ ମାତା ଆଗେ ରାମ କହୁଥିଲେ
ଭୃଗୁମୁନି ଆସି ସେହି ସ୍ଥାନରେ ମିଳିଲେ ।
ମାତାପୁତ୍ର ଦୁହେଁ ତାଙ୍କୁ ଦେଖି ସେହିକ୍ଷଣି
ବିନୟ ଭାବ ପ୍ରକାଶ କଲେ ଧର୍ମ ଜାଣି ।
ଦୁଃଖିତ ହୋଇଣ ମୁନି ତାହାଙ୍କର ଆଗେ
କହି ଆରମ୍ଭିଲେ ଶାସ୍ତ୍ର ତତ୍ତ୍ୱକଥା ବାଗେ ।
ବୋଇଲେ ମୋହର ବଂଶେ ଜନ୍ମ ହୋଇ ରାମ
କାହିଁପାଇଁ ଶୋକ କରୁଅଛ ବହି ମମ ।
ଜଳ ବୁଦ୍‌ବୁଦର ତୁଲ୍ୟ ଅଟଇ ସଂସାର
କେଉଁ କଥା ଜଗତରେ ନୁହେ ଜାଣ ସ୍ଥିର ।
କେବଳ ଶ୍ରୀକୃଷ୍ଣ ନାମ ଅଟେ ସତ୍ୟମୟ
ଚିନ୍ତା କର ବାପୁ ତାହା ମନ କରି ଥୟ ।
ଅତୀତ ହେବା କଥକୁ ନ କର ଭାବନା
ଆସିବ କି ତାହା ଆଉ ବୃଥା କଷ୍ଟ ଗିନା ।
ଯାହା ହୋଇବାକୁ ଅଛି ହେବ ତା ଅବଶ୍ୟ
ସନ୍ଦେହ ବୋଲି ଏଥିରେ ନାହିଁ ଜାଣ ଲେଶ ।
ଭୂତ ବର୍ତ୍ତମାନ ଭବିଷ୍ୟତ ଯେ ବିଷୟ
କୃଷ୍ଣ ନିରୂପିତ ସବୁ ଅଟଇ ନିଶ୍ଚୟ ।
ନିବାରିବା ପାଇଁ ତାହା କାହାର ଶକତି
ନାହିଁ ବୋଲିକରି ତୁମ୍ଭେ ଭାବ ନିଜ ମତି ।
ମାୟାରେ ଜଡ଼ିତ ଅଛି ନିଖିଳ ସଂସାର
ମାୟାବୀଜ ପଞ୍ଚଭୂତ ନିର୍ମିତ ଶରୀର ।
ପ୍ରାତଃକାଳ ସ୍ୱପ୍ନତୁଲ୍ୟ ସୁଖଶାନ୍ତି ଭୋଗ
ପବନ ଯୋନ ପରାଏ ଘଟଇ ବିଯୋଗ ।
ସକଳ ଦେହରେ ଜୀବଆତ୍ମା ବିଦ୍ୟମାନ
କ୍ଷୁଧା ନିଦ୍ରା ଦୟାଆଦି ତାହାର ଅଧୀନ ।
ସେହି ଆତ୍ମା ଯେତେବେଳେ ଯାଏ ଦେହ ତେଜି
ସମସ୍ତେ ମାଆନ୍ତି ତାହା ସଙ୍ଗେ ସବେ ହେଜି ।
ପରମାତ୍ମାଠାରେ ଯାଇ ମିଳିତ ହୁଅନ୍ତି
ଶ୍ରୀକୃଷ୍ଣ ଯେ ପରମାତ୍ମା ସ୍ୱରୂପ ଅଟନ୍ତି ।
ଯେଉଁ ଲୋକ ତାଙ୍କୁ ଏକ ମନରେ ଭଜଇ
ଦୁସ୍ତର ସଂସାରୁ ସେହି ମୁକତ ହୁଅଇ ।
କାହାର କେ ପିତାମାତା କେ କାହାର ସୁତ
ଭୋଗ କରେ ଲୋକ ନିଜ କର୍ମ ଉପାର୍ଜିତ ।
ଜ୍ଞାନୀଜନେ ଯେ କଥାକୁ ଭାବି ନିରନ୍ତର
ସାନ୍ତ୍ୱନା ଦିଅନ୍ତି ନିଜ ମନକୁ ସତ୍ୱର ।
ଏ ସକାଶୁ ବୋଲୁଅଛି ଆହେ ବତ୍ସ ତୁମ୍ଭେ
ଶୋକ ପରିହରି କାର୍ଯ୍ୟ କର ବସି ଦମ୍ଭେ ।
ବେଦଶାସ୍ତ୍ରେ ଲେଖାଅଛି ମଲେ ଯେଉଁ ଲୋକ
କାନ୍ଦିଲେ ତା ପାଇଁ ସେହି ଲଭଇ ନରକ ।
ବନ୍ଧୁ ବାନ୍ଧବଙ୍କ ଯେବେ ଶତବର୍ଷ ଯାଏ
ଶୋକ କଲେ ମଧ ତାକୁ ନ ଦେଖାନ୍ତି କାଏ ।
ମରିବା ଲୋକର ଦେହ ପୃଥିବୀର ଅଂଶ
ଯେତେ ଥାଏ ତାହା ମାଟି କରଇ ଗ୍ରାସ ।
ଜଳଅଂଶ ଜଳେ ଶୂନ୍ୟ ମିଶଇ ଗଗନ
ବାୟୁଅଂଶ ବାୟୁଠାରେ ହୋଇଯାଏ ଲୀନ ।
ତେଜରେ ବିଲୀନ ହୁଏ ତେଜର ଯେ ଅଂଶ
ଏରୂପେ ଯେ ଯାହା ସ୍ଥାନେ ହୁଅନ୍ତି ପ୍ରବେଶ ।
କେବଳ ଯେ ନାମ ଯଶ ଧର୍ମ ଶୁଭକାର୍ଯ୍ୟ
ରହଇ ଯେ ସଂସାରରେ ହୋଇ ଅନିବାର୍ଯ୍ୟ ।
ଦେହରେ ଯେରୂପେ ଘଟେ ଲୋକ କର୍ମମାନ
ନିରୂପିତ ହୋଇଅଛି କର ତା ପାଳନ ।
ଏମନ୍ତ ଭୃଗୁଙ୍କ ବାକ୍ୟ ଶୁଣିବାରୁ ରାମ
ଶାନ୍ତ ହୋଇଲେ ମାନସରୁ ଛାଡ଼ି ଶୋକଭ୍ରମ ।
ରେଣୁକା ମଧ୍ୟ ସେରୂପେ ସାନ୍ତ୍ୱନା ପାଇଲେ
ଶ୍ରୀକୃଷ୍ଣ ସ୍ମରିଣ ଶୀଘ୍ରେ ଶୋକବାଧା ନେଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ କାର୍ତ୍ତବୀର୍ଯ୍ୟଙ୍କ ଦ୍ୱାରା ମୁନିଙ୍କର ପ୍ରାଣନାଶ ଓ ଭୃଗୁ ରେଣୁକାଙ୍କର ଆଳାପ ଆଲୋଚନା କଥନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

——

# ସପ୍ତତ୍ରିଂଶ ଅଧ୍ୟାୟ

## ଭୃଗୁ ସହିତ ରେଣୁକାଙ୍କର କଥୋପକଥନ

ଏଥୁ ଅନନ୍ତରେ ପୁଣି ଭୃଗୁଙ୍କୁ ଅନାଇ
ପଚାରିଲେ ସେ ରେଣୁକା ଶରଚ୍ଚନ୍ଦ୍ରମୁଖୀ ।
ବୋଇଲେ ଆହେ ଧାର୍ମିକ ପ୍ରବର ମହର୍ଷି
ମୋ ଭାଗ୍ୟକୁ ତୁମ୍ଭେ ଉପସ୍ଥିତ ହେଲେ ଆସି ।
ପ୍ରାଣନାଥଙ୍କ ସଙ୍ଗରେ ଯିବାପାଇଁ ମୁହିଁ
ଇଚ୍ଛା କରୁଅଛି ଚିତାନଳେ ଝାସଦେଇ ।
ଗୋଟିଏ କଥାରେ ମୋତେ ହେଉଛି ସନ୍ଦେହ
ବିଷଦରୂପେ ବୁଝାଇ ତାହା ମୋତେ କହ ।
ଋତୁମତୀ ହେବା ଦିନଠାରୁ ଆଜପର
ଭୋଗ ହୋଇଅଛି ମୋର ଦିବସ ଯେ ଗୃର ।
ଏଥିରେ ପତିଙ୍କ ସଙ୍ଗେ ସତୀ ଯିବାପାଇଁ
ଶାସ୍ତ୍ରର ସମ୍ମତ ଏହା ହୋଇଛି କି ନାହିଁ ।
ତୁମ୍ଭଠାରୁ ଶୁଣିଲେ ମୋ ମନ ହେଉ ସ୍ଥିର
ଏ ଯେନି ପଚାରୁ ଅଛି ଆହେ ମୁନିବର ।
ତାହାଶୁଣି ଭୃଗୁମୁନି ବୋଇଲେ ହୋ ସତୀ
ପୁଣ୍ୟ ଚରିତ୍ର ଅଟନ୍ତି ତୁମ୍ଭର ଯେ ପତି ।
ତାହାଙ୍କ ସଙ୍ଗତେ ତୁମ୍ଭେ ଯିବାପାଇଁ ଯେବେ
ମନ କରୁଅଛ ଭଲ ହେବ ଜାଣ ତେବେ ।
ଋତୁମତୀ ହେବାଠାରୁ ଚତୁର୍ଥ ଦିନରେ
ଯୋଗ୍ୟ ଅଟେ ପ୍ରିୟଜନ ପତିର କାର୍ଯ୍ୟରେ ।
ଦେବତା ପିତୃକାର୍ଯ୍ୟରେ ପଞ୍ଚମ ଦିବସେ
ଶୁଦ୍ଧି ଲଭ କରଇନ୍ତି ଜାଣ ସ୍ନାନ ଶେଷେ ।
ଯେପରୂପେ ସାପୁଆ ଗର୍ତ୍ତ ମଧ୍ୟରୁ ସର୍ପକୁ
ବାହାର କରେ ଦେଖାଇ ନିଜ ପ୍ରଭାବରୁ ।
ସେହିପରି ସତୀସ୍ତ୍ରୀ ପତିକୁ ପାପରୁ
ଉଦ୍ଧରି ସ୍ୱର୍ଗକୁ ଯାଏ ଧର୍ମ ପ୍ରଭାବରୁ ।
ତୁମ୍ଭେ ଏବେ ସେହିପରି ସ୍ୱର୍ଗପୁରେ ଯାଇ
ଭୋଗ କର କର୍ମଫଳ ପତି ସଙ୍ଗେ ରହି ।
ପିତାକୁ ଯେ ଭକ୍ତି କରେ ସେ ଏକା କୁମର
ସେ ସ୍ତ୍ରୀ ଯେ ଦେହ ଅନ୍ତେ ଯାଏ ସଙ୍ଗତର
ସ୍ନେହ ରଖିଥିଲେ ବନ୍ଧୁ ବୋଲାଏ ଅଧିକ
ଶିଷ୍ୟ ଅଟଇ ସେ ଯେହୁ ଗୁରୁ ଉପାସକ ।
ଆପଦୁ ରଖିଲେ ଇଷ୍ଟ ଦେବତା ଉତ୍କୃଷ୍ଟ
ଉତ୍ତମ ରାଜା ଯେ ଜାଣେ ପ୍ରଜାଙ୍କର କଷ୍ଟ ।
ଭଗବାନ୍‌କୁ ସତନରେ ମାନଇ ଯେ ଲୋକ
ସ୍ୱାମୀଙ୍କ ମଧ୍ୟରେ ସେହି ଅଟଇ ଅଧିକ ।
ଶ୍ରୀହରିଙ୍କଠାରେ ଭକ୍ତି ଭାବ ଯେ ଦିଅଇ ।
ସେହିଟି ଉତ୍ତମ ଗୁରୁ ଜଗତେ ବୋଲାଇ ।
ବେଦ ପୁରାଣ ଶାସ୍ତ୍ରରେ ଏହି ଲୋକମାନେ
ପ୍ରଶଂସା ଯୋଗ୍ୟ ହୁଅନ୍ତି ଜାଣ ସର୍ବସ୍ଥାନେ ।
ରେଣୁକା ବୋଇଲେ ଏହି ଭାରତବର୍ଷରେ
କେଉଁ ସ୍ତ୍ରୀ ପତି ସଙ୍ଗେ ଗତି କରିପାରେ ।
କେବଣ କାମିନୀ ଅବା ଅଯୋଗ୍ୟା ଅଟଇ
ଏ କଥା ଆପଣ ମୋତେ କହନ୍ତୁ ବତାଇ ।
ଭୃଗୁ ବୋଇଲେ ଯେ କଥା କହୁଅଛି ଶୁଣ
ବାଳ ଶିଶୁଗ୍ରସ୍ତ ଯେହୁ ଲଭଇ ମରଣ ।
ଗର୍ଭିଣୀ ଅଦୃଷ୍ଟ ଋତୁ ହୋଇଥାଏ ଯେବା
ରଜସ୍ୱଳା ହୋଇ ମୃତ୍ୟୁ ହୋଇଲେ ଅଥବା ।
କୁଳଟା ବ୍ୟାଧି ସଙ୍କୁଳ ଶରୀର ଯେ ସ୍ତ୍ରୀ
ପତିକୁ ଯେ କଟୁକଥା କହେ ନ ବିଚାରି ।
ଏମନ୍ତ କାମିନୀମାନେ ଦଇବ ଯୋଗରେ
ମଲେ ନ ଯାଆନ୍ତି କେବେ ପତି ସଙ୍ଗତରେ ।
ସଂସାର ଅଗ୍ନିକୁ ଆଗ ଚିତାପରେ ରଖି
ପତି ସଙ୍ଗେ ଯେବେ ସତୀ ଯିବ ହୋଇ ସୁଖୀ ।
ଆପଣାର ପୁଣ୍ୟ ସଙ୍ଗେ ପତିଙ୍କର ପୁଣ୍ୟ
ମିଶ୍ରିତ କରି ଯେ ଭୋଗ କରେ ହୋଇ ଧନ୍ୟ ।
ଗୃହୀମାନଙ୍କର ଏହା କର୍ତ୍ତବ୍ୟ ଅଟଇ
ବୈଷ୍ଣବମାନଙ୍କ କଥା ଶୁଣ କହୁଥାଇ ।
ବୈଷ୍ଣବକାନ୍ତକୁ ତୀର୍ଥସ୍ଥାନେ ଅନୁଗତ
ହୁଅନ୍ତି ଯେ ତାର ଧର୍ମ ଅଟଇ ନିଶ୍ଚିତ ।
ବୈକୁଣ୍ଠପୁରକୁ ସ୍ୱାମୀ ସଙ୍ଗତରେ ଯାଇ
ଶ୍ରୀହରିଙ୍କ ସମୀପରେ ଆନନ୍ଦେ ରହଇ ।
ଭକ୍ତମାନଙ୍କର ତୀର୍ଥେ ଅବା ଅନ୍ୟସ୍ଥାନେ
ମରଣେ ପ୍ରଭେଦ ନାହିଁ ବୋଲି ଘେନ ମନେ ।

ହରିଭକ୍ତ ଥାଏ ଯେଉଁ ପଣ୍ଡ ପତ୍ନୀଠାରେ
ତାହାଙ୍କର ପାପ ନୁହେ କେବଣ ପ୍ରକାରେ ।
ନାରାୟଣଙ୍କୁ ଭଜଇ ସୁ ବୃଷ ନିଷ୍ଠସୁ
କାମିନୀ ହୁଅଇ ଲକ୍ଷ୍ମୀ ଶ୍ରୀଅଙ୍ଗରେ ଲୟ ।
ଜ୍ଞାନୀ ଲୋକ ତୀର୍ଥସ୍ଥାନେ ମଲେ ପତ୍ନୀ ଘେନି
ବୈକୁଣ୍ଠେ ବାସ କରଇ ଚିରକାଳ ଜାଣି
ଏହିରୂପେ ଭୃଗୁଋଷି ରେଣୁକାଙ୍କୁ କହି
ରାମଙ୍କୁ ବୋଇଲେ ତୁମ୍ଭେ ଶୁଣ ମନ ଦେଇ ।
ଅମଙ୍ଗଳକର ଅଟେ ଶୋକ କରିବାର
ମୋର ବୋଲେ ତାକୁ ଛାଡ଼ ଜ୍ଞାନୀଙ୍କର ବର ।
ତାତଙ୍କ ମୃତ ଶରୀର ଉତ୍ଥାନ କରିଅ
ଦକ୍ଷିଣକୁ ମୁଣ୍ଡକରି ଯତନରେ ଥୁଅ ।
ନୂଆବାସ ପଞ୍ଚସୂତ୍ର ଦେଇଣ ତାହାକୁ
ଦକ୍ଷିଣ ମୁଖରେ ରହ ଛାଡ଼ ବିଳାପକୁ ।
ଅରଣୀରେ ଅଗ୍ନି ଘେନି ନାନା ତୀର୍ଥଗଣ
ଭକ୍ତିଭରେ ଥରେ ଥରେ କର ସୁମରଣ ।
ଆବର ଯେ ରଇବତ ବରାହ ଶ୍ରୀ ଶୈଳ
ଗନ୍ଧମାଦନ କୈଳାସ ସୁବର୍ଣ୍ଣ ଅଚଳ ।
ହିମାଳୟ ଆଦିକରି ମୁଖ୍ୟଗିରି ଯେତେ
ସମସ୍ତଙ୍କୁ ସୁମରଣା କର ନୋହିଶଚିତ୍ତେ ।
ବାରାଣସୀ ବୃନ୍ଦାବନ ପ୍ରୟାଗ ବଦରି
ସୁମରଣା କର ହରିଦ୍ୱାର ଆଦିକରି ।
ଚନ୍ଦନ କସ୍ତୁରୀ ଆଦି ସୁଗନ୍ଧ ଯେ ଦ୍ରବ୍ୟ
ପିତାଙ୍କ ଶବରେ ତାହା ଦିଅ ଆଣି ସର୍ବ ।
ବସ୍ତ୍ର ଆଚ୍ଛାଦନ କରି ଚନ୍ଦନ ଚିତାରେ
ଥୋଇଣ ଅଗ୍ନି ଲଗାଅ ବିଧି ଅନୁସାରେ ।
କର୍ଣ୍ଣ ଆଖି ନାସିକାରେ ସୁବର୍ଣ୍ଣ ନିର୍ମିତ
ଶଳାକା ଗୁଡ଼ାଏ ବେଗେ କର ନିର୍ମାଣିତ ।
ବ୍ରାହ୍ମଣଙ୍କୁ ଡକାଇଣ ଦାନ କରି ଦିଅ
ଦକ୍ଷିଣା ସହିତେ ଦେଇ ସନ୍ତୁଷ୍ଟ କରିଅ ।
କରଯୋଡ଼ି ବୋଲ ଆହେ ଧର୍ମ ଆଦିଦେବେ
ସକଳ କର୍ମରେ ସାକ୍ଷୀ ଅଟ ତୁମ୍ଭେ ସର୍ବେ ।
ଲୋଭ ମୋହରେ ମନୁଷ୍ୟ ହେଉଥାଏ ଘାରି
ମୃତ୍ୟୁପରେ ଯାଏ ନିଜ କର୍ମ ଅନୁସରି ।
ଶୁଦ୍ଧ ଅନଳରେ ଦଗ୍ଧ ହେଉଛନ୍ତି ଏହି
ପାଆନ୍ତୁ ଦିବ୍ୟଲୋକକୁ ପାପ ଛାଡ଼ିଦେଇ ।

ଏ ମନ୍ତ୍ରକୁ ପଢ଼ି ଚିତା ପ୍ରଦକ୍ଷିଣ କର
ଆବର ଅନଳ ପୁଣି ନିଜ ହସ୍ତେ ଧର ।
ବୋଲ ଆହେ ହୁତାଶନ ତୁମ୍ଭେ ସର୍ବବ୍ୟାପୀ
ତୁମ୍ଭ ଯୋଗେ ମୋର ପିତା ତରନ୍ତୁ ଅଦ୍ୟାପି ।
ଏମନ୍ତ ବୋଲି ପିତାଙ୍କ ଶବ ଶିର ସ୍ଥାନେ ।
ଅଗ୍ନି ଦେଇ ସ୍ନାନ କରି ଆସ ତୋଷମନେ ।
ଏରୂପେ ଭୃଗୁଙ୍କ ବାକ୍ୟ ଶୁଣିକରି ରାମ
ମଥାବନ୍ଧି କାଳେ ସବୁ ଛାଡ଼ ଶୋକତମ ।
ଯେଉଁକାଳେ ରେଣୁକା ଶୁଦ୍ଧସ୍ନାନ ହୋଇକରି
କହିଲେ ପୁତ୍ରକୁ ନିଜ ବକ୍ଷଦେଶେ ଧରି ।
ବୋଇଲେ ରେ ସୁତ ଦୁଷ୍ଟ କ୍ଷତ୍ରିୟଙ୍କ ତୁଲେ
ଯୁଦ୍ଧ କରିବା ଉଚିତ ନୁହଇଟି ଭଲେ ।
ପ୍ରତିଜ୍ଞା ପାଳିବାପାଇଁ ଯେବେ ତା କରିବୁ
ଭୃଗୁଙ୍କ ସହିତେ ଆଗ ବସିଣ ଭାଳିବୁ ।
ଉତ୍ତମ ଲୋକଙ୍କୁ ଯାହା ବିଶ୍ୱଣ କରିବ
ତହିଁରେ ପ୍ରମାଦ କେବେହେଁ ନ ପଡ଼ିବ ।
ଏତେ ବୋଲି କୁମରକୁ ଛାଡ଼ ମହାସତୀ
ପତିଙ୍କ ଦେହରେ ଦେହ ମିଶାଇ ଝୁଣ୍ଟନ୍ତି ।
ଶ୍ରୀହରିଙ୍କୁ ସୁମରଣା କରି ଚିତାପରେ
ଶୋଇଲେ ବୈରାଗ୍ୟ ପୋଷି ଆପଣା ମନରେ
ରାମ ରାମ ବୋଲି ଡାକଦେଲେ ବାରମ୍ବାର
ଏହିକାଳେ ଘୋଟିଗଲା ଚଣ୍ଡ ବୈଶ୍ୱାନର ।
ମୁହୂର୍ତ୍ତେ ମଧ୍ୟରେ ପୋଡ଼ି ତାହାଙ୍କର ଅଙ୍ଗ
ହେଲା ମହାମହଳାର ଧୂଳିତୁଲେ ସଙ୍ଗ ।
ତାହାଦେଖି ରାମ ଭାଇମାନଙ୍କ ସହିତେ
ବହୁତ ବିଳାପ କଲେ ଅଶ୍ରୁ ଝରି ନେତ୍ରେ ।
ଭର୍ତ୍ତାଙ୍କ ଅନୁଜ୍ଞା ପାଇ ବିଷ୍ଣୁ ଦୂତଗଣ
ଆସିଲେ ଯମଦଗ୍ନିଙ୍କ ଚିତା ସନ୍ନିଧାନ ।
ସମସ୍ତେ ହୋଇଅଛନ୍ତି ସୁବର୍ଣ୍ଣ ଭୂଷିତ
ଆରୋହଣ କରିଛନ୍ତି ସ୍ୱର୍ଣ୍ଣମୟ ରଥ ।
ଚତୁର୍ଭୁଜେ ଶଙ୍ଖଚକ୍ର ଗଦାପଦ୍ମ ଧରି
ଦିଶୁଛନ୍ତି ସାକ୍ଷାତରେ ଶ୍ରୀହରିଙ୍କ ପରି ।
କିରୀଟ କୁଣ୍ଡଳ ପୀତ କୌଶେୟ ବସନ
ରୂପ ଦିଶୁଅଛି ଅତିଶୟ ଶୋଭାବନ ।
ରେଣୁକାକୁ ରଥପରେ ବସାଇଣ ନେଲେ
ବ୍ରହ୍ମଲୋକ ମଧ୍ୟେ ଯାଇ ପ୍ରବେଶ ହୋଇଲେ ।

ସେହିଠାରେ ଥିଲେ ଯମଦଗ୍ନି ମୁନିବର
ତାଙ୍କୁ ମଧ୍ୟ ବସାଇଲେ ସେ ରଥ ମଧ୍ୟର ।
ବଇକୁଣ୍ଠ ଭୁବନରେ ପରବେଶ ହୋଇ
ବିଷ୍ଣୁଙ୍କ ସହିତେ ଦେଖା କରାଇଲେ ନେଇ ।
ସେ ପତିବ୍ରତୀ ବେନିହେଁ ଶ୍ରୀହରିଙ୍କୁ ସେବି
ରହିଲେ ଅନ୍ୟ କଥାକୁ ମନରେ ନ ଭାବି ।
ଏଥୁ ଅନନ୍ତରେ ରାମ ଶୋକ ତ୍ୟାଗକରି
ଭୃଗୁଙ୍କ ସଙ୍ଗତେ ବିପ୍ରମାନଙ୍କୁ ହକାରି ।
ପିତାମାତାଙ୍କର ଶେଷକ୍ରିୟା ବିଧିମତେ
ଭକ୍ତିକୁ ସେନ ସମାପ୍ତ କଲେ ଦୁଃଖିତରେ ।
ବ୍ରାହ୍ମଣଙ୍କୁ ଧନରତ୍ନ ଭୂମି ବସ୍ତ୍ର ଆଦି
ଖଟଶଯ୍ୟା ସହିତରେ ଦେଲେ ସେ ସମ୍ବାଦି ।
ସୁବର୍ଣ୍ଣ ରତନଦୀପ କୁଙ୍କୁମ ଚନ୍ଦନ
ଛତ୍ର ଉପାନହ ଆଦି କରାଇଲେ ଦାନ ।
ତାମ୍ବୁଳ କୁସୁମମାଳା ମୂଳପୁଷ୍ପ କେତେ
ଦେଲେ ନାନାବିଧ ଭକ୍ଷପଦାର୍ଥ ସହିତେ ।
ସେ ଅନ୍ତେ ଭୃଗୁଙ୍କ ସଙ୍ଗେ ବେନିକରି ଗଲେ
ବ୍ରହ୍ମଲୋକରେ ଯାଇଣ ପ୍ରବେଶ ହୋଇଲେ ।
ଦେଖିଲେ ସେ ପୁର ଅଟେ କନକ ନିର୍ମିତ
ସ୍ୱର୍ଣ୍ଣ ପ୍ରାକାର ସୁବର୍ଣ୍ଣ କୁମ୍ଭ ବିରାଜିତ ।
ରତ୍ନ ସିଂହାସନପରେ ବ୍ରହ୍ମା ପ୍ରଜାପତି
ଜ୍ୱଳନ୍ତ ଅନଳଶିଖା ସମାନ ଦିଶନ୍ତି ।
ବିବିଧ ରତ୍ନଭୂଷଣ ଦେହେ ତାହାଙ୍କର
ଉତ୍ତମ ତେଜରେ ହୋଇଛନ୍ତି ମନୋହର ।
ସିଦ୍ଧମୁନି ଋଷିଗଣ ବେଢ଼ି ଚାରିପାଶେ
ବସିଛନ୍ତି ସେଠାମତେ ଅତ୍ୟନ୍ତ ହରଷେ ।
ସଙ୍ଗୀତ ଗାୟନ କରି ବିଦ୍ୟାଧର ବାଳା ।
ନୃତ୍ୟ କରୁଛନ୍ତି ଟଳେ ଯେନ ରତ୍ନମାଳା ।
ଚନ୍ଦନ କସ୍ତୁରୀ ତାଙ୍କ ଅଙ୍ଗେ ଲଗିବାରୁ
ସୁଗନ୍ଧ ଚହଟି ଆସୁଅଛି ଖଣ୍ଡଦୂରୁ ।
ସେହି ନୃତ୍ୟ ଗାୟନକୁ ଏକଲୟ କରି
ଶୁଣୁ ଅଛନ୍ତି ବିଧାତା ମନକର୍ଣ୍ଣ ଡେରି ।
କେତେବେଳେ ଶିଷ୍ୟଙ୍କର ମୁଖକୁ ଅନାଇ
କହୁଛନ୍ତି ବେଦଶାସ୍ତ୍ର ତତ୍ତ୍ୱକୁ ବୁଝାଇ ।
ଏହା ଦେଖି ପର୍ଶୁରାମ ତାଙ୍କ ପାଦେ ପଡ଼ି
ଉଭା ହେଲେ ଆଗେ ବେନିକର ଶିରେ ଯୋଡ଼ି
ଭକ୍ତିରେ ନିବେଦନ କରି ଆପଣା ବୃତ୍ତାନ୍ତ
କହି ଆରମ୍ଭିଲେ ଚିତ୍ତେଁ ହୋଇଣ ଦୁଃଖିତ ।
ବୋଇଲେ ଆହେ ବିଧାତା ତୁମ୍ଭ ବଂଶେ ମୁହିଁ
ଯମଦଗ୍ନିଙ୍କ ବୀର୍ଯ୍ୟରେ ଜାତ ଅଛି ହୋଇ ।
ଏଣୁ ମୋର ପିତାମହ ଅଟନ୍ତି ଆପଣ
ଦୁଃଖ କହିବି ମୁଁ ଆଜ କାହା ଆଗେ ପୁଣ ।
ମୃଗୟା କରିବା ପାଇଁ ରାଜା ସହସ୍ରାର୍ଜ୍ଜୁନ
ଉପସ୍ଥିତ ହେଲା ଦିନେ ସୈନ୍ୟଙ୍କୁ ଘେନିଣ ।
ତପୋବନେ ଏଣେତେଣେ ବୁଲୁଥିଲା ସେହି
ତାକୁ ଦେଖି ମୋର ପିତା ଦୟା ମନେ ବହି ।
କପିଳାକୁ କହି ନାନାଦ୍ରବ୍ୟ ଅଣାଇଲେ
ସୈନ୍ୟ ସହିତେ ରାଜାକୁ ସତ୍କାର କଲେ ।
କପିଳା ପ୍ରଭାବ ଦେଖି ରାଜା ମନେ ମନେ
ଭାବିଲା ଗାଈଟି ଘେନିଯିବି ମୁଁ ଯତନେ ।
ସେ ଅନ୍ତେ ମୋର ପିତାକୁ ମାଗିଲା ସେ ଯାଇ
ବୋଇଲା ହେ ମୁନି ମୋତେ ଦିଅ ଏହି ଗାଈ ।
ମୋ ପିତା ବୋଇଲେ ଏହି ଧେନୁକୁ ଆଦରେ
ରଖିଛି ଅନ୍ୟ କାହାକୁ ଦେଇ ମୁଁ ନ ପାରେ ।
ତାହା ଶୁଣି କାର୍ତ୍ତବୀର୍ଯ୍ୟ ଯୁଦ୍ଧ ଆରମ୍ଭିଲା
ବ୍ରହ୍ମଶକ୍ତି ମାରି ତାଙ୍କ ଜୀବନ ଘେନିଲା ।
ଏମନ୍ତ କହି ବହୁତ ରୋଦନ ସେ କଲେ
ପୁଣି ଆଶ୍ୱାସିତ ହୋଇ ବଚନ କହିଲେ ।
ବୋଇଲେ ରେଣୁକା ମୋର ଅଟନ୍ତି ଜନନୀ
ସତୀ ଗଲେ ପତିସ୍ନେହ ମନେ ମନେ ଗୁଣି ।
ମାତାପିତାହୀନ ହୋଇଅଛି ଏବେ ମୁହିଁ
ରକ୍ଷାକର ପ୍ରଭୁ ମୋତେ ମନେ ଦୟାବହି ।
ମାତାଙ୍କ ଅନୁଜ୍ଞା ସ୍ମରି ତୁମ୍ଭର ସଭାକୁ
ଆସିଛି ଉପାୟ ବୁଦ୍ଧି ଶତ୍ରୁ ମାରିବାକୁ ।
ଜନଲୋକଙ୍କୁ ପାଳନ କରେ ଯେଉଁ ଲୋକ
ସେହି ଏକା ସଂସାରରେ ଅଟଇ ଅଧିକ ।
ଆବର ପୂଜ୍ୟ ଅଟଇ ସକଳ ଲୋକରେ
ଧନ୍ୟ ଧନ୍ୟ ବୋଲୁଥାନ୍ତି ତାକୁ ସର୍ବନରେ ।
ଯେଉଁ ରାଜା ଉଚିତ ଭାବକୁ ବିଚାରି
ପାଳନ ନ କରେ ପ୍ରଜା ପୁତ୍ର ନାତିପରି ।
ତାହାଠାରେ ମହାଲକ୍ଷ୍ମୀ ମହାକ୍ରୋଧ ବହି
ଯତ୍ନରେ ସେବିଲେ ହେଁ ଯାଆନ୍ତି ପଳାଇ ।

ଏରୂପେ ରାମଙ୍କ ବାକ୍ୟ ଶୁଣିବାରୁ ବିଧି
ଆଶୀର୍ବାଦ କଲେ ସେ ତ କରୁଣା ବାରିଧି ।
ସେ ଅନ୍ତରେ ଆପଣାର ବକ୍ଷେ ବସାଇଲେ
ପ୍ରତିଜ୍ଞା ଶୁଣିଣ ଅତି ବିସ୍ମିତ ହୋଇଲେ ।
ବୋଇଲେ ଯେ ପ୍ରତିଜ୍ଞାଟି କରିଅଛ ତାତ
ତହିଁରେ ବହୁତ ପ୍ରାଣୀ ହୋଇବେ ନିହତ ।
କାଳବଶେ କ୍ରମେ ସବୁକଥା ଘଟିଥାଏ
କାଳର ମହିମା ଜାଣି ନ ପାରଇ କିଏ ।
ଦୁର୍ଲ୍ଲଭ ପ୍ରତିଜ୍ଞା ଯାହା କଲ ଏବେ ତୁମ୍ଭେ
ଏଥିରେ ବହୁତ କଷ୍ଟ ହେବ ଜାଣୁ ଆମ୍ଭେ ।
ଈଶ୍ୱର ଇଚ୍ଛାରେ ସୃଷ୍ଟି ହେଲା ଉତପନ୍ନ
ବହୁତ କଷ୍ଟରେ ମୁହିଁ କଲି ସରଜନ ।
ତୁମ୍ଭ ପ୍ରତିଜ୍ଞାରେ ଲୋପହେବା ପରି ମୋର
ବିଶ୍ୱାସ ହେଉଛି ଆହେ ରାମ ମନେ କର ।
ଏକବିଂଶ ଥର ବୁଲି ସମଗ୍ର ମେଦିନୀ
କ୍ଷତ୍ରିୟ ଶୂନ୍ୟ କରିବ ବୋଲୁଛ ଯେ ହେନି ।
ଗୋଟିଏ କ୍ଷତ୍ରିୟ ଦୋଷେ ଜାତିଟିର ନାଶ
ହୋଇବ ଏ କଥା ଆସି ହେଲା ପରବେଶ ।
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ବୈଶ୍ୟ ଚାରିଜାତି
ଏହାଙ୍କୁ ଘେନିଣ ସୃଷ୍ଟି ହୋଇଛି ଉତ୍ପତ୍ତି
ଏଥିରୁ ଗୋଟିଏ ଏବେ ତୁମ୍ଭ ପ୍ରତିଜ୍ଞାରେ ।
ମୂଳ ସହିତେ ବିନଷ୍ଟ ହେବ ନିଶ୍ଚୟରେ ।
ବହୁତ ଆଶ୍ୱାସ ପାଇ ଏହି ପ୍ରତିଜ୍ଞାକୁ
ସମର୍ଥ ହୋଇବ ତୁମ୍ଭେ ରକ୍ଷା କରିବାକୁ ।
ପ୍ରଥମରେ ଶିବଙ୍କର ସମୀପକୁ ଯାଅ
ଶରଣାଗତ ହୋଇଣ ସମସ୍ତ ଜଣାଅ ।
ପୃଥିବୀରେ ଶିବପ୍ରିୟ ଶିବ ଉପାସକ
ଅଛନ୍ତି ବହୁତ ସ୍ଥାନେ କ୍ଷତ୍ରିୟ ଅନେକ ।
ସମସ୍ତଙ୍କଠାରେ ଶିବ କବଚ ଅଛଇ
ସେ ଯୋଗେ ତାହାଙ୍କୁ ଜିଣି ନ ପାରନ୍ତି କେହି ।
ଶିବଙ୍କ ଅନୁଜ୍ଞା ବିନା ତୁମ୍ଭେ ସେମାନଙ୍କୁ
ମାରି ନ ପାରିବ ଏହା ଆସୁଛି ମନକୁ ।
ଏ ସକାଶୁ ଜିଣିବାର ଉପାୟକୁ ଆଗ
କରି ରଖ ମନରେ ଆହେ ମହାଭାଗ ।
ଉପାୟ କରିଣ କାର୍ଯ୍ୟ ଆରମ୍ଭ ଯେ କରେ
ତାର ପରିଶ୍ରମ ସାର୍ଥ ହୁଏ ନିଶ୍ଚୟରେ ।
ଶଙ୍କରଙ୍କଠାରୁ ତୁମ୍ଭେ ଶ୍ରୀକୃଷ୍ଣ କବଚ
ମନ୍ତ୍ର ସହିତେ ଗ୍ରହଣ କର ଯାଇ ବତ୍ସ ।
ଶାକ୍ତ ଶୈବ ବଇଷ୍ଣବ ତେଜ ପ୍ରଭାବରେ
ଅସାଧ୍ୟ ସାଧନ ହୋଇପାରେ ନିରନ୍ତରେ ।
ଜଗତକରତା ଶିବ ହେବେ ତୁମ୍ଭ ଗୁରୁ
ଯୁକ୍ତ ନୁହେ ମନ୍ତ୍ର ଶିଖିବାର ଆନଠାରୁ ।
ଉତ୍ତମ ଗୁରୁଙ୍କଠାରୁ ମନ୍ତ୍ରକୁ ଶିଖିବ
ତେବେ ସମୟରେ ତାହା କାର୍ଯ୍ୟକୁ ଆସିବ ।
ତ୍ରୈଲୋକ୍ୟ ବିଜୟ ନାମ କବଚ ଆବର
ଶିବଙ୍କଠାରୁ ଗ୍ରହଣ କରିବ ସତ୍ୱର ।
ତେମନ୍ତ ହେଲେ ତୁମ୍ଭର ପ୍ରତିଜ୍ଞା ପାଳନ
କରିବାକୁ ସମରଥ ହେବ ତୁମ୍ଭେ ଜାଣ ।
ଅମୋଘ ଯେ ପାଶୁପତ ଅସ୍ତ୍ରଲାଭ କରି
ଦୁର୍ଜନ କ୍ଷତ୍ରିୟକୁଳ ପାରିବ ସଂହାରି ।
ଏରୂପେ ପର୍ଶୁରାମଙ୍କୁ କହି ବେଦବର
ନୀରବ ହୋଇଲେ ଗୀତେ ଭଣେ ଖେଳଗ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଭୃଗୁ ଓ ରେଣୁକାଙ୍କର କଥୋପକଥନେ
ନାମ ସପ୍ତବିଂଶୋଽଧ୍ୟାୟଃ ।

—*—

## ଅଷ୍ଟାବିଂଶ ଅଧ୍ୟାୟ

### ପର୍ଶୁରାମଙ୍କର ଶିବଲୋକକୁ ଗମନ ଓ ତାଙ୍କ ସହିତ କଥୋପକଥନ

ନାରାୟଣ କହୁଛନ୍ତି ଶୁଣ ମୁନିବର
ପରଶୁରାମ ଶୁଣିଣ ବ୍ରହ୍ମାଙ୍କ ଉତ୍ତର ।
ପ୍ରଣାମ କରି ତାହାଙ୍କୁ ଆନନ୍ଦିତ ହେଲେ
ଶିବଲୋକରେ ଯାଇଣ ସେକ୍ଷଣି ମିଳିଲେ ।
ବ୍ରହ୍ମଲୋକଠାରୁ ଲକ୍ଷେ ଯୋଜନ ଉପରେ
ଅଛନ୍ତି ସେ ବଇକୁଣ୍ଠ ବାମ ପାର୍ଶ୍ୱରେ ।
ତା ତଳରେ ଧ୍ରୁବଲୋକ ଉପରେ ଗୋଲୋକ
ତେଜରେ ସର୍ବଦା ଦିଶୁଥାଏ ଜକଜକ ।

ଶ୍ମଶାନ କୋଟିପୁର ବସ୍ତୁର ଅଟଇ
ତା ଉପରେ ଆଉ କେହୁ ଲୋକ ରହୁ ନାହିଁ ।
ପ୍ରବେଶ ହୋଇ ସେଠାରେ ମର୍ତ୍ତ୍ୟ ରାମ ପଣ୍ଡ
ଦେଖିଲେ ପୁଣିହୁ ତହିଁ ସକଳ ଅଦ୍ଭୁତ ।
କୋଟିକଳ୍ପ ତପକରି ପୁଣ୍ୟବନ୍ତ ଲୋକେ
ସେହି ସ୍ଥାନେ ବାସ କରିଛନ୍ତି ମହାସୁଖେ ।
କାମନା ପୂରଣକାରୀ କଳ୍ପ ତରୁଗଣ
ସ୍ଥାନେ ସ୍ଥାନେ ରହି ଦିଶୁଛନ୍ତି ଶୋଭାବନ ।
ଉପବନମାନଙ୍କରେ ଫୁଲେ ଫୁଲେ ବସି
ମଧୁପାନ କରୁଛନ୍ତି ମଧୁକରରାଶି ।
କୋକିଳ ଦମ୍ପତି କୁହୁ କୁହୁ ଶବଦରେ
ମନ ହରି ନେଉଛନ୍ତି ବସି ବୃକ୍ଷୋପରେ ।
ଈଶ୍ୱରଙ୍କ ଇଚ୍ଛାରେ ସେ ଅଟଇ ନିର୍ମିତ
ସ୍ୱପନରେ ବିଶ୍ୱକର୍ମା ଦେଖି ନ ଥିବ ତ ।
ଯୋଗସୃଷ୍ଟି ଜନ୍ତୁଗଣ ପୂର୍ଣ୍ଣ ହୋଇ ତହିଁ
ନିରାମୟ ଭାବେ ମହାସୁଖେ ଛନ୍ତି ରହି ।
ସରୋବରମାନଙ୍କରେ ପଦ୍ମ ପୁଷ୍ପରାଜ
ଫୁଟି ରହିଛନ୍ତି ଦିବ୍ୟଶୋଭାରେ ବିରାଜ ।
ପାରିଜାତ ତରୁବନ ତାର ଗୃହପାଶେ
ମରକତଶ୍ରେଣୀ ପ୍ରାୟେ ସୌନ୍ଦର୍ଯ୍ୟ ପ୍ରକାଶେ ।
ଉଦ୍ୟାନ ମଧ୍ୟରେ ବୃକ୍ଷଗଣ ଉଚ୍ଚ ହୋଇ
ବରଷିଲା ପରି ଫୁଲ ଦିଅନ୍ତି ପକାଇ ।
ମଣ୍ଡପ ବେଦୀ ଉପରେ ଇନ୍ଦ୍ରନୀଳମଣି
ଖଚିତ ହେବାରୁ ଦିଶେ ସ୍ୱର୍ଗ ଶୋଭା ଜିଣି ।
ରତନ ନିର୍ମିତ ଲକ୍ଷ ଲକ୍ଷ ଗୃହ ଥାଇ
ପ୍ରଶସ୍ତ ରାଜପଥରେ ସୁନ୍ଦର ଦିଶଇ ।
ସୁବର୍ଣ୍ଣ ରଚିତ ପୂର୍ଣ୍ଣକଳସ ଅନେକ
ଉଜ୍ଜ୍ୱଳ ତେଜରେ ଦିଶୁଛନ୍ତି ଜକ ଜକ ।
ତାହାର ମଧ୍ୟଦେଶରେ ଶିବଙ୍କ ମନ୍ଦିର
ବେଢ଼ାଇ ରହିଛି ତାକୁ ସୁବର୍ଣ୍ଣ ପ୍ରାଚୀର ।
ଆକାଶକୁ ବୋଲି ଛୁଇଁଅଛି ତା ମସ୍ତକ
ରହିଛି ମଧ୍ୟରେ କ୍ରୀଡ଼ାମନ୍ଦିର ଅନେକ ।
ସେ ମନ୍ଦିରମାନଙ୍କରେ ସୁବର୍ଣ୍ଣ କବାଟ !
ଲାଗିଥିବାରୁ ଦୂରକୁ ଦିଶେ ଝଟଝଟ ।
ଅମୂଲ୍ୟରତ୍ନଖଚିତ ସୋପାନପଙ୍କତି
ନିମ୍ନଦେଶେ ରହି ଶୋଭା ପ୍ରକାଶଇ ଅତି ।
ମାଣିକ୍ୟମାଳିକା ରତ୍ନ କଳଶ ଅପାର
ମର୍ତ୍ତ୍ୟ ହୋଇ ରହିଛନ୍ତି ସେ ପୁର ମଧ୍ୟର ।
ଆଗେ ଥାଇ ସିଂହଦ୍ୱାର ଦିଶେ ଶୋଭାବନ
ରତ୍ନସାର ନିର୍ମିତ କବାଟ ତୋରଣ ।
ବାହ୍ୟଦେଶେ ଚନ୍ଦ୍ରକାନ୍ତମଣି ବେଦୀଶ୍ରେଣୀ
ଅଛଇ ବିବିଧ ରତ୍ନ ଅଭ୍ୟନ୍ତରେ ଯେନି ।
ନାନାପ୍ରକାର ଚିତ୍ରରେ ଦିଶଇ ମଞ୍ଜୁଳ
ଶୋଭାରେ ଜଗତେ କିଛି ନାହିଁ ତାହା ତୁଲ୍ୟ ।
ଶମ୍ଭୁଙ୍କର ମହାକାୟ ଦ୍ୱାରପାଳ ବେନି
ଉଭାହୋଇଛନ୍ତି ଦ୍ୱାରେ ଅସ୍ତ୍ରଶସ୍ତ୍ର ଘେନି ।
ବିକଟାଳ ଦନ୍ତମୁଖ ଆରକ୍ତ ଲୋଚନ
ଦଗ୍ଧଶୈଳ ପରି ଦିଶୁଅଛି ଅପଘନ ।
ମହାବଳ ପରାକ୍ରମ ବହିଛନ୍ତି ଦେହେ
କଟିତଟେ ଶବଳବର୍ଣ୍ଣ ବ୍ୟାଘ୍ରଚର୍ମ ଶୋହେ ।
ବିଭୂତିଭୂଷିତ ଅଙ୍ଗ ଶିରେ ଜଟାଭାର
ରଖିଛନ୍ତି ପାର୍ଶ୍ୱରେ ଶୂଳ ଧନୁଶର ।
ପରିଘ ପଟ୍ଟିଶ ଗଦା ମୁଷଳ ଶକତି
ଆଦିକରି ବିବିଧ ଶସ୍ତ୍ର ରଖିଛନ୍ତି କତି ।
ସେ ଦୁହିଙ୍କୁ ଦେଖି ରାମ ଭୟ କରି ମନେ
କହିଲେ ନିଜ ବୃତ୍ତାନ୍ତ ବିନୟ ବଚନେ ।
ପୁଣି ବୋଇଲେ ଶିବଙ୍କୁ ଦେଖିବା ପାଇଁକି
ଆସିଅଛି ନିଅ ମୋତେ ତାହାଙ୍କ କତିକି ।
ବିପ୍ରଙ୍କ ବଚନ ଶୁଣି ସେ ବେନି ଦୁଆରୀ
ଜଣାଇଲେ ଶିବଙ୍କର ଆଗେ ଦୟାକରି ।
ଅନୁଜ୍ଞା ପାଇଣ ପୁଣି ବାହୁଡ଼ି ଆସିଲେ
ଯାଅ ହେ ବ୍ରାହ୍ମଣ ବୋଲି ରାମଙ୍କୁ କହିଲେ ।
ତାହା ଶୁଣି ରାମ ତହୁଁ ତରତର ହୋଇ
ଗଲେ ଶ୍ରୀହରିଙ୍କୁ ନିଜ ମନମଧ୍ୟେ ଧ୍ୟାଇ ।
ଦେଖିଲେ ସେ ମଧ୍ୟେ ଅଛି ଅନେକ ମନ୍ଦିର
ପ୍ରତ୍ୟେକ ପୁରରେ ଲାଗିଅଛି ଷୋଳଦ୍ୱାର ।
ସବୁଠାରେ ରହିଛନ୍ତି ଦ୍ୱାରପାଳମାନେ
ସମସ୍ତେ ଅଟନ୍ତି ସଦାଶିବଙ୍କ ସମାନେ ।
ଏରୂପେ ତାହାଙ୍କୁ ଦେଖି ବିସ୍ମୟରେ ଦ୍ୱିଜ
ଦେଖିଲେ ଆଗରେ ସଦାଶିବଙ୍କ ସମାଜ ।
ନାନା ସିଦ୍ଧଗଣ ତହିଁ ହୋଇଛନ୍ତି ମେଳ
ଆବର ଅଛନ୍ତି ମୁନି ଋଷିଏ ସକଳ ।

ପାରିଜାତ ପୁଷ୍ପଗନ୍ଧ ବହନ୍ତି ମରୁତ
କରୁଅଛି ସେ ସ୍ଥାନକୁ ପୂର୍ଣ୍ଣ ସୁବାସିତ ।
ଦେବ ଦେବ ମହେଶ୍ୱର ସେ ସ୍ଥାନ ମଧ୍ୟରେ
ବିଜେ କରିଛନ୍ତି ରତ୍ନସିଂହାସନ ପରେ ।
ତ୍ରିଶୂଳ ପଟ୍ଟୀଶ ଖଡ଼୍ଗ ଚର୍ମ ଆଦିକରି
ବିବିଧ ଆୟୁଧ ନିଜ କରେ ଛନ୍ତି ଧରି ।
କଟିତଟେ ବ୍ୟାଘ୍ରଚର୍ମ ବସନ ଶୋଭିତ
ବିଭୂତିଭୂଷିତ ନାଗ ଯଜ୍ଞ ଉପବୀତ ।
ଅଙ୍ଗଦେଶେ ଶୋଭାପାଏ ନାନା ଆଭରଣ
ତେଜ ବିରାଜଇ କୋଟି ଆଦିତ୍ୟ ସମାନ ।
ସଦାଶିବ ଶିବଙ୍କର ସର୍ବ ଶିବମୟ
ଅଭୟ ଦାୟକ ପ୍ରଭୁ ଜଗତ ଆଶ୍ରୟ ।
ମନ୍ଦହାସ ସୁଶୋଭିତ ପ୍ରସନ୍ନ ବଦନ
ଭକ୍ତ ଅନୁଗ୍ରହକାରୀ ପ୍ରଭୁ ତ୍ରିଲୋଚନ ।
ମସ୍ତକରେ ଶୋଭାପାଏ ପିଙ୍ଗ ଜଟାଭାର
ସ୍ରବି ପଡ଼ୁଅଛି ଶୁଭ୍ର ମନ୍ଦାକିନୀ ଧାର ।
ତପ ଫଳଦାତା ସର୍ବ ସମ୍ପଦ ଦାୟକ
ସ୍ଫଟିକ ଶୃଙ୍ଗପରାୟେ ଶୋଭେ ପଞ୍ଚମୁଖ ।
ଶିଷ୍ୟଙ୍କ ମୁଖକୁ ଚାହିଁ ବେଦତତ୍ତ୍ୱମାନ
ସଧୀରେ ବତାଇ କହୁଛନ୍ତି ପୁନଃ ପୁନଃ ।
ମୁନି ଋଷିଗଣ ବସି କରୁଥାନ୍ତି ସ୍ତୁତି
ପାରିଷଦମାନେ ଚାରିପାଶେ ବସିଛନ୍ତି ।
ଏମନ୍ତ ରୂପରେ ଶିବ ସେ ସଭା ମଧ୍ୟରେ
ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଛନ୍ତି ମାନସରେ ।
ପୁଲକ ପୂରିତ ହୋଇଅଛି ତାଙ୍କ ଅଙ୍ଗେ
ନୟନରୁ ଅଶ୍ରୁ ବହୁଅଛି ସଙ୍ଗେ ସଙ୍ଗେ ।
କ୍ଷେତ୍ରପାଳ ରୁଦ୍ରଗଣ ଚାରିପାଶେ ବେଢ଼ି
ବସିଛନ୍ତି ନାନା ଗଳ୍ପ କଥାମାନ ବାଢ଼ି ।
ତାହାଙ୍କୁ ଦେଖିଣ ରାମ ଦଣ୍ଡବତ ହୋଇ
ପ୍ରଣାମ କଲେ ଆଗରେ ପାଦେ ପଡ଼ି ଶୋଇ ।
ବାମଭାଗେ ବସିଥିଲେ ଦେବ କାର୍ତ୍ତିକେୟ
ପ୍ରଣମିଲେ ମଧ୍ୟ ତାଙ୍କୁ ପ୍ରକାଶି ବିନୟ ।
ସେ ଅନ୍ତେ ଦକ୍ଷିଣଭାଗେ ଦେଖି ଗଣେଶଙ୍କୁ
ଭକତିଭରେ ପ୍ରଣାମ କଲେ ପୁଣି ତାଙ୍କୁ ।
ନନ୍ଦୀଶ୍ୱର ମହାକାଳ ବୀରଭଦ୍ର ବୀର ।
ସମସ୍ତେ ଥିଲେତ ମହାଦେବଙ୍କ ପାଶର ।
ଯଥାବିଧି ସମ୍ମାନିତ କରି ସେମାନଙ୍କୁ
ଦେଖିଲେ ରାମ ସେଠାରେ କାଳିକା ଦେବୀଙ୍କୁ ।
ତାହାଙ୍କ ପାଦରେ ପଡ଼ି ଯୋଡ଼ି ବେନିକର
ଉଭା ହେଲେ ଆସି ସଦାଶିବଙ୍କ ଆଗର ।
କାତର କଣ୍ଠରେ ନେତ୍ରୁ ଲୋତକ ବୁହାଇ
କହିବାକୁ ଆରମ୍ଭିଲେ ଧନଧୀର ବନ୍ଧୁ ।
ବୋଇଲେ ଆହେ ଈଶ୍ୱର ଆପଣଙ୍କୁ ମୁହିଁ
ସ୍ତୁତି କରିବା ସକାଶେ ଆସିଅଛି ଧାଇଁ ।
କିନ୍ତୁ ସେ ଆପଣ ଅଟ ନିତ୍ୟ ନିରାମୟ
କି ବୋଲି ସ୍ତୁତି କରିବି ନ ହୁଏ ନିଶ୍ଚୟ ।
ତୁମ୍ଭ ଗୁଣ ଗାଇବାକୁ ବାକ୍ୟବର୍ଣ୍ଣ ପଂକ୍ତି
ଯୋଜନା କରିବା ପାଇଁ ନାହିଁ ମୋ ଶକତି ।
ଯାହାଙ୍କର ସ୍ତୁତି କରିବାକୁ ଦେବଗଣ
ସମର୍ଥ ନୁହନ୍ତି କେତେବେଳେ ହେଲେ ଜାଣ ।
ସେ ଦେବଙ୍କୁ ଅବା ମୁହିଁ ସ୍ଥିର କି ରୂପରେ
ସ୍ତୁତି କରିବାକୁ ସମରଥ ହୋଇପାରେ ।
ବୁଦ୍ଧି ମନ ଅଗୋଚର ଅଟ କୃପାମୟ
ସେବନ୍ତି ତୁମ୍ଭ ଚରଣ ସିଦ୍ଧ ମୁନି ଚୟ ।
ଆହେ କରୁଣାସାଗର ପାର୍ବତୀବଲ୍ଲଭ
ରକ୍ଷାକର ଦୀନବନ୍ଧୁ ଦେବଙ୍କର ଦେବ ।
ମୋହର ଜନମ ଆଜି ସଫଳ ହୋଇଲା
ଜୀବନ ମଧ୍ୟ ଜଗତେ ଧନ୍ୟ ବୋଲାଇଲା ।
ଭକ୍ତମାନେ ସେ ଦେବଙ୍କୁ ସ୍ୱପନରେ ଥରେ
ଦେଖି ନ ପାରନ୍ତି ତାଙ୍କୁ ଦେଖିଲି ନେତ୍ରରେ ।
ଇନ୍ଦ୍ର ଆଦି ଦେବଗଣ ଯାହାଙ୍କ କଳାରୁ
ଜାତ ହୋଇଛନ୍ତି ସେ ଅଟନ୍ତି ସର୍ବଗୁରୁ ।
ଆବର ଅଟଇ ଚରାଚର ଯାର ଅଂଶ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦଦେଶ ।
ସୂର୍ଯ୍ୟ ଚନ୍ଦ୍ର ହୁତାଶନ ଜଳବାୟୁ ରୂପେ
ପ୍ରକାଶିତ ହୋଇ ରହିଅଛନ୍ତି ସେ ଆପେ ।
ପୁରୁଷ ସ୍ତ୍ରୀ ଆବର କ୍ଲୀବରୂପ ଧରି
ସେ ହୋଇଛନ୍ତି ସଂସାର ଭାର ରକ୍ଷାକାରୀ ।
ତାଙ୍କ ଚରଣ କମଳେ ନମସ୍କାର ମୁହିଁ
କରୁଅଛି ପରିତ୍ରାଣ କରନ୍ତୁ ସେ ସେହି ।
ଅନନ୍ତ ଆକାଶ ପୁଣି ଅନନ୍ତ ସାଗର
ନଖ କୋଣେ କାହିଁ ଲୁଚି ଯିବେ ଯାହାଙ୍କର ।

ଅନନ୍ତ କୋଟି ତାରକା ଯାର ଗୁଣ ଗାଇ
କୋଟି ବର୍ଷ ପର୍ଯ୍ୟନ୍ତ ଶକ୍ୟ ହେବେ ନାହିଁ ।
ଯାହାଙ୍କୁ ପାଇବାପାଇଁ ହିମାଳୟ ସୁତା
କଠୋର ତପସ୍ୟା କରିଥିଲେ ଗୁଡ଼ ଶତା ।
ତାହାଙ୍କୁ ମୁଁ ନମସ୍କାର କରୁଛି ଭକ୍ତିରେ
ପ୍ରସନ୍ନ ହୋଇ ସେ ଦୟା କରନ୍ତୁ ମୋଠାରେ ।
ସକଳ ଲୋକର ଯେହୁ ବାଞ୍ଛା କଳ୍ପତରୁ
କାମନା ପୂର୍ଣ୍ଣ ହୁଅଇ ଯାହାଙ୍କ ଦୟାରୁ ।
ସେହି ଭକ୍ତବତ୍ସଳଙ୍କୁ ମୋର ନମସ୍କାର
ଖଣ୍ଡନ କରନ୍ତୁ ସର୍ବ ଦୁଃଖ ସତ୍ୱର ।
ତାହାଙ୍କ ଯୋଗେ ଅନନ୍ତ ସଂସାରର କ୍ଷୟ
ହୁଅଇ ଯଥାକାଳରେ ଆବର ଉଦୟ ।
ସେ ମହାପ୍ରଭୁଙ୍କ ପାଦପଙ୍କଜରେ ମୁହିଁ
ପ୍ରଣାମ କରୁଛି ରଖନ୍ତୁ ସେ ଦୟାବହି ।
ଏହିରୂପେ ସ୍ତୁତିକରି ଯମଦଗ୍ନି ସୁତ
ପଡ଼ିଲେ ଶିବଙ୍କ ପାଦେ ହୋଇ ଦଣ୍ଡବତ ।
ତାହା ଦେଖି ମହାଦେବ ପ୍ରସନ୍ନ ହୋଇଲେ
ମଙ୍ଗଳ ବାକ୍ୟରେ ତାଙ୍କୁ ଆଶୀର୍ବାଦ କଲେ ।
ରାମକୃଷ୍ଣ ସ୍ତୋତ୍ରକୁ ଯେ ପଢ଼େ ଭକ୍ତିଭରେ
ଅନ୍ତକାଳେ ବସଇ ସେ କଇଳାସ ପୁରେ ।
ମହାଦେବ ସ୍ତୋତ୍ର କର୍ଣ୍ଣେ କଲେ ଶ୍ରବଣ
ପାପ ତାପ ଦୁଃଖ ଶୋକ ହୁଏ ବିନାଶନ ।
ଏଠାରେ ଶିବଙ୍କୁ ରାମ ସ୍ତୁତି କରିବାର
ସମାପ୍ତ ହୋଇଲା ଗୀତେ ଭଣେ କ୍ଷେମ ଧୀର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପରଶୁରାମଙ୍କର ଶିବଲୋକକୁ ଗମନ ଓ ତାଙ୍କସହିତ କଥୋପକଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—*—

# ଊନତ୍ରିଂଶ ଅଧ୍ୟାୟ

## ମହାଦେବଙ୍କଠାରୁ ପର୍ଶୁରାମଙ୍କର ଅସ୍ତ୍ରଲାଭ

ବ୍ରାହ୍ମଣର ସ୍ତୁତି ଶୁଣି ଦେବ ତ୍ରିଲୋଚନ
ପଚାରିଲେ କିଏ ତୁମ୍ଭେ ଅଟ ହେ ବ୍ରାହ୍ମଣ ।
କାହାର ତନୟ ଅବା ବାସ କେଉଁଠାରେ
ସ୍ତୁତି କରୁଛ ଆମ୍ଭଙ୍କୁ କେବଣ ହେତୁରେ ।
କି କାର୍ଯ୍ୟ ତୁମ୍ଭର ଆମ୍ଭେ କରିବୁ ଏକ୍ଷଣି
ବିଶଦ ରୂପରେ କହ ଦ୍ୱିଜକୁଳମଣି ।
ପାର୍ବତୀ ବୋଇଲେ ଆହେ ବ୍ରାହ୍ମଣ ତନୟ
ଦିଶୁଛ ପାଇଲପରି ଉତ୍ତମ ବିସ୍ମୟ ।
ବୟସରେ ଶିଶୁ ତୁମ୍ଭେ ଗୁଣରେ ଅଧିକ
ଦେଖି ନାହିଁ ମୁହିଁ ତୁମ୍ଭପରି ଜଣେ ଲୋକ ।
ଏମନ୍ତ ବଚନ ଶୁଣି ରାମ ମହାମତି
କହି ଆରମ୍ଭିଲେ ତାଙ୍କୁ ପ୍ରକାଶି ବିନତି ।
ବୋଇଲେ ମୁଁ ଅଟେ ଯମଦଗ୍ନିଙ୍କର ସୁତ
ଭୃଗୁମୁନିଙ୍କ ବଂଶରେ ହୋଇଅଛି ଜାତ ।
ମୋର ଜନନୀଙ୍କ ନାମ ଅଟଇ ରେଣୁକା
ପତିବ୍ରତା ପଣେ ତାଙ୍କପରି ସେହି ଏକା ।
ରାମ ବୋଲିକରି ନାମ ବହିଅଛି ମୁହିଁ
ଆସିଅଛି ଅସ୍ତ୍ର ବିଦ୍ୟା ଶିଖିବାର ପାଇଁ ।
ଆହେ ପ୍ରଭୁ ବିଦ୍ୟାଧନ ଦେଇ ମୋର ପ୍ରାଣ
କିଣିନିଅ ମୁଁ ତୁମ୍ଭର ଦାସ ଅଟେ ଜାଣ ।
ଯେଉଁରୂପେ ପରାଭବ ପାଇଅଛି ତାହା
କହୁଛି ଆମୂଳ କରି ଶୁଣ ଗୌରୀନାହା ।
ମୃଗୟା କରିବା ପାଇଁ ସହସ୍ରାର୍ଜ୍ଜୁନ
ଦଳବଳ ସେନା ଆସି ବୁଲୁଥିଲା ବନ ।
ଦୁଇଦିନ ଉପବାସେ ରହିବାରୁ ସେହି
ମହାକଷ୍ଟେ ବୃକ୍ଷମୂଳେ ପଡ଼ିଥିଲା ଶୋଇ ।
ତାକୁ ଦେଖି ମୋର ପିତା ଯମଦଗ୍ନି ମୁନି
ଆପଣାର ଆଶ୍ରମକୁ ବେଗେ ଗଲେ ଘେନି ।
କପିଳା ଗାଈକି କହି ନାନା ଦ୍ରବ୍ୟ ଆଣି
ସତ୍କାର କଲେ ଯଥା ବିଧିରେ ସେ ପୁଣି ।
ସେ ଗାଈକି ଦେଖି ରାଜା ଲୋଭେ ହୋଇ ମତ୍ତ
ଶକ୍ତି ଘେନି ମୋ ପିତାଙ୍କୁ କଲା ଚଣେ ହତ ।
ତାହା ଦେଖିଣ କପିଳା ଗୋଲୋକକୁ ଗଲା
ଆପଣାର ପୂର୍ବବାସେ ସୁଖରେ ରହିଲା ।
ପିତାଙ୍କର ଶୋକାନଳେ ଜନନୀ ମୋହର
ପରବେଶ ହୋଇ ଜୀବ ତେଜିଲେ ସତ୍ୱର ।

ସେ ସକାଶୁ ଏବେ ମୁହିଁ ଅଶେଷ ହୋଇଲି
ତୁମ୍ଭ ପାଦତଳେ ଆସି ଶରଣ ପଶିଲି ।
ଶୋକରେ ଅଧୀର ହୋଇ ପ୍ରତିଜ୍ଞା ଯେମନ୍ତ
କରିଅଛି ତାହା ଏବେ ଶୁଣ ଦେଇ ଚିତ୍ତ ।
ମହୀମଣ୍ଡଳରେ ବୁଲି ଏକବିଂଶ ଥର
ନିଃକ୍ଷତ୍ର କରିବି ହସ୍ତେ ଧରି ଧନୁଶର ।
ପିତାଙ୍କୁ ମାରିଛି ଯେଉଁ କାର୍ତ୍ତବୀର୍ଯ୍ୟ ମୂଢ଼
ଛେଦିବି ପରଶୁ ଦେଇ ତାର ମେରୁ ହାଡ଼ ।
ଏରୂପେ ପ୍ରତିଜ୍ଞା ଯାହା କରିବି ଗୋସାଇଁ
ପୂର୍ଣ୍ଣ କର ତାହା ଏବେ ଦୟାମନେ ବହି ।
ଏରୂପେ ବ୍ରାହ୍ମଣଠାରୁ ଶୁଣି ତ୍ରିନୟନ
ଦୁର୍ଗାଦେବୀଙ୍କ ମୁଖକୁ ଚାହିଁଲେ ବଦନ ।
ସେ ଅନ୍ତେ ତଳକୁ ମୁଖ କରିଣ ବସିଲେ
କି କରିବେ ଆଉ ସ୍ଥିର କରି ନ ପାରିଲେ ।
ପାର୍ବତୀ ବୋଇଲେ ଆହେ ସମଦର୍ଶି ସୁତ
ଭାବିଛ କାର୍ତ୍ତବୀର୍ଯ୍ୟକୁ କରିବାକୁ ହତ ।
ଏକବିଂଶଥର ବୁଲି ସକଳ ମେଦିନୀ
କ୍ଷତ୍ରିୟଶୂନ୍ୟ କରିବି ବୋଲୁଛ ଯା ପୁଣି ।
ଦୁସ୍ତର ସାହସ ଏହା ଅଟଇ ତୁମ୍ଭର
ସହଜରେ ଦ୍ୱିଜ ତୁମ୍ଭେ ଶସ୍ତ୍ରଶୂନ୍ୟ କର ।
ସହସ୍ରାର୍ଜ୍ଜୁନ ରାଜାଙ୍କୁ ମାରିବ କି ରୂପେ
ସୁସାଧ୍ୟ ଅଟେ କି ବସି ବିଚାର ତ ଆପେ ।
ନିମିଷ ମାତ୍ରକେ ଯେଉଁ ସହସ୍ରାର୍ଜ୍ଜୁନ ବୀର
ଜିଣିଲା ହେଳା ଯୁଦ୍ଧରେ ରାଜା ଦଶଶିର ।
ଦିବ୍ୟ କବଚ ଯାହାକୁ ଦେଇଛନ୍ତି ଦତ୍ତ
ଆଉର ଶକ୍ତିଏ ସହିଁ ମଲେ ତୁମ୍ଭ ତାତ ।
ଶ୍ରୀହରିଙ୍କ ଭକ୍ତ ସେହି ଅଟଇ ରାଜନ
ଦିବାନିଶି ବସି ତାଙ୍କୁ କରୁଅଛି ଧ୍ୟାନ ।
ଆଉର ଯେ ମନ୍ତ୍ର ସ୍ତୋତ୍ର ଜପ ଆଦି କରି
ଉପାସନା କରୁଅଛି ସର୍ବଦା ବିଚାରି ।
ତାହାକୁ ମାରିବାପାଇଁ କାହାର ଶକତି
ତୁଚ୍ଛା କପାଁ ବୁଲୁଅଛ ଭ୍ରମେ ହେଇ ମତି ।
ଏଥିପାଇଁ ଅବା କିସ କରିବେ ଶଙ୍କର
ଘରକୁ ବାହୁଡ଼ିଯାଅ ମନ କରି ସ୍ଥିର ।
ଆଉ ଯେତେ ନରପତି ଅଛନ୍ତି ମହୀରେ
ସମସ୍ତେ ଅଟନ୍ତି ମୋର ଭୃତ୍ୟ ସେ ପ୍ରକାରେ ।

ତାଙ୍କର ଅନିଷ୍ଟ ତୁମ୍ଭେ ନ ପାରିବ କରି
ମୁଁ ଥାଉଁ ଥାଉଁ ତାହାଙ୍କୁ କେବା ଜିଣିପାରି ।
ଏଥିଅନ୍ତେ ଭଦ୍ରକାଳୀ ବୋଇଲେ ବ୍ରାହ୍ମଣ
କ୍ଷତ୍ରିୟଙ୍କୁ ମାରିବାକୁ କରିଅଛୁ ମନ ।
ବାମନ ହୋଇ ଆକାଶୁ ଚନ୍ଦ୍ରଙ୍କୁ ହସ୍ତରେ
ଆଣିବା ଇଚ୍ଛାଟି ଦିଶୁଅଛି ତୁମ୍ଭଠାରେ ।
କ୍ଷତ୍ରିୟ ତ ନାନା ଅସ୍ତ୍ର ଶସ୍ତ୍ରରେ ଉତ୍ତମ
କିରୂପେ ମାରିବ ତାଙ୍କୁ ଏକା ହୋଇ ରାମ ।
ବିଶେଷରେ ମୋର ଭୃତ୍ୟ ଅଟନ୍ତି ସେମାନେ
ଶିବଙ୍କ ସାହାଯ୍ୟେ ତୁମ୍ଭେ ଜିଣିବ କେସନେ ।
ଏରୂପେ ସେ ଦୁହିଙ୍କର ବଚନକୁ ଶୁଣି
କାନ୍ଦିଲେ ଉଚ୍ଚରେ ରାମ ଦ୍ୱିଜକୁଳମଣି ।
ସେ ଅନ୍ତରେ ସେମାନଙ୍କ ଆଗେ ଉଗ୍ରହୋଇ
ଆରମ୍ଭ କଲେ ଜୀବନ ତେଜିବାର ପାଇଁ ।
ଏରୂପେ ଦ୍ୱିଜ ଶିଶୁର ଅବସ୍ଥାକୁ ଦେଖି
ମନେ ମନେ ସଦାଶିବ ହୋଇ ମହାଦୁଃଖୀ ।
ଦୁର୍ଗା କାଳୀ ଦୁହିଁଙ୍କର ମୁଖକୁ ଚାହିଁଲେ
ବିନୟ ବଚନେ ତାଙ୍କୁ କହି ପ୍ରବୋଧିଲେ ।
ସେ ମଧ୍ୟରେ ଦୁହିଙ୍କର ଅନୁମତି ଘେନି
ବୋଇଲେ ମୋଠାରୁ ଶୁଣ ଦ୍ୱିଜକୁଳମଣି ।
ତୁମ୍ଭ ଭକତିରେ ମୁହିଁ ହୋଇଲି ସନ୍ତୋଷ
ପୂର୍ଣ୍ଣ କରିବି ତୁମ୍ଭର କାମନା ଅବଶ୍ୟ ।
ଆଜିଠାରୁ ତୁମ୍ଭେ ମୋର ପୁତ୍ରର ସମାନ
ହୋଇଲ ବୋଲି ମନରେ ଘେନୁଅଛି ଜାଣ ।
ଦୁର୍ଲ୍ଲଭ ଅଟଇ ଯେଉଁ ମନ୍ତ୍ର ଜଗତରେ
ଦେବି ମୁଁ ତାହାଙ୍କୁ ତାହା ସନ୍ତୁଷ୍ଟ ଚିତ୍ତରେ ।
ଆଉର ଅଦ୍ଭୁତ ଯେଉଁ କବଚ ଅଟଇ
ତାହା ମଧ୍ୟ ଦେବି ଏଥେ ସନ୍ଦେହ ଯେ ନାହିଁ ।
ମୋର ବର ପ୍ରସାଦରେ ସହସ୍ରାର୍ଜ୍ଜୁନକୁ
ଜିଣିବ ଯୁଦ୍ଧରେ ନିଶ୍ଚେ ଆସୁଛି ମନକୁ ।
ପୁଣି ଏକବିଂଶଥର ବୁଲି ଭୂମଣ୍ଡଳ
କରିପାରିବ କ୍ଷତ୍ରିୟ କୁଳକୁ ନିର୍ମୂଳ ।
ପୂର୍ଣ୍ଣ ହୋଇବ ଜଗତେ ତୁମ୍ଭ ଶୁଭ୍ରଯଶ
ଆଉର ହୋଇବ ଦିବ୍ୟ ଗୁଣ ପରକାଶ ।
ଏହିରୂପେ କହି ଶିବ ପରଶୁରାମଙ୍କୁ
ପ୍ରଦାନ କଲେ ତ୍ରୈଲୋକ୍ୟ ଜୟ କବଚକୁ ।

ସୁଦୁର୍ଲ୍ଲଭ ମନ୍ତ୍ର ପୁଣି ଦେଲେ ସନ୍ତୋଷରେ
ସ୍ତବ କବଚାଦି ପୁରଶ୍ଚରଣ ସଙ୍ଗରେ ।
ମନ୍ତ୍ର ସିଦ୍ଧି ଅନୁଷ୍ଠାନ ନିୟମ ଯେ କ୍ରମ
ସିଦ୍ଧି ସ୍ଥାନ କାଳସଂଖ୍ୟା ବିଧାନ ନିୟମ ।
ବେଦ ବେଦାଙ୍ଗ ସକଳେ ସମସ୍ତେ ଶିଖାଇ
ପୁଣି ଦେଲେ ନାନା ଅସ୍ତ୍ର ବିଦ୍ୟା ବୋଧ ବନ୍ଧି
ପାଶୁପତ ବ୍ରହ୍ମଶର ଦୃଢ଼ ନାଗପାଶ
ଅଗ୍ନି ଅସ୍ତ୍ର ନାରାୟଣ ସାୟକ ବିଶେଷ ।
ବାୟବ୍ୟ ବାରୁଣ ଅସ୍ତ୍ର ନାରୁଣ୍ଡ ଗାନ୍ଧର୍ବ
ଜୃମ୍ଭଣ ମୋହନ ଆଦି ଶିଖାଇଲେ ସର୍ବ ।
ପରଶୁ ପଟିଶ ଶକ୍ତି ଶୂଳ ଭିନ୍ଦିପାଳ
ତୋମର ଆଦି ଯେ ଶସ୍ତ୍ର ଦେଲେ ଯେ ସକଳ ।
ସବୁ ଶସ୍ତ୍ର ଅସ୍ତ୍ରଙ୍କର ପ୍ରୟୋଗ ସଂହାର
ଦେଲେ ସେ କାଳରେ ଶମ୍ଭୁ କୈଳାସ ଈଶ୍ୱର ।
ଆବର ଅଛେଦ୍ୟ ଦିବ୍ୟ ଧନୁଷ୍ଟାଏ ଦେଲେ
ସନ୍ଧାନ ପ୍ରୟୋଗ କର୍ମ ବିଧି ବତାଇଲେ ।
ନାନାବିଧ ମାୟା ରଣ ହୁଂକାର ଟଙ୍କାର
ବତାଇ କହିଲେ ସବୁ ଯୁଦ୍ଧର ପ୍ରକାର ।
ଆପଣା ସୈନ୍ୟ ରକ୍ଷା ପରସୈନ୍ୟ କ୍ଷୟ
ରଣ ସଙ୍କଟରେ ଆତ୍ମରକ୍ଷଣ ଉପାୟ ।
ଜନ୍ମ ମୃତ୍ୟୁ ବିନାଶିନୀ ଗୁଣମୟୀ ବିଦ୍ୟା
ଦେଲେ ମଧ୍ୟ ତାଙ୍କ ପ୍ରତି ବଳବାରୁ ଶ୍ରଦ୍ଧା ।
ଏରୂପେ ପରଶୁରାମ ଶସ୍ତ୍ର ଅସ୍ତ୍ର ଶିଖି
ରହିଲେ ଶିବଙ୍କ ପାଶେ ହୋଇ ମହାସୁଖୀ ।
ଯେ ଅନ୍ୟେ ତୀର୍ଥସ୍ଥାନରେ ଉପସ୍ଥିତ ହୋଇ
ସିଦ୍ଧକଲେ ଶ୍ରୀହରିଙ୍କ ମନ୍ତ୍ର ମନଦେଇ ।
କୃତକାର୍ଯ୍ୟ ହୋଇ ନିଜପୁରେ ଚଳିଗଲେ
ଶ୍ରୀକୃଷ୍ଣ ଚରଣ ଚିନ୍ତି ଧାନଦେବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ମହାଦେବଙ୍କଠାରୁ ପର୍ଶୁରାମଙ୍କର
ଅସ୍ତ୍ରଲାଭ କଥନେ ନାମ ଊନତ୍ରିଂଶୋଽଧ୍ୟାୟଃ ।

—✳—

# ତ୍ରିଂଶ ଅଧ୍ୟାୟ

## ଶିବଙ୍କଠାରୁ ପର୍ଶୁରାମଙ୍କର କବଚ ମନ୍ତ୍ର ଓ ସ୍ତୋତ୍ରଆଦି ଗ୍ରହଣ

ନାରଦ ବୋଇଲେ ଆହେ ମୁନିଗଣବର
କେଉଁ ମନ୍ତ୍ର ଦେଲେ ପର୍ଶୁରାମଙ୍କୁ ଶଙ୍କର ।
ତାହାର ଆରାଧ୍ୟ ଦେବ ଅଟନ୍ତି କଏ ସେ
ତହିଁରୁ କି ଫଳଲାଭ ହେଲା ଅବଶେଷେ ।
ଆବର ସ୍ତବ କବଚ ସ୍ୱରୂପ କିପରି
ଏ ସମସ୍ତ କଥା ମୋତେ କହ ଭଲକରି ।
ଏହିରୂପେ ନାରଦଙ୍କ ବଚନକୁ ଶୁଣି
କହି ଆରମ୍ଭିଲେ ନାରାୟଣ ଋଷିମଣି ।
ବୋଇଲେ ଯେବଣ ମନ୍ତ୍ର ଦେଲେ ତ୍ରିଲୋଚନ
ତାହାର ଆରାଧ୍ୟ ଦେବ ପ୍ରଭୁ ଭଗବାନ ।
ଗୋଲୋକର ଅଧିପତି ଶ୍ରୀକୃଷ୍ଣ ଅଟନ୍ତି
କଳ୍ପତରୁ ମନ୍ତ୍ର ନାମେ ତାହାର ଯେ ଖ୍ୟାତି ।
ତ୍ରୈଲୋକ୍ୟ ବିଜୟ ନାମ କବଚ ଅଟଇ
ବିଭୂତି ଯୋଗରୁ ଜାତ ସ୍ତବ ଅଛି ହୋଇ ।
ରତନ ପର୍ବତ ପାଶେ ସ୍ୱୟଂପ୍ରଭା ନଦୀ
ବହିଯାଇଅଛି ରସାତଳ ଦେଶ ଭେଦି ।
ତାର ତଟେ ପାରିଜାତ କୁସୁମ କାନନେ
ଲୋକେଶ୍ୱର ମାଧବଙ୍କ ରମ୍ୟ ଉପବନେ ।
ପରଶୁରାମଙ୍କୁ ଶିବ ଯେବଣ ପ୍ରକାରେ
ଦେଲେ ତା କହୁଅଛି ଏବେ ଶୁଣ ବସି ଧୀରେ ।
ବୋଇଲେ ହେ ଯମଦଗ୍ନି ସୁତ ମହାମତି
ମହାତ୍ମା ଭୃଗୁଙ୍କ ବଂଶେ ତୁମ୍ଭର ଉତ୍ପତ୍ତି ।
ସକଳ ଶାସ୍ତ୍ରରେ ତୁମ୍ଭେ ଅଟ ଧୁରନ୍ଧର
ପୁତ୍ର ସମାନ ଆଦର ତୁମ୍ଭଠାରେ ମୋର ।
ଦେଉଅଛି ଏବେ ଦିବ୍ୟ କବଚକୁ ଯେଉଁ
ଜଗତ ଦୁର୍ଲ୍ଲଭ ସେହୁ ଅଟଇଟି ଜାଣ ।
ଯେ ଯେଉଁ ତାହାର ନାମ ତ୍ରୈଲୋକ୍ୟ ବିଜୟ
ତାହା ଯୋଗେ ହୁଏ ସର୍ବ ସମ୍ପଦ ଉଦୟ ।
ପୂର୍ବକାଳେ ଗୋଲୋକରେ ଶ୍ରୀରାସମଣ୍ଡଳେ
ଶ୍ରୀକୃଷ୍ଣ ମୋତେ ପ୍ରଦାନ କଲେ କୁତୂହଳେ ।
ଅତ୍ୟନ୍ତ ଗୁପତ ସେହୁ ସର୍ବ ମନ୍ତ୍ର ବୀଜ
ସ୍ନେହରେ ତୁମ୍ଭଙ୍କୁ ଦେଉଅଛି ମନେ ହେଜ ।

ଯେଉଁ କବଚ ଧାରଣ କରଣ ପ୍ରଭୃତି
ଶୁମ୍ଭ ନିଶୁମ୍ଭଙ୍କୁ ପଠାଇଲେ ଯମକନ୍ତି ।
ପଠନ କରିବା ମାନେ କାଳୀ ଯୁଦ୍ଧରେ
ମହାଦ୍ଧ ରକ୍ତବୀଜଙ୍କ ଜୀବ ନେଲେ ଖରେ ।
ଯାହାକୁ ଧାରଣ କରି ଜଗତରେ ମୁହିଁ
ସଂହାର କରୁଛି ଲୋକ ଅନ୍ତକାଳେ ଚହି ।
ଅବଧ ନିପୁରାସୁର ଜୀବନକୁ ହେଲେ
ଶେନଲେ ଯେଉଁ କବଚ ଉପାସନା ବଳେ ।
ଯାହା ଘେନ ପ୍ରଜାପତି ସର୍ଜିଲେ ଜଗତ
ଯାହାବଳେ ବହିଛନ୍ତି ମହୀକି ଅନନ୍ତ ।
ଯାହାକୁ ଧାରଣ କରି ପବନ ଦେବତା
ସଂସାର ଆଧାର ହୋଇଛନ୍ତି ଶୁଦ୍ଧ ଚିନ୍ତା ।
ଯାହାଯୋଗେ ଧନପତି ହୋଇଲେ କୁବେର
ପ୍ରସିଦ୍ଧ ଦେବତା ବୋଲାଇଲେ ଜଳେଶ୍ୱର ।
ଯାହାକୁ ଧାରଣ କରି ସ୍ୱର୍ଗେ ଶଚୀପତି
ଦେବଗଣେ ଅଧିକାର କଲେ ତେଜ ଖ୍ୟାତି ।
ଯାହା ଘେନ ଦିବାକର ସହସ୍ର କିରଣ
ଆକାଶରେ ଗମି କରିଅଛନ୍ତି ଧାରଣ ।
ଚନ୍ଦ୍ର ଦେବତା ଯେପରି ବଳବନ୍ତ ପଣେ
ସବୁରି ମଧ୍ୟରେ ହୋଇଛନ୍ତି ଏକଜଣେ ।
ଅଗସ୍ତ୍ୟ ମୁନି ଯାହାକୁ କରନ୍ତେ ଧାରଣ
କ୍ଷଣକେ ସମୁଦ୍ର ନୀର କରିଲେ ଶୋଷଣ ।
ଆବର ବାତାପି ନାମ ଅସୁରକୁ ଖାଇ
ଭୃଗଙ୍କୁ ଅନଳ ପରି ହେଲେ ଦେଲେ ଦହି ।
ପଠନ ଧାରଣ କରି ଯେଉଁ କବଚକୁ
ବହିଛନ୍ତି ମହାଦେବୀ ନିଖିଳ ବିଶ୍ୱକୁ ।
ଯାହା ଘେନ ଗଙ୍ଗାନଦୀ ଭୁବନପାବନୀ
ଜଗତ ସାକ୍ଷୀ ଅଟନ୍ତି ଧର୍ମ ଯାହା ଘେନ ।
ସର୍ବବିଦ୍ୟା ଅଧିଷ୍ଠାନୀ ଦେବୀ ସରସ୍ୱତୀ
ଯେଉଁ କବଚ ପ୍ରଭାବେ ବୋଲାଉ ଅଛନ୍ତି ।
ମହାଲକ୍ଷ୍ମୀ ଯେଉଁ କବଚକୁ ଅଙ୍ଗେ ବହି
ଜଗତକୁ ଅନ୍ନଦାନ କରୁଛନ୍ତି ଯାଇ ।
ସାବିତ୍ରୀ ଦେବୀ ଯେପରି ଯାହାର ପ୍ରଭାବେ
ଚାରିଗୋଟି ବେଦ ଜାତ କରିଛନ୍ତି ଭବେ ।
ଯାହା ଯୋଗେ ଦେବଗଣ ଧର୍ମତତ୍ତ୍ୱମାନ
ଯଥାର୍ଥ ରୂପରେ ବସି କରୁଛନ୍ତି ଗାନ ।

ତେଜସ୍ୱୀ ସର୍ବଦହନ ହୋଇଛନ୍ତି ଅଗ୍ନି
ଯେଉଁ ଦିବ୍ୟ କବଚକୁ ଅଙ୍ଗଦେଶେ ଘେନି ।
ଯାହାକୁ ଧାରଣ କରି ସନତ୍କୁମାର
ଜ୍ଞାନିଜନଙ୍କ ମଧ୍ୟରେ ବୋଲାଅନ୍ତି ସାର ।
ଏ କବଚ କୃଷ୍ଣ ଭକତଙ୍କୁ ଚାହିଁ ଦେବ
ଶଠ ନଷ୍ଟଙ୍କୁ ଅର୍ପିଲେ ମରଣ ପାଇବ ।
ତ୍ରୈଲୋକ୍ୟ ବିଜୟ ନାମ ଏହି କବଚର
ଋଷି ଅଟନ୍ତି ଧାତାତେ ଦେବ ବେଦବର ।
ଗାୟତ୍ରୀଛନ୍ଦ ଶ୍ରୀରାସେଶ୍ୱର ଦେବତା
ତ୍ରୈଲୋକ୍ୟ ବିଜୟ ଅର୍ଥେ ବିନିଯୋଗ କଥା ।
ପ୍ରଥମେ ବୋଲିବ ଦେବ ଶ୍ରୀକୃଷ୍ଣ ମୋହର
ଶିରଦେଶକୁ ରଖନ୍ତୁ ହୋଇ ଦୟାପର ।
କପାଳକୁ ସ୍ୱାହା ଅନ୍ତ ଶ୍ରୀକୃଷ୍ଣ ସେପରି
ରକ୍ଷା କରନ୍ତୁ ହୃଦରେ ସ୍ନେହଭାବ ଧରି ।
ଶ୍ରୀହରିଙ୍କୁ ନମସ୍କାର ଏହି ବାକ୍ୟଗୋଟି
ରକ୍ଷା କରିଥାଉ ମୋର ଭ୍ରୂଲତା ଦୁଇଟି ।
ଗୋବିନ୍ଦ ମୋହର ନାସାଦେଶକୁ ରଖନ୍ତୁ
କଲ୍ୟାଣରୂପୀ ହରି କର୍ଣ୍ଣକୁ ପାଳନ୍ତୁ ।
ଅଧର ଯୁଗଳକୁ ରକ୍ଷାକରୁ ରାଧେଶ୍ୱର
ଗୋବିନ୍ଦ ରଖନ୍ତୁ ଦନ୍ତପଂକ୍ତିକୁ ମୋହର ।
ପରମ ପୁରୁଷ ଦନ୍ତରନ୍ଧ୍ରକୁ ସେପରି
ଜିହ୍ୱାକୁ ରକ୍ଷାକରନ୍ତୁ ଗୋପିକା-ବିହାରୀ ।
ରାସଅଧିପତି ତାଳୁ ଦେଶର ରକ୍ଷକ
ହୁଅନ୍ତୁ ରାଧିକାକାନ୍ତ କଣ୍ଠର ପାଳକ ।
ଗୋପନାରୀ ଅଧୀଶ୍ୱର ବକ୍ଷକୁ ରଖନ୍ତୁ
ରାସନାଥ ରକ୍ଷକ ସେ ସ୍କନ୍ଧ ପାଳୁଥାନ୍ତୁ ।
କିଶୋରବେଶ ଶ୍ରୀକୃଷ୍ଣ ପୃଷ୍ଠକୁ ସର୍ବଦା
ରଖନ୍ତୁ ଉଦର ମୋର ମୁକୁନ୍ଦ ସେ ସଦା ।
ଓଁ କାର ପୂର୍ବକ ସ୍ୱାହା ଅନ୍ତ କୃଷ୍ଣ ପାଦ
ରକ୍ଷା କରିଥାଉ ମୋର ବେନି ହସ୍ତ ପାଦ ।
ନଖର ଦେଶକୁ ରକ୍ଷାକର ଭଗବାନ
ନାରାୟଣ ରକ୍ଷାକର ନଖରନ୍ଧ୍ର ମାନ ।
ପଦ୍ମନାଭ ରଖ ସଦା ନାଭିକୁ ମୋହର
କଙ୍କାଳ ଶ୍ରେଣୀକୁ ରକ୍ଷାକର ସର୍ବେଶ୍ୱର ।
ଗୋପିକାରମଣ ପ୍ରଭୁ ନିତମ୍ବ ବିମ୍ବକୁ
ରଖନ୍ତୁ ରସିକକ୍ଷଣ ସକଳ ଅଙ୍ଗକୁ ।

କେଶବେ କରନ୍ତୁ ରକ୍ଷା ମୋର କେଶପାଶ
ବ୍ରହ୍ମରନ୍ଧ୍ରକୁ ପାଳନ କର ଜଗଦୀଶ ।
ଲୋମଶ୍ରେଣୀ ରଖ ପ୍ରଭୁ ଶ୍ରୀରାମାମାଧବ
ରକ୍ଷାକର ହୃଦଦେଶ ସର୍ବ ଦେବ ଦେବ ।
ପରିପୂର୍ଣ୍ଣତମ ପ୍ରଭୁ ପୂର୍ବେ ରକ୍ଷାକର
ଆଗ୍ନେୟ କୋଣରେ ରଖ ଗୋଲୋକ ଈଶ୍ୱର ।
ଦକ୍ଷିଣରେ ପୂର୍ଣ୍ଣବ୍ରହ୍ମ ସ୍ୱରୂପ ରଖନ୍ତୁ
ନୈଋତ କୋଣେ ଶ୍ରୀକୃଷ୍ଣ ପାଳନ କରନ୍ତୁ ।
ପଶ୍ଚିମ ଦିଗରେ ପ୍ରଭୁ ଦେବେଶ୍ୱର ହରି
ବାୟବ୍ୟକୋଣେ ଗୋବିନ୍ଦ ଥାନ୍ତୁ ରକ୍ଷାକରି ।
ଉତ୍ତରେ ରଖନ୍ତୁ ସଦା ରସିକ ଶେଖର
ଐଶାନ୍ୟ କୋଣରେ ପ୍ରଭୁ ବୃନ୍ଦାବନେଶ୍ୱର ।
ବୃନ୍ଦାବନୀ ପ୍ରାଣନାଥ ମୋର ଊର୍ଦ୍ଧ୍ୱଦେଶ
ପାଳନ କରନ୍ତୁ ମନେ ବହି ଅତି ତୋଷ ।
ବଳୀହାରୀ ବଳବନ୍ତ ଦୈତ୍ୟାରି ମାଧବ
ରଖନ୍ତୁ ସର୍ବ ସମୟେ ବନ୍ଧୁ ଦୟାର୍ଣ୍ଣବ ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ନୃସିଂହ ରଖନ୍ତୁ
ସ୍ୱପ୍ନେ ଜାଗରଣେ ଦେବ ମାଧବ ପାଳନ୍ତୁ ।
ସକଳ ଅନ୍ତରେ ଆତ୍ମା ନିର୍ଲିପ୍ତ ଈଶ୍ୱର
ସମସ୍ତ ପ୍ରକାରେ ମୋର ଅଙ୍ଗ ରକ୍ଷାକର
ଏରୂପେ କବଚରାଜ ସର୍ବମନ୍ତ୍ରମୟ
ଅଟଇ ଯାହାର ନାମ ତ୍ରୈଲୋକ୍ୟ ବିଜୟ ।
ଶୁଣିଥିଲି ପୂର୍ବେ ମୁହିଁ କୃଷ୍ଣଙ୍କ ମୁଖରୁ
କହିଲି ତୁମ୍ଭର ଗାଢ଼ ଭକ୍ତି ଦେଖିବାରୁ ।
ଗୁରୁଙ୍କ ଅର୍ଚ୍ଚନାକରି ବିଧି ଅନୁସାରେ
ଧାରଣ କରିବ ଏହା ପରମ ଭକ୍ତିରେ ।
କଣ୍ଠେ ବା ଦକ୍ଷିଣଭୁଜେ କରେ ଯେ ଧାରଣ
ସାକ୍ଷାତରେ ଅଟେ ସେହୁ ବିଷ୍ଣୁଙ୍କ ସମାନ ।
ସେ ଲୋକ ଯେଉଁସ୍ଥାନରେ କରଇ ବସତି
ସେଠାରେ ବାସ କରନ୍ତି ଲକ୍ଷ୍ମୀ ସରସ୍ୱତୀ ।

ସିଦ୍ଧ କବଚ ହୋଇଲେ ଜୀବନ ମୁକତ
ଆବର ହୁଅଇ ପୁଣି ଶ୍ରୀକୃଷ୍ଣଙ୍କ ଭକତ ।
କୋଟି ଏ ବର୍ଷ ସହସ୍ରାର ଫଳଲାଭ କରେ
କାଞ୍ଚନ ମାନ ସଫଳ ନାହିଁ ଯେ ଏଥିରେ ।
ଦଶଲକ୍ଷ ରାଜସୂୟ ଶତେକ ବାଜପେୟ
ଶତ ଅଶ୍ୱମେଧ ନରମେଧ ଶତଦ୍ୱୟ ।
ଅସଂଖ୍ୟକ ମହାଦାନ ମହୀ ପ୍ରଦକ୍ଷିଣ
ଏ ମହା କବଚ ତୁଲ୍ୟ ନୁହନ୍ତି ଜାଣ ।
ବ୍ରତ ଉପବାସ ବେଦ ଅଧ୍ୟୟନ ତପ
ସକଳ ତୀର୍ଥରେ ସ୍ନାନ ଦେବମନ୍ତ୍ର ଜପ ।
ସବୁ ଆଣି ତୁଳକଲେ ଏହି କବଚର
ଅଂଶକୁ ନୋହିବ ସରି ଏହା ମନେ କର ।
ଏ କବଚ ଯେହୁ ହୃଦେ କରଇ ଧାରଣ
ଆଜ୍ଞାବହ ହୋଇଥାନ୍ତି ତାର ଦେବଗଣ ।
ସର୍ବ ସିଦ୍ଧି ଫଳ ମିଳେ ଏ କବଚ ବଳେ
ଅଜେୟ ହୋଇବ ବୀର ଏ ମହୀମଣ୍ଡଳେ ।
ତେଣୁ ଏହା ତୁମ୍ଭ ହସ୍ତେ କରୁଛି ପ୍ରଦାନ
ଯୋଗ୍ୟଲୋକ ହସ୍ତେ ସିନା ଦେବ ଯୋଗ୍ୟଧନ ।
ଦଶଲକ୍ଷ ଜପକଲେ ହୁଏ ଏହା ସିଦ୍ଧ
ସିଦ୍ଧକବଚକୁ ସର୍ବଶାସ୍ତ୍ର ହୁଏ ବୋଧ ।
ଏ କବଚ ନ ଜାଣି ଯେ କୃଷ୍ଣଙ୍କୁ ଭଜଇ
କୋଟି କଳ୍ପ ହେଲେ ମନ୍ତ୍ର ସିଦ୍ଧ ନ ହୁଅଇ ।
ଆହେ ବତ୍ସ ତୁମ୍ଭେ ଏହି କବଚକୁ ନେଇ
ନିକ୍ଷତ୍ରିୟ କର ବୁଲି ସକଳ ମେଦିନୀ ।
ରାଜ୍ୟଧନ ସହିତରେ ସକଳ ସମ୍ପଦ
ଦେବ ପରେ ଉପସ୍ଥିତ ହୋଇଲେ ଆପଦ ।
ଏ ମହା କବଚ କେବେ ନ ଦେବ କାହାକୁ
ରଖିବ ଯତନେ ମନେ ଚିନ୍ତି ଶ୍ରୀକୃଷ୍ଣଙ୍କୁ ।
ବୋଲେ ଦୀନ କ୍ଷେତ୍ରବାସୀ ଆହେ ଲକ୍ଷ୍ମୀପତି
ଦୟାକରି ଫେଡ଼ ବାରେ ମୋହର ଦୁର୍ଗତି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶିବଙ୍କଠାରୁ ପରଶୁରାମଙ୍କର କବଚମନ୍ତ୍ର ଓ ସ୍ତୋତ୍ର ଆଦି ଗ୍ରହଣ କଥନେ ନାମ ବିଂଶୋଽଧ୍ୟାୟଃ ।

—o—

# ଏକବିଂଶ ଅଧ୍ୟାୟ

## ଶିବଙ୍କ ଦ୍ୱାରା ପର୍ଶୁରାମଙ୍କୁ ମନ୍ତ୍ର ଓ ସ୍ତବ ପ୍ରଦାନ

ପରଶୁରାମ ବୋଇଲେ ଅହେ ବିଶ୍ୱନାଥ
ସର୍ବାଙ୍ଗରକ୍ଷକ ଶତ୍ରୁ ମନ ସଂହାରକ ।
ଆବର ପୂଜାବିଧାନ ସ୍ତୋତ୍ର ଆଦି କରି
ଦିଅ ମୋତେ ମାନସରେ ସ୍ନେହଭାବ ଧରି ।
ତାହା ଶୁଣି ମହାଦେବ ବୋଇଲେ ତାହାକୁ
କହୁଅଛୁ ସାବଧାନେ ଶୁଣ ଆରେ ବାବୁ ।
ପ୍ରଥମେ ଓଁକାର ତାହା ପରେ ଲକ୍ଷ୍ମୀବୀଜ
ନମଃଶବ୍ଦ ପରେ ପୁଣି କୃଷ୍ଣନାମ ନେଜ ।
ଚତୁର୍ଥ୍ୟନ୍ତ କରି ତାକୁ ବସାଇ ଯତନେ
ପରିପୂର୍ଣ୍ଣତମ ଶବ୍ଦ ତାର ସନ୍ନିଧାନେ ।
ଚତୁର୍ଥୀ ବିଭକ୍ତି ଦେଇ ବସାଇବ ପୁଣି
ସ୍ୱାହା ବେନି ଅଧରକୁ ଶେଷେ ଦେବ ଜାଣି ।
ଏହିରୂପେ ଶ୍ରୀକୃଷ୍ଣଙ୍କ ମନ୍ତ୍ରୋଦ୍ଧାର କରି
ମନ୍ତ୍ରରେ ଭଜ ତାହାଙ୍କୁ ଆହେ ତପବ୍ରତୀ ।
ସକଳ ମନ୍ତ୍ରରେ ଏହା ଉତ୍ତମ ଅଟଇ
ପାଞ୍ଚଲକ୍ଷ ଜପକଲେ ସିଦ୍ଧ ହୋଇଯାଇ ।
ତାର ଦଶଭାଗୁ ଏକ ଭାଗକରେ ହୋମ
କରିବ ବିଧିପ୍ରକାରେ ଜାଣ ଆହେ ରାମ ।
ତାହାର ଦଶଅଂଶରେ ଅଭିଷେକ କରି
ତର୍ପଣ କରିବ ତାକୁ ଦଶଅଙ୍କେ ହରି ।
ତାହାର ଦଶଅଂଶରେ ବ୍ରାହ୍ମଣ ଭୋଜନ
କରିବ ମନ୍ତ୍ର ପଠନ କାଳେ ଦେଇ ମନ ।
ପୁନଶ୍ଚରଣ ସମୟେ ଏକେକ ସୁବର୍ଣ୍ଣ
ଉତ୍ତମ ଦ୍ୱିଜଙ୍କୁ ଡାକି କରାଇବ ଦାନ ।
ମନ୍ତ୍ରସିଦ୍ଧ ହେବ ଯାହା ତାର କରତଳେ
ସମସ୍ତ ପଦାର୍ଥ ସ୍ଥିର ହୋଇପାରେ ହେଳେ ।
ସମୁଦ୍ରକୁ ପିଇବାକୁ ହେବ ସେ ସମର୍ଥ
ସଂସାର ଜିଣିବାପାଇଁ ହେବ ମଧ୍ୟ ଶକ୍ତ ।
ସ୍ୱଦେହରେ ବଇକୁଣ୍ଠ ଭୁବନରେ ଯାଇ
ସେହି ପୁଣ୍ୟବଳେ ମହାସୁଖେ ବସିଥାଇ ।
ତାହାର ପ୍ରତ୍ୟେକ ଅଙ୍ଗ ପରଶମାତ୍ରରେ
ପବିତ୍ର ହୁଅନ୍ତି ତୀର୍ଥଗଣ ନିଶ୍ଚୁରେ ।
ଆବର ଚରଣରଜ ପଡ଼ିଗଲେ ମହୀ
ଧନ୍ୟ ପବିତ୍ର ହୁଅଇ ସନ୍ଦେହ ଏଥି ନାହିଁ ।
ସାମବେଦ ଉକ୍ତ ଧ୍ୟାନ ଶୁଣ ମନଦେଇ
ଯାହାର ଶ୍ରବଣେ ପାପ ଛୁଇଁ ନ ପାରଇ ।
ନବୀନ ଜଳଦ ଶ୍ୟାମ ନୀଳୋତ୍ପଳ ନେତ୍ର
ଶରତ ପାର୍ବଣ ଚନ୍ଦ୍ର ତୁଲ୍ୟ ତେଜୋବନ୍ତ ।
ଈଷତ ହାସ୍ୟବଦନ ଅତି ମନୋହର
କୋଟି କନ୍ଦର୍ପ ଲାବଣ୍ୟ ସ୍ୱରୂପ ସୁନ୍ଦର ।
ରତ୍ନସିଂହାସନ ପରେ ବିଜେ ଶିଖିପୁଚ୍ଛ
ବିବିଧଭୂଷଣେ ଅଙ୍ଗ ପ୍ରକାଶଇ ଜ୍ୟୋତି ।
ଚନ୍ଦନ ଚର୍ଚ୍ଚିତ ଅଙ୍ଗ ପୀତାମ୍ବରଧାରୀ
ବେଢ଼ି ରହିଛନ୍ତି ଚାରିପାଶେ ଗୋପନାରୀ ।
ପ୍ରଫୁଲ୍ଲ ମାଲତୀମାଳା ଶ୍ରୀଅଙ୍ଗରେ ସାଜେ
ଦିବ୍ୟ ବନମାଳା ତାହା ପାଶରେ ବିରାଜେ ।
ଚନ୍ଦ୍ରକଳା ସୁଶୋଭିତ ଚୂଡ଼ାକେଶପାଶ
ଦିଶି ଶୋଭାପାଏ କୁନ୍ଦ କୁସୁମ ବିଶେଷ ।
ରାଧାଙ୍କର ବକ୍ଷସ୍ଥଳେ ବିଜେ ରାଧାକାନ୍ତ
ସିଦ୍ଧମୁନି ଋଷି ଦେବଗଣରେ ସେବିତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସ୍ତୁତ ଦେବବର
ପ୍ରଣାମ କରୁଛି ତୁମ୍ଭ ପାଦପଦ୍ମେ ସ୍ମରି ।
ଏହିରୂପେ ଧ୍ୟାନ ପଢ଼ି ଷୋଡ଼ଶ ସଂଖ୍ୟାରେ
ଉପଚାର ଦେଇ ପୂଜା କରିବ ଯତ୍ନରେ ।
ପାଦ୍ୟଜଳ ଆସନ ଯେ ବସନ ଭୂଷଣ
ଅର୍ଘ୍ୟ ମଧୁପର୍କ ଯଜ୍ଞସୂତ୍ର ଦେବ ପୁଣ ।
ତାହାପରେ ଧୂପ ଦୀପ ନଇବେଦ୍ୟ ଦେବ
ପୁନରାଗମନ ଜଳ ଅର୍ପଣ କରିବ ।
ବିବିଧ କୁସୁମ ସୁବାସିତ ମନୋହର
ତାମ୍ବୁଳ ଦାନ କରିବ ହୋଇ ତତପର ।
ଚନ୍ଦନ କସ୍ତୁରୀ ଦିବ୍ୟ ଗନ୍ଧ ଦେଇ ପୁଣି
ମାଲ୍ୟ କୁସୁମ ଅଞ୍ଜଳି ଦେବ ତହିଁ ଆଣି ।
ଯେ ଅନ୍ତେ ତାହାଙ୍କ ପୂଜା ସାରି ତାହାପରେ
ଗଣଙ୍କୁ ପୂଜା କରିବ ବିଧି ଅନୁସାରେ ।

ଶ୍ରୀଦାମା ସୁଦାମା ବସୁଦାମା ନାମଧେୟ
ହରିଭାନୁ ଚନ୍ଦ୍ରଭାନୁ ସୂର୍ଯ୍ୟଭାନୁ ନ୍ୟୁ ।
ସୁଭାନୁ ଏପରି ପାରିଷଦ ସମସ୍ତଙ୍କୁ
ପୂଜା କରିବ ଭକ୍ତିରେ ନିବେଶି ମନକୁ ।
ଗୋପୀଶ୍ୱରୀ ମହାମାୟା ରାଧାଙ୍କୁ ପୂଜିବ
ଭକ୍ତିଭରେ କରଯୋଡ଼ ପ୍ରାର୍ଥନା କରିବ ।
ଗୋପା ଗୋପୀଗଣ ମୁହିଁ ବ୍ରହ୍ମା ପ୍ରଜାପତି
ଲକ୍ଷ୍ମୀ ସରସ୍ୱତୀ ନବଗ୍ରହ ବସୁମତୀ ।
ଷଡ଼ଗ୍ରହଙ୍କ ସଙ୍ଗତେ ପଞ୍ଚ ଉପଚାରେ
ପୂଜା କରିବ ଅତ୍ୟନ୍ତ ସନ୍ତୁଷ୍ଟ ଚିତ୍ତରେ ।
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କୁ ଅର୍ଚ୍ଚନା କରିବ
ଆପଣା ଇଷ୍ଟଦେବଙ୍କୁ ପୂଜା ତହୁଁ ଦେବ ।
ଗଣେଶଙ୍କୁ ବିଘ୍ନନାଶ ହେବା ସକାଶରେ
ପୂଜା କରିବ ସୂର୍ଯ୍ୟଙ୍କୁ ଆରୋଗ୍ୟ ହେତୁରେ ।
ଗାତ୍ରଶୁଦ୍ଧ ହେବାପାଇଁ ଅଗ୍ନିଙ୍କ ପୂଜନ
ପୂଜିବ ବିଷ୍ଣୁଙ୍କୁ ମୁକ୍ତ ହେବାପାଇଁ ଜାଣ ।
ଜ୍ଞାନଲାଭ ଅଭିପ୍ରାୟେ ଶିବଙ୍କୁ ପୂଜିବ
ଐଶ୍ୱର୍ଯ୍ୟ ପାଇଁ ପ୍ରକୃତିଙ୍କୁ ଆରାଧିବ ।
ପୂଜାକଲେ ଏହିପରି ଫଳମାନ ହୁଏ
ନ ହେଲେ ତହିଁରେ ବିପରୀତ ଦେଖାଯାଏ ।
ପୂଜା ଅବସାନେ ପରିହାର କଲପରେ
ସ୍ତୋତ୍ର ପଢ଼ିବ ସେ ବେଦବିଧି ଅନୁସାରେ ।
ସେ ସ୍ତୋତ୍ର ସ୍ୱରୂପ ଏବେ କହୁଅଛି ଶୁଣ
ବୋଲିବ ନମସ୍ତେ ପରଂବ୍ରହ୍ମ ନାରାୟଣ ।
ନିର୍ଲିପ୍ତ ପରମ ଆତ୍ମା ସର୍ବସତ୍ତ୍ୱ ବୀଜ
ପରମାତ୍ମା ସୂକ୍ଷ୍ମତର ଦେବ ଅଧୋକ୍ଷଜ ।
ସ୍ୱେଚ୍ଛାମୟ ସର୍ବଦ୍ରଷ୍ଟା ଦେବଙ୍କର ପାଦେ
ମୋହର ମନ ସର୍ବଦା ରହୁ ଅପ୍ରମାଦେ ।
ସାକାର ଆକାର ଶୂନ୍ୟ ନିର୍ଗୁଣ ସଗୁଣ
ଅଟନ୍ତି ସେ ପ୍ରଭୁ ତାଙ୍କୁ ମୋହର ପ୍ରଣାମ ।
ଯେଉଁ ଦେବ ସୌନ୍ଦର୍ଯ୍ୟରେ କନ୍ଦର୍ପ ସମାନ
ଆବର କରାଳ ରୂପ କରନ୍ତି ଧାରଣ ।
ତାହାଙ୍କ ପାଦରେ ମୋର କୋଟି ନମସ୍କାର
ପ୍ରସନ୍ନ ହୋଇ ସେ ଦୁଃଖ ଫେଡ଼ନ୍ତୁ ମୋହର ।
କର୍ମରୂପୀ ସର୍ବକର୍ମ ସାକ୍ଷୀ ଭଗବାନ
ଧ୍ୟାନ କରୁଛି ମୁଁ ସଦା ତାଙ୍କ ଶ୍ରୀଚରଣ ।
ଫଳରୂପ ଫଳଦାତା ସର୍ବରୂପମୟ
ପ୍ରସନ୍ନ ହୋଇ ସେ ମୋତେ ଦିଅନ୍ତୁ ଅଭୟ ।
ଧାତାରୂପେ ସରଜନା କରନ୍ତି ଯେ ମହୀ
ପାଳନା କରନ୍ତି ପୁଣି ବିଷ୍ଣୁରୂପ ବହି ।
ରୁଦ୍ରରୂପେ ଅନ୍ତଃକାଳେ କରନ୍ତି ସଂହାର
ତାହାଙ୍କ ପାଦେ ସର୍ବଦା ରହୁ ମନ ମୋର ।
ମାୟା ପ୍ରକୃତି ଦୁହିଁଙ୍କ ସ୍ୱରୂପ ଯେ ଦେବ
ତାହାଙ୍କଠାରେ ସର୍ବଦା ରହୁ ଭକ୍ତିଭାବ ।
ସକଳ ଦୁଃଖ ତାରଣ କର୍ମଫଳ ହେତୁ
ଯେ ଅଟନ୍ତି ସର୍ବ ମାୟା ସାଗରର ସେତୁ ।
ଭକ୍ତିଭରେ ନମସ୍କାର କରୁଛି ତାହାଙ୍କୁ
ଖଣ୍ଡନ କରନ୍ତୁ ମୋର ସକଳ ପାପକୁ ।
ତେଜୋବନ୍ତ ଦ୍ରବ୍ୟରେ ଯେ ଅଟନ୍ତି ଭାସ୍କର
ସକଳଜାତି ମଧ୍ୟରେ ବ୍ରାହ୍ମଣଙ୍କ ବର ।
ନକ୍ଷତ୍ରଗଣରେ ଚନ୍ଦ୍ରରୂପେ ବିରାଜନ୍ତି
ତାହାଙ୍କ ପାଦପଦ୍ମରେ ମୋହର ବିନତି ।
ରୁଦ୍ର ବଇଷ୍ଣବ ଜ୍ଞାନୀଜନଙ୍କ ମଧ୍ୟରେ
ପ୍ରକାଶିତ ଅଟନ୍ତି ଯେ ଶିବ ସ୍ୱରୂପରେ ।
ନାଗଙ୍କ ମଧ୍ୟରେ ଶେଷଦେବ ଯେ ଈଶ୍ୱର
ପ୍ରଣାମ କରୁଛି ତାଙ୍କ ପାଦେ ନିରନ୍ତର ।
ପ୍ରଜାପତିଙ୍କ ମଧ୍ୟରେ ବ୍ରହ୍ମା ଯେ ବୋଲନ୍ତି
ସିଦ୍ଧଗଣଙ୍କ ମଧ୍ୟରେ ଯେ କପିଳ ଯତି ।
ସନତ୍କୁମାର ମୁନି ଋଷିଙ୍କ ମଧ୍ୟରେ
ପ୍ରଣାମ କରୁଛି ମୁହିଁ ତାଙ୍କ ଶ୍ରୀପୟରେ ।
ଦେବଙ୍କ ମଧ୍ୟରେ ଯେହୁ ସ୍ୱୟଂ ନାରାୟଣ
ଦେବୀଙ୍କ ମଧ୍ୟେ ପ୍ରକୃତି ରୂପେ ବିଦ୍ୟମାନ ।
ମନୁ ମଧ୍ୟେ ସ୍ୱାୟଂଭୁବ ମନୁ ରୂପ ଯାର
ଧ୍ୟାନ କରୁଅଛି ମୁହିଁ ତାଙ୍କ ଶ୍ରୀପୟର ।
ମନୁଷ୍ୟ ଗଣରେ ଯେହୁ ଅଟନ୍ତି ବୈଷ୍ଣବ
ନାରୀଗଣେ ଶତରୂପା ରୂପରେ ସମ୍ଭବ ।
ଋତୁଗଣେ ବସନ୍ତ ଯେ ମାସେ ମାର୍ଗଶୀର୍ଷ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦଦେଶ ।
ତିଥିମାନଙ୍କରେ ଏକାଦଶୀ ତିଥି ଯେହି
ସରିତ ମଧ୍ୟେ ସାଗର ବୋଲି ଯାହାଙ୍କୁ କହି ।
ପର୍ବତରେ ହିମାଳୟ କ୍ଷମାଗୁଣେ ଧାତ୍ରୀ
ଅଟନ୍ତି ବୃକ୍ଷଗଣରେ କଳ୍ପବୃକ୍ଷ ତୋତ୍ରୀ ।

କୁସୁମରେ ପାରିଜାତ ଶସ୍ୟଗଣେ ଧାନ୍ୟ
ଅମୃତ ସକଳ ଭକ୍ଷ୍ୟ ପଦାର୍ଥରେ ପୁଣ ।
ଗଜଗଣେ ଐରାବତ ଖଗେ ବୈନତେୟ
ଧେନୁଙ୍କରେ କାମଧେନୁ ସାର ନାମଧେୟ ।
ତେଜରେ ସୁବର୍ଣ୍ଣ ପଶୁ ମଧ୍ୟରେ କେଶରୀ
ଅଟନ୍ତି ସେ ଦେବ ତାଙ୍କ ପାଦପଦ୍ମ ସ୍ମର ।
ପ୍ରଣାମ କରୁଛି ମୁହିଁ ଭକ୍ତି ଯେନ ଚିତ୍ତେ
ପ୍ରସନ୍ନହୋଇ ସେ ଦୟା କରନ୍ତୁ କଷ୍ଟରେ ।
ଯକ୍ଷଗଣରେ କୁବେର ଗ୍ରହେ ବୃହସ୍ପତି
ଦିଗପାଳ ଗଣେ ସେହୁ ଶଚୀଦେବୀ ପତି ।
ଶାସ୍ତ୍ରରେ ଚତୁର ବେଦଜ୍ଞାମାଙ୍କ ମଧ୍ୟରେ
ପ୍ରକାଶିତ ସେହୁ ସରସ୍ୱତୀ ସ୍ୱରୂପରେ ।
ଅକ୍ଷର ଶ୍ରେଣୀରେ ସେହୁ ମକାର ଅଟନ୍ତି
ମନ୍ତ୍ରଗଣେ ବିଷ୍ଣୁମନ୍ତ୍ର ରୂପ ବହିଛନ୍ତି ।
ସକଳତୀର୍ଥରେ ସାକ୍ଷାତରେ ମନ୍ଦାକିନୀ
ଇନ୍ଦ୍ରିୟଗଣେ ସେ ଖ୍ୟାତ ମନ ନାମ ଘେନି ।
ଶସ୍ତ୍ରଗଣେ ସୁଦର୍ଶନ ରୋଗେ ବିଷ୍ଣୁଜ୍ୱର ।
ତେଜରେ ସେ ବ୍ରହ୍ମତେଜ ଅଟନ୍ତି ଆବର ।
ତାହାଙ୍କୁ ଦଣ୍ଡ ପ୍ରଣାମ କରୁଅଛି ମୁହିଁ
ନାଶନ୍ତୁ ସେ ମୋର ଦୁଃଖ ଦୟା ମନେ ବହି ।
ଶୀଘ୍ରଗତିରେ ଅଟନ୍ତି ସେ ମନଃ ସ୍ୱରୂପ
କରନ୍ତି ପ୍ରଳୟ କାଳେ ତ୍ରିଭୁବନ ଲୋପ ।
ସେ ଦେବଙ୍କ ପଦ୍ମପାଦେ ପ୍ରଣାମ ମୋହର
ଉଦ୍ଧାର କରନ୍ତୁ ମୋତେ ସେ ପ୍ରଭୁ ଈଶ୍ୱର ।
ଗୁରୁଙ୍କର ଜ୍ଞାନଦାତା ବନ୍ଧୁଙ୍କର ବନ୍ଧୁ
ମିତ୍ରଙ୍କ ପରମମିତ୍ର ସେ କରୁଣାସିନ୍ଧୁ ।
ସେ ଜଗତ କରତାଙ୍କୁ ପ୍ରଣାମ ମୋହର
କରନ୍ତୁ ସେ କଷ୍ଟମୟ ସଂସାରୁ ନିସ୍ତାର ।
ଶିଳ୍ପୀଙ୍କ ମଧ୍ୟରେ ବିଶ୍ୱକର୍ମା ସେ ବୋଲନ୍ତି
କାମଦେବଠାରୁ ସ୍ୱଚ୍ଛ ଯାହାଙ୍କର ମୂର୍ତ୍ତି ।
ସ୍ତ୍ରୀଗଣେ ପତିବ୍ରତା ପ୍ରିୟେ ପୁଣ୍ୟରୂପୀ
ତାହାଙ୍କ ଚରଣେ ଆତ୍ମା ଦେଲି ମୁଁ ସମର୍ପି ।
କ୍ଷତ୍ରିୟ ଗଣରେ ସେହୁ ଅଟନ୍ତି ରାଜନ
ଯନ୍ତ୍ରମାନଙ୍କର ମୂର୍ତ୍ତିମନ୍ତ ଶାଳଗ୍ରାମ ।
ମଙ୍ଗଳକର ଦ୍ରବ୍ୟରେ ପରମ ସ୍ୱରୂପ
ବେଦମାନଙ୍କରେ ସେହୁ ସାମବେଦରୂପ ।

ଧର୍ମରେ ସତ୍ୟ ପୁଣି ଜଳେ ଶୀତଳତା
ପୃଥିବୀରେ ଗନ୍ଧରୂପେ ଯାହାଙ୍କର ସତ୍ତା ।
ସେ ଦେବଙ୍କ ଚରଣରେ ମୋର ନମସ୍କାର
ପ୍ରସନ୍ନ ହୋଇଣ ମୋତେ ଦିଅନ୍ତୁ ସେ ବର ।
ଗଗନରେ ଶବ୍ଦରୂପେ ପଞ୍ଚ ବୀଜସ୍ୱ
ସକଳ ଛନ୍ଦରେ ସେ ଗାୟତ୍ରୀ ନାମଧେୟ ।
ଗନ୍ଧର୍ବ ଗଣରେ ଚିତ୍ରରଥ ସେ ଅଟନ୍ତି
କରୁଛି ମୁଁ ତାଙ୍କ ପାଦପଦ୍ମରେ ବିନତି ।
ଗୋରସ ଦ୍ରବ୍ୟରେ ସେହୁ କ୍ଷୀରରୂପଧାରୀ
ପବନରେ ନୂତ୍ନ ଅଗ୍ନି ଯାହାଙ୍କର ସର
ପୁଣ୍ୟଦାନ ବିଷୟରେ ସେ ଅଟନ୍ତି ଜଳ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦତଳ ।
ତୃଣରେ ସେ କୁଶ ପୁଣି ଶତ୍ରୁଗଣେ ବ୍ୟାଧି
ଗୁଣମାନଙ୍କରେ ଶାନ୍ତରୂପ ସର୍ବସିଦ୍ଧି ।
ତେଜରୂପ ଜ୍ଞାନରୂପ ସର୍ବ ରୂପମୟ
ଅଟନ୍ତି ସେ ସେ କେବଳ ମୋହର ଆଶ୍ରୟ ।
ବାୟୁରୂପ ବହନ୍ତି ସେ ଜଗତ ରକ୍ଷଣେ
ଆକାଶ ସ୍ୱରୂପ ପୁଣ ବ୍ୟାପକତ୍ୱ ଗୁଣେ ।
ଯାହାଙ୍କର ସ୍ତୁତି କରିବାକୁ ଦେବଗଣ
ଶାସ୍ତ୍ରଜ୍ଞ ପଣ୍ଡିତେ ମଧ୍ୟ ନ ହୋଇବେ କ୍ଷମ ।
ବାକ୍ୟମନ ଅଗୋଚର ଅଟନ୍ତି ସେ ଦେବ
ତାଙ୍କୁ ବର୍ଣ୍ଣିବାକୁ କେବା ସମର୍ଥ ହୋଇବ ।
ବାକ୍ୟଦେବୀ ସରସ୍ୱତୀ ଯାହାଙ୍କର ସ୍ତୁତି
ପଢ଼ିବା କାଳରେ ଜଡ଼ଭୂତ ହୋଇଯାନ୍ତି ।
ସେ ପରମ ପୁରୁଷଙ୍କୁ ସାମାନ୍ୟ ମନୁଷ୍ୟ
ସ୍ତୁତି କରିବାକୁ କେହି ପାରିବ ସାହସ ।
ଅତ୍ୟନ୍ତ ସୁନ୍ଦରରୂପ ଶ୍ୟାମଳ ବରନ
ଦ୍ୱିଭୁଜ ମୁରଲୀହସ୍ତ ସସ୍ମିତ ବଦନ ।
କିଶୋର ବୟସ ଗୋପନାରୀ ପରିବୃତ
ଶ୍ରୀରାଧିକା ପ୍ରାଣେଶ୍ୱର ଗୋଲୋକର ନାଥ ।
ରତ୍ନ ସିଂହାସନ ପରେ ବିଜେ ଦେବରାଜ
ବେଢ଼ି ରହିଛନ୍ତି ଚଉପାଶେ ଦାସୀବ୍ରଜ ।
ଯେ ଶୁକ୍ଳ ଚାମର କେହୁ ମୁରଲି ଆଣି
ତାମ୍ବୁଳ ଆଣି କେ ଦେଉଅଛନ୍ତି କରପୁଟେ ।
ଏମନ୍ତ ରୂପରେ ଯେଉଁ ଦେବ ଅଛନ୍ତି
ପ୍ରଣମୁଛି ମୋର ତାଙ୍କୁ ଅଶେଷ ବିନତି ।

ବୃନ୍ଦାବନେ ରାସକ୍ରୀଡ଼ାମଣ୍ଡଳ ସ୍ଥାନରେ
ଶତଶୃଙ୍ଗ ରତ୍ନଶୈଳ ଗୋଲୋକ ମଧ୍ୟରେ ।
ବିରଜା ତଟିନୀ ରମ୍ୟ ପୁଳିନ ପ୍ରଦେଶେ
ବିରାଜିତ ଅଟନ୍ତି ସେ ଶ୍ରୀମୋହନବେଶେ ।
ତାହାଙ୍କ ଚରଣେ ମୋର କୋଟି ନମସ୍କାର
ପ୍ରସନ୍ନ ହୁଅନ୍ତୁ ମୋହଠାରେ ବେଦବର ।
ସତ୍ୟ ଶାନ୍ତ ବ୍ରହ୍ମରୂପ ଶ୍ରୀକୃଷ୍ଣ ମୂରତି
ଆସକ୍ତ ହେଉ ମୋ ମନ ତାଙ୍କଠାରେ ନିତି ।
ଏହିରୂପେ ଶ୍ରୀକୃଷ୍ଣଙ୍କ ସ୍ତୋତ୍ରକୁ ଯେ ନର
ପଢିବ ତ୍ରିସନ୍ଧ୍ୟାକାଳେ ହୋଇ ତତପର ।
ଇହଲୋକରେ ଜଗତ ପୂଜ୍ୟ ସେ ହୋଇବ
କୃଷ୍ଣଙ୍କ ସମାନ ସବୁଠାରେ ଦେଖାଯିବ ।
ଅନ୍ତଃକାଳେ ଶ୍ରୀହରିଙ୍କ ଦୂତଗଣେ ଆସି
କରାଇବେ ନେଇ ତାଙ୍କୁ ବଇକୁଣ୍ଠବାସୀ ।
ତେଜରେ ଆଦିତ୍ୟ ପୁଣି ଯଶରେ ଚନ୍ଦ୍ରମା
ସମାନ ନୋହିବେ ଅନ୍ୟେ ଦେବା କି ଉପମା ।
ଜୀବନ୍ମୁକ୍ତ ତାହାଙ୍କୁ ଜାଣିବ ନିଶ୍ଚୟ
ହରିଙ୍କ କୃପାରେ ତାର ନୁହେ ପାପଭୟ ।
ଅରୋଗୀ ସୁଲକ୍ଷଣଯୁକ୍ତ ଧନବନ୍ତ ଜ୍ଞାନୀ
ଷଡ଼ଙ୍ଗ ବେଦବକ୍ତା ସର୍ବ ଯଶସ୍ୱୀ
ସକଳ ସମ୍ପଦଦାତା ହୁଅଇ ସେ ଲୋକେ
ନୁହେ କେ ତାର ସମାନ ତ୍ରିଭୁବନ ଯାକେ ।
ଏମନ୍ତ ଶ୍ରୀହରିଙ୍କର ସ୍ତୋତ୍ରର ପ୍ରକାର
କହିଲି ତା ଆଗେ ବତ୍ସ ତୁମ୍ଭର ଆଗର ।
ପୁଷ୍କର ତୀର୍ଥକୁ ଏବେ ଯାଅ ବେଗ ହୋଇ
ମନ୍ତ୍ରସିଦ୍ଧି କର ବିଧି ଅନୁସାରେ ତହିଁ ।
ସେ ଅନ୍ତେ ବାଞ୍ଛିତ ଫଳ ଅବଶ୍ୟ ପାଇବ
ଏକବିଂଶ ଥର କ୍ଷତ୍ରକୁଳ ନାଶିବ ।
ମୋହର ଆଶୀର୍ବାଦରେ କୃଷ୍ଣଙ୍କ ପ୍ରସାଦେ
ଜୟଯୁକ୍ତ ହେବ ମହାସୁଖେ ଅପ୍ରମାଦେ ।
ଏହିରୂପେ କହି ଶିବ ମୁନିଙ୍କ ଆଗର
ନୀରବ ହୋଇଲେ ଗୀତେ ଭଣେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଶିବଙ୍କ ଦ୍ୱାରା ପର୍ଶୁରାମଙ୍କର ମନ୍ତ୍ର ଓ ସ୍ତବ ପ୍ରଦାନ କଥନେ ନାମ ଏକତ୍ରିଂଶୋଽଧ୍ୟାୟଃ ।

—*—

## ଦ୍ୱାତ୍ରିଂଶ ଅଧ୍ୟାୟ

### ପର୍ଶୁରାମଙ୍କର ତପସ୍ୟା ଆରମ୍ଭ ସମୟରେ ଶୁଭଶକୁନ ଦର୍ଶନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଶିବଙ୍କୁ ପ୍ରଣମି ଯମଦଗ୍ନିଙ୍କ କୁମର ।
ପୁଷ୍କର ତୀର୍ଥେ ଦୁଷ୍କର ତପସ୍ୟାକୁ କଲେ
ଯଥା ସମୟରେ ମନ୍ତ୍ରସିଦ୍ଧ ସେ ହୋଇଲେ ।
ମାସେ ଯାଏ ନିରାହାର ହୋଇକରି ପୁଣି
ଧ୍ୟାନ କଲେ ଶ୍ରୀକୃଷ୍ଣଙ୍କ ପାଦପଦ୍ମ ବେନି ।
ଯେତେବେଳେ ବାୟୁସିଦ୍ଧି ହେଲା ତାହାଙ୍କର
ଚକ୍ଷୁଉନ୍ମୀଳନ କରି ଅନାନ୍ତେ ସତ୍ୱର ।
ଦେଖିଲେ ଗଗନ ମଧ୍ୟେ ଦିବ୍ୟ ତେଜରାଜି
ଦିଶୁଛି ଆଦିତ୍ୟ ବିମ୍ବ ସମାନ ବିରାଜି ।
ତାର ପ୍ରଭାବଳେ ଦଶଦିଗ ଲୁଚିଲେ ମହୀ
ରହିଛି ସକଳ ସ୍ଥାନେ ଆଚ୍ଛାଦିତ ହୋଇ ।
ସେ ତେଜ ମଧ୍ୟରେ ରତ୍ନ ବିମାନରେ ବସି
ଅଛନ୍ତି ଭୁବନକର୍ତ୍ତା ପ୍ରଭୁ ବ୍ରହ୍ମରାଶି ।
ଈଷତ ହାସ୍ୟ ଶ୍ରୀମୁଖ ମଣ୍ଡଳ ସୁନ୍ଦର
ଘନନୀଳ ମେଘ ପ୍ରାୟେ ଦିଶେ କଳେବର ।
ତାଙ୍କୁ ଦେଖି ପର୍ଶୁରାମ ଦଣ୍ଡବତ ହୋଇ
ବର ମାଗିଲେ ମସ୍ତକେ କର ବେନି ଦେଇ ।
ବୋଇଲେ ହେ ଦେବ ଦେବଗଣ ଅଧିପତି
ପ୍ରସନ୍ନ ହୋଇଣ ଶୁଣ ମୋହର ବିନତି ।
ଏକବିଂଶ ଥର କୁଳ ସମଗ୍ର ପୃଥିବୀ
ପ୍ରତିଜ୍ଞା କରିଛି କ୍ଷତ୍ରୀଶୂନ୍ୟ ମୁଁ କରିବି ।
ତୁମ୍ଭପାଦ ପଙ୍କଜରେ ଦେଇଅଛି ମନ
ମୋର ବାଞ୍ଛା ପୂର୍ଣ୍ଣ କର ପ୍ରଭୁ ଭଗବାନ ।
ସେ ଅନ୍ତରେ ଦାସଭାବ ଦେଇକରି ମୋତେ
ତୁମ୍ଭ ସେବାରେ ନିଯୁକ୍ତ କରାଅ ସତତେ ।
ତା ଶୁଣି ଶ୍ରୀକୃଷ୍ଣ ତାଙ୍କୁ ଦେଇ ସେହି ବର
ଅନ୍ତର୍ଦ୍ଧାନ ହେଲେ ଏକ ମୁହୂର୍ତ୍ତ ମଧ୍ୟର ।

ବର ପାଇ ପର୍ଶୁରାମ ହରଷ ହୋଇଲେ
ପ୍ରଭୁଙ୍କୁ ସୁମରି ନିଜପୁରେ ବାହୁଡ଼ିଲେ ।
ସେକାଳେ ଦକ୍ଷିଣ ଅଙ୍ଗ ସ୍ଫୁରିଲା ତାଙ୍କର
ସର୍ବଦା ପ୍ରସନ୍ନ ଭାବ ଭଜିଲା ଅନ୍ତର ।
ରଜନୀରେ ଶୁଭମୟ ସ୍ୱପ୍ନ ଦେଖାଗଲା
ମନୋରଥ ସିଦ୍ଧ ହେବା କଥା ଜଣାଗଲା ।
ସେ ସକାଶୁ ମହାମନା ନିଜ ବାନ୍ଧବଙ୍କୁ
ଆଶ୍ୱାସନା କରି ଧୈର୍ଯ୍ୟ ଦେଲେ ସେ ତାହାଙ୍କୁ ।
ଆପଣାର ଶିଷ୍ୟଗଣ ଡକାଇ ଆଣିଲେ
ପିତାଙ୍କ ଶିଷ୍ୟଙ୍କୁ ମଧ୍ୟ ଆମନ୍ତ୍ରଣ କଲେ ।
ଭାଇମାନଙ୍କ ସହିତେ ତାହାଙ୍କୁ ବସାଇ
ବିଚାର କଲେ ସମସ୍ତେ ଏକମତ ହୋଇ ।
ଆମୂଳ କରିଣ ରାମ ସକଳ ବିଷୟ
କହିଲେ ସେ ସମସ୍ତଙ୍କୁ ମନକରି ଥୟ ।
ସେ ଅନ୍ତରେ ଶୁଭଦିନ ଶୁଭ ମୁହୂର୍ତ୍ତରେ
ବାହାରିଲେ ସେମାନଙ୍କୁ ଘେନି ସଙ୍ଗତରେ ।
କାର୍ତ୍ତବୀର୍ଯ୍ୟ ରାଜା ତୁଲେ କରିବାକୁ ରଣ
ଗଲେ ନିଜ କରପୃଷ୍ଠେ ଘେନି ଧନୁବାଣ ।
ଯିବାବେଳେ ନାନାବିଧ ଜୟ ହିତକର
ସୂଚନାମାନ ଦର୍ଶନ କଲେ ମୁନିବର ।
ହରିନାମ ସଂକୀର୍ତ୍ତନ ଶଙ୍ଖ ଘଣ୍ଟା ସ୍ୱନ
ଶୁଭିଲା ତାହା ସହିତେ ଦୁନ୍ଦୁଭି ବାଦନ ।
ଆହେ ରାମ ଜୟ ହେବ ତୁମ୍ଭର ଅବଶ୍ୟ
ଏରୂପେ ଆକାଶେ ଶୁଣାଗଲା ମୁଖଘୋଷ ।
ଗମ୍ଭୀର ମେଘ ଗର୍ଜନ ବାଦ୍ୟଯନ୍ତ୍ର ନିକର
ବିଜୟ ସୂଚକ ହୋଇଥିଲେ ସେ କାଳର ।
ବନ୍ଦୀ ଦୈବଜ୍ଞ ଭିକ୍ଷୁକ ତାହାଙ୍କ ଆଗରେ
ଦେଖାଗଲେ ଯାଉଛନ୍ତି ଅତ୍ୟନ୍ତ ବେଗରେ ।
ଜ୍ୱଳନ୍ତ ପ୍ରଦୀପ ଘେନି ପତି ପୁତ୍ରବତୀ
ସତୀ ସ୍ତ୍ରୀଗଣଲେ ଆଗେ ଦିଶିଲେ ଝଟିତି ।
ନାନା ଅଳଙ୍କାର ଚାରୁ ଅଙ୍ଗଦେଶେ ଥାଇ
ସାକ୍ଷାତରେ ଦେବସ୍ତ୍ରୀ ପ୍ରାୟେ ସେ ଦିଶଇଁ ।
ଜମ୍ବୁକ ଯୁଗଳ ପୂର୍ଣ୍ଣକୁମ୍ଭ ସହିତରେ
ଦେଖିଣ ଆପଣା ବାମଭାଗ ପ୍ରଦେଶରେ ।
ଅଗ୍ରରେ ନକୁଳ ଦକ୍ଷଭାଗେ ଗାଭି ମୃଗ
ଦ୍ୱିଜଙ୍କ ସହିତେ ଦେଖାଗଲେ ତାଙ୍କୁ ଆଗ ।

କୃଷ୍ଣସାର ଗଜ ସିଂହ କୃତନ୍ନା ଚଣ୍ଡିକ
ତପସ୍ୱୀ ସେ ରାଜହଂସ ଶ୍ୱାନ ଚକ୍ରବାକ ।
ପିକ ହସ୍ତୀ ଖଞ୍ଜନ ଶଙ୍ଖ ଚକୋରକ
ମାଂସବନ୍ତ ବାଳକାକ୍ଷୀ ନାରାଣ ସ୍ୱନକ ।
ସୌଦାମିନୀ କନ୍ୟରୂପ ବାଳମୀର୍ଯ୍ୟ ପ୍ରଭା
ସୁନିର୍ମଳ ଅନ୍ତରୀକ୍ଷ ନୀଳବର୍ଣ୍ଣ ଆଭା ।
ପ୍ରତ୍ୟଗ୍ରମାଂସ ସଜୀବମତ୍ସ୍ୟ ଶଙ୍ଖ ସ୍ୱର୍ଣ୍ଣ
ରଜତ ମାଣିକ୍ୟ ମୁକ୍ତା ପ୍ରବାଳ ରତନ ।
ମଣୀନ୍ଦ୍ର ଦଧି ଶୁକ୍ଳଧାନ୍ୟ ଲାଜାଖଣ୍ଡ
ଶୁକ୍ଳପକ୍ଷେ କୁଙ୍କୁମ ସେ ପର୍ଣ୍ଣଛତ୍ର ଦଣ୍ଡ ।
ଶୁକ୍ଳ ପତାକା ଶ୍ୱେତ ଚାମର ଦର୍ପଣ
ବସ୍ତ୍ରଯୁକ୍ତ କାମଧେନୁ କୃଷ୍ଣସାରଗଣ ।
ସଦ୍ୟୋଜାତ ଦଧି ଘୃତ ଅମୃତ ପାୟସ
ପୂତ ଶାଳଗ୍ରାମ ଶିଳାରଥସ୍ଥ ନରେଶ ।
ସୁପକ୍ୱ ଫଳ ଶର୍କରା ସ୍ୱସ୍ତିକ ମାକ୍ଷିକ
ବୃଷେନ୍ଦ୍ର ମେଷ ଶୁକ୍ଳ ପର୍ବତ ମୂଷିକ ।
ମେଘମାଳା କରିଭେଦକ ଆଦିତ୍ୟ ମଣ୍ଡଳ
ଶୁଭ୍ରବର୍ଣ୍ଣ ସୁଶୀତଳ ଚନ୍ଦ୍ର ତାରାବଳ ।
କସ୍ତୁରୀ ବ୍ୟଜନ ଜଳ ପଥିକ ମୃତ୍ତିକା
ହରିଦ୍ରା ସର୍ଷପ ବସ୍ତ୍ର ବାଳକ ବାଳିକା ।
ସିଦ୍ଧାର୍ଥ ଭ୍ରମର ମୃଗ ବେଶ୍ୟା ଦୂର୍ବାଦଳ
କର୍ପୂର ଗୋମୂତ୍ର ପୀତବସନ ମଞ୍ଜୁଳ ।
ଗୋମୟ ଗୋଗୋଷ୍ଠଧୂଳି ଗାଭୀ ପାଦଚିହ୍ନ
ଗୋଶାଳା ତୋରଣ ଦେବପ୍ରତିମା ଭୂଷଣ ।
ଜ୍ୱଳନ୍ତ ଅନଳ ତାମ୍ର ସ୍ଫଟିକ ସିନ୍ଦୂର
ମାଲ୍ୟରତ୍ନ ମଧୁ ମାଳା ବୈଦ୍ୟ ଚନ୍ଦନସାର ।
ଏରୂପେ ଶୁଭସୂଚକ ଚିହ୍ନମାନ ସେତେ
ଦେଖା ଯାଉଥିଲେ ପ୍ରଭୁ ତାହାଙ୍କ ଅଗ୍ରତେ ।
ସୁଗନ୍ଧ ଶୀତଳ ବାୟୁ କରିଣ ଆଘ୍ରାଣ
କଲେ ଦ୍ୱିଜଙ୍କର ଆଶୀର୍ବଚନ ଗ୍ରହଣ ।
ଏହିପରି ମାର୍ଗରେ ନାନା ଶୁଭକଥା
ଲକ୍ଷି ଦେଖି ଚାଲିଲେ ପର୍ଶୁରାମ ମହାରଥା ।
ଅସ୍ତ ହୁଅନ୍ତେ ଆଦିତ୍ୟ ନର୍ମଦା ତଟରେ
ବାସା କରିଣ ରହିଲେ ସୈନ୍ୟ ସହିତରେ ।
ମହାନ ନାୟକ ବଟବୃକ୍ଷ ଏକ ଦେଖି
ଶିବିରର ଶୃଙ୍ଗପରେ ସୋଣ୍ଡା ପ୍ରକାଶଇ ।

ଗୌଲସ୍ତି ମହର୍ଷିଙ୍କର ସେ ତପ ଆଶ୍ରମ
ନାନାବୃକ୍ଷ ଲତାଗଣେ ହୋଇଛି ମନୋରମ ।
ସେସ୍ଥଠାରୁ କାର୍ତ୍ତବୀର୍ଯ୍ୟ ରାଜାର ନଗର
ଅଳ୍ପଦୂରେ ଅବସ୍ଥିତ ଅଟଇ ମୁନିବର ।
ସେଠାରେ ରହିଣ ଯମଦଗ୍ନି ମୁନିସୁତ
ପୁଷ୍ପଶଯ୍ୟାରେ ଶୟନ କଲେ ହୋଇ ତୃପ୍ତ ।
ପଥଶ୍ରମରେ ତ କ୍ଳାନ୍ତ ହୋଇଥିଲେ ଅତି
ନିଦ୍ରା ଗଲେ ଆନନ୍ଦରେ ସ୍ମରି ମନ୍ତ୍ର ଜାତି ।
ନିଶା ଶେଷ ସମୟରେ ଦେଖିଲେ ସ୍ୱପନେ
କେତେବେଳେହେଲେ ଭାବି ନଥିଲେ ଯା ମନେ
ବାତ ପିତ୍ତ କଫଆଦି ଦୋଷ ତାହାଙ୍କର
ନଥିଲା ସେ ସମୟରେ ବୋଲି ମନେ କର ।
ଗଜ ଅଶ୍ୱ ଶୈଳ ଉଚ୍ଚ ପ୍ରାସାଦ ପୃଷ୍ଠରେ
ଆଉରି ଗୋବୃକ୍ଷ ଫଳଭରା ବୃକ୍ଷପରେ ।
ଆରୋହଣ କରି ନିଜେ କରନ୍ତି ରୋଦନ
କୃମିପୋକ ହସ୍ତେ ଭେଳ ଖାନ୍ତି ପୁନଃ ପୁନଃ ।
ଚନ୍ଦନ ଚର୍ଚ୍ଚିତ ହୋଇ ନଉକାରେ ବସି
ହସ୍ତେ ବାନ୍ଧିଛନ୍ତି ଦିବ୍ୟ ପୁଷ୍ପମାଳା କଷି ।
କଟୀତଟେ ପୀତବାସ ଅତ୍ୟନ୍ତ ଶୋଭିତ
ସର୍ବାଙ୍ଗେ ପୁରୀଷ ମୂତ୍ର ରକ୍ତ ବସା ମୁକ୍ତ ।
ହସ୍ତେ ବୀଣା ଧରି ନିଜେ କରନ୍ତି ବାଦନ
ପଦ୍ମପତ୍ରରେ ବେଷ୍ଟିତ ନିଜ ଅଙ୍ଗଘନ ।
ଦଧିଘୃତ ମଧୁମୟ ପାୟସକୁ ଖାଇ
ବସିଛନ୍ତି ଆସନରେ ତାମ୍ବୁଳ ଚୋବାଇ ।
ଆଶୀର୍ବାଦ କରୁଛନ୍ତି ଆସି ଦ୍ୱିଜଗଣ
ଶୋଭାପାଏ ଆଗେ ଫଳପୁଷ୍ପ ଦୀପମାନ ।
ଆଉଥରେ ପୁଣି ପକ୍ୱଫଳ କ୍ଷୀର ଲୁଚି
ଶାକର ମିଶାଇ ଆନନ୍ଦରେ ସେ ଖାଇଲେ ।
ସର୍ପ ମୀନ ଜୋକଗଣ ବେଢ଼ି ସ୍ୱରପଟେ
ଚୋବାଉ ଅଛନ୍ତି ତାଙ୍କ ଶରୀରକୁ ଆଣ୍ଟେ ।
ଭୟରେ ସେ ପଳାୟନ କରୁଛନ୍ତି ତହୁଁ
ଗୋଡାଇ ସେ ବେଢ଼ୁଛନ୍ତି ପୁଣି ଯାଉ ଯାଉ ।
ସୂର୍ଯ୍ୟ ଚନ୍ଦ୍ର ମଣ୍ଡଳକୁ ବେନିକରେ ଧରି
ବସିଅଛନ୍ତି ସୁବର୍ଣ୍ଣ ଆସନ ଉପରି ।
ପତି ପୁତ୍ରବତୀ ନାରୀ ସସ୍ମିତ ବଦନେ
ଉଭା ହୋଇଛନ୍ତି ଆସି ତାଙ୍କ ସନ୍ନିଧାନେ ।

ସୁବେଶ ହୋଇ ଗୋଟିଏ କନ୍ୟା ଆସିକରି
ଟାଣି ନେଉଅଛି ଦକ୍ଷକର କରେ ଧରି ।
ଧାର୍ମିକ ବ୍ରାହ୍ମଣ ଜଣେ ବେଦ ପଢ଼ି ମୁଖେ
ଯାଆନ୍ତେ ତାହାଙ୍କ ପଛେ ଚାଲୁଅଛି ସୁଖେ ।
ବୃକ୍ଷଗଣେ ଫଳପୁଷ୍ପ ଜନ୍ମିଛି ଅପାର
ଦେବତା ପ୍ରତିମା କେତେ ଅଛନ୍ତି ପାଶର ।
ଆପଣେ ଗଜ ଉପରେ ବସି କେତେବେଳେ
ଯାଉଛନ୍ତି ପୁଣି ଅଶ୍ୱ ପଦାତିକମେଳେ ।
ପୀତବସ୍ତ୍ର ପିନ୍ଧି ଏକ ବ୍ରାହ୍ମଣ କାମିନୀ
ଦେଖାଗଲା ଅଙ୍ଗେ ନାନା ଅଳଙ୍କାର ଘେନି ।
ଶଙ୍ଖ ସ୍ଫଟିକ ମାଳିକା ଚନ୍ଦନରେ ବୋଳା
ହୋଇକରି ଲମ୍ବିଅଛି ଆପଣାର ଗଳା ।
ସୁବର୍ଣ୍ଣ ରଜତ ଆଦି ନାନା ରତ୍ନଗଣ
ପଥେ ଘାଟେ କେତେମତେ କଲେ ଦରଶନ ।
ଗଜ ବୃଷ ଶ୍ୱେତସର୍ପ ଶୁକଳ ଚାମର
ଦେଖୁଛନ୍ତି ଆନନ୍ଦରେ ହୋଇ ଜରଜର ।
ଆଗେ ସ୍ତବପାଠ କରୁଛନ୍ତି ଭାଟଗଣ
ଧନ୍ୟ ମହାବୀର ତୁମ୍ଭେ ଭୃଗୁଙ୍କ ନନ୍ଦନ ।
ଆଉରି ସୁବର୍ଣ୍ଣମୟ ରଥପରେ ନିଜେ
ନାନା ଶସ୍ତ୍ର ଅସ୍ତ୍ର ଧରି କଟେନ୍ତି ବଜେ ।
ମାଳତୀ କୁସୁମମାଳା ଥାଇ ବକ୍ଷସ୍ଥଳେ
ବିପୁଳ ଶୋଭା ପ୍ରକାଶ କରୁଅଛି ଭାଳେ ।
ପୁଣି ରତ୍ନ ସିଂହାସନ ଉପରେ ସେ ଯାଇ
ବସୁଅଛନ୍ତି ସଙ୍ଗରେ ବନ୍ଧୁଗଣ ଥାଇ ।
ପୂର୍ଣ୍ଣକୁମ୍ଭ ପଦ୍ମମାଳା ଦଧି ଲାଜା ଘୃତ
ଦେଖନ୍ତି ସ୍ୱପ୍ନ କାଳରେ ଯମଦଗ୍ନି ସୁତ ।
ପୂର୍ଣ୍ଣଚନ୍ଦ୍ର ଜନାର୍ଦ୍ଦନ ପୁରୁଷଙ୍କ ତୁଲେ
ସେ ଅନ୍ତରେ ପୁଣି ନିଜ ପାଶରେ ଦେଖିଲେ ।
ଆକାଶ ମାର୍ଗରେ ଶୁକ୍ଳବକ ହଂସମାଳା
ତାହାଙ୍କ ଦୃଷ୍ଟି ଆଗରେ କରୁଛନ୍ତି ଖେଳା ।
ବ୍ରାହ୍ମଣ କନ୍ୟାମାନେ ପୂର୍ଣ୍ଣକୁମ୍ଭ ଥୋଇ
ପୂଜା କରୁଛନ୍ତି ଗନ୍ଧ ପୁଷ୍ପ ଧୂପନେଇ ।
ମଣ୍ଡପ ଉପରେ ବସି ବୃଦ୍ଧଦ୍ୱିଜ କେତେ
ଶିବଲିଙ୍ଗ ଉପାସନ କରନ୍ତି ସମସ୍ତେ ।
ଜୟଲାଭ କର ବୋଲି ଅକ୍ଷତ କୁସୁମ
ପ୍ରଦାନ କରନ୍ତି ଜଣେ ବ୍ରାହ୍ମଣ ଉତ୍ତମ ।

ଆକାଶରୁ ଫଳ ନବପଲ୍ଲବ ସହିତେ
ଅମୃତ ଚନ୍ଦନ ବୃଷ୍ଟି ହୁଅଇ ନିରତେ ।
ଗୋରୋଚନା ଶୁକ୍ଳଧାନ୍ୟ ଦଧିଦ୍ୱାର ପୂର୍ଣ୍ଣ
ସକଳସ୍ଥାନରେ ମାର୍ଗେ ହୋଇଅଛି ପୂର୍ଣ୍ଣ ।
ଦେବାଳୟ ମାନଙ୍କରେ ସେବକ ନିକର
ପୂଜୁଛନ୍ତି ଶିବଲିଙ୍ଗ ହୋଇ ତୋଷଭର ।
ଯବଧାନ୍ୟ ଚୂର୍ଣ୍ଣ ଭୂଲେ ଗୋଧୂମ ମିଶ୍ରିତ
ଘୃତ ଯୋଗେ ହୋଇଅଛି ଲଡ଼ୁ ଭଜା ବହୁତ ।
ତାହା ଦେଖି ମୁନିବର କେତେକ ଦ୍ୱିଜନ୍ମ
ଭୋଜନ କରୁଅଛନ୍ତି ତୋଷ ମନେ ଖାନ୍ତି ।
ଦିବ୍ୟ ବସ୍ତ୍ର ଅଳଙ୍କାରେ ଆପଣା ଶରୀର
ବିଭୂଷିତ କରୁଛନ୍ତି ବସି ବାରମ୍ବାର ।
ନର୍ତ୍ତକୀ ବେଶ୍ୟାମାନଙ୍କ ସୁମଙ୍ଗଳ ଗୀତ
ଶୁଣିଲେ ଦର୍ଶନ କରି ତାହାଙ୍କର ନୃତ୍ୟ ।
ରୁଧିର ସୁରାପାନରେ ହୋଇଛନ୍ତି ଭୋଳ
ବୋଲୁଛନ୍ତି ପୁଣି ଅଙ୍ଗ ନେଇ ଟଳଟଳ ।
ପୀତବର୍ଣ୍ଣ ପକ୍ଷୀଗଣ ମନୁଷ୍ୟ ନିକର
ଦେଖିଲେ ସ୍ୱପନେ ପରଶୁରାମ ଦ୍ୱିଜବର ।
ଅରୁଣ ଉଦୟକାଳେ ଭୁଞ୍ଜୁଛନ୍ତି ମାଂସ
ଶସ୍ତ୍ର ଘାତେ ଦେହ କ୍ଷତ ହୋଇଛି ବିଶେଷ ।
ବନ୍ଧା ହୋଇଅଛି ଗୋଡ଼େ ସୁଦୃଢ଼ ଶିକୁଳି
ତେଣୁ ସକାଶୁ ପାଦେ ହେଲେ ନ ପାରନ୍ତି ଚଳି ।
ଏହିରୂପେ ଶୁଭ ସ୍ୱପ୍ନ ଦେଖି ପରଶୁରାମ
ଭାବିଲେ ନିଶ୍ଚେ ସଫଳ ହେବ ମନସ୍କାମ ।
ସେ ଅନ୍ତରେ ଶ୍ରୀହରିଙ୍କୁ ସୁମରଣା କଲେ
ଶଯ୍ୟା ତେଜି ପ୍ରାତଃକାଳ କର୍ମକୁ ସାରିଲେ ।
ସ୍ୱଜନଙ୍କୁ ସଙ୍ଗେ ଘେନି ସଭା କଲେ ବସି
କହେ ଗୀତଛନ୍ଦେ ଦୀନ ହୀନ କ୍ଷେତ୍ରବାସୀ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପରଶୁରାମଙ୍କର ତପସ୍ୟା ଆରମ୍ଭ ସମୟରେ ଶୁଭଶକୁନ ଦର୍ଶନ କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—*—

# ତ୍ରୟୋବିଂଶ ଅଧ୍ୟାୟ

## ସହସ୍ରାର୍ଜ୍ଜୁନ ପ୍ରତି ପରଶୁରାମଙ୍କର ଦୂତପ୍ରେରଣ ଓ ନିଜ ପ୍ରିୟା ସହିତ ସହସ୍ରାର୍ଜ୍ଜୁନର ବାକ୍ୟ ବିନିମୟ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ସଭାସଦଙ୍କୁ ଜଣାଇ ପରଶୁରାମ ବୀର ।
ସହସ୍ରାର୍ଜ୍ଜୁନ ପାଶକୁ ଦୂତ ପଠାଇଲେ
ଯୁଦ୍ଧକୁ ଆସ ବୋଲିଣ ସମ୍ବାଦ ସେ ଦେଲେ ।
ଆଜ୍ଞା ପାଇ ସେହିକ୍ଷଣି ଦୂତ ଚାଲିଗଲା
କାର୍ତ୍ତବୀର୍ଯ୍ୟଙ୍କ ସଭାରେ ପ୍ରବେଶ ହୋଇଲା ।
ଦେଖିଲା ନୃପପାଶରେ ବେଢ଼ି ନୃପଗଣ
ବସିଛନ୍ତି ସହସ୍ରାର୍ଜ୍ଜୁନ ମୁଖକୁ ଚାହିଁଣ ।
ସେ ସମୟେ ତାଙ୍କ ଆଗେ ଉଭା ହୋଇକରି
ବୋଇଲା ମୋଠାରୁ ଶୁଣ ଆହେ ଦଣ୍ଡଧାରୀ ।
ନର୍ମଦା ନଦୀତଟରେ ଅକ୍ଷୟବଟ ମୂଳେ
ବସିଛନ୍ତି ପରଶୁରାମ ଭାଇଙ୍କର କୋଳେ ।
ପଠାଇଛନ୍ତି ମୋତେ ତୁମ୍ଭ ନିକଟକୁ
ବନ୍ଧୁବର୍ଗ ଘେନି ବେଗେ ଆସ ହେ ଯୁଦ୍ଧକୁ ।
ଅକାରଣେ ନେଲ ତାଙ୍କ ପିତାଙ୍କର ପ୍ରାଣ
ଦେଖାଅ ଏବେ ତାହାଙ୍କ ଆଗେ ବାହୁତ୍ରାଣ ।
ପୃଥିବୀ ମଣ୍ଡଳ ବୁଲି ଏକବିଂଶ ଥର
ନିକ୍ଷତ୍ର କରିବେ ସେହି ବୀରଙ୍କ ଶେଖର ।
ନ ମିବ ଯେବେ ସେ କାଲି ଆସି ଏଠାକୁ
ପେଷିବେ ତୁମ୍ଭମାନଙ୍କୁ ଯମ ଭୁବନକୁ ।
ଏହିରୂପେ କହି ଦୂତ ରାମପାଶେ ଗଲା
ସମସ୍ତ କଥା କହିଲି ବୋଲି ଜଣାଇଲା ।
ଦୂତର ବଚନ ଶୁଣି ସହସ୍ରାର୍ଜ୍ଜୁନ ବୀର
ଆସନୁ ଉଠିଲା ବେଗେ ହୋଇ ତତପର ।
କବଚ ଲଗାଇ ଧନୁ ଶରକୁ ଧରିଲେ
ସୈନ୍ୟଙ୍କୁ ସଜ କରାଇ ରଥ ଅଣାଇଲେ ।
ତାହା ଦେଖି ମନୋରମା ଯାଇ ପତିପାଶ
ନିବାରଣ କଲା ମନେ ବହି ମହାତ୍ରାସ ।

ରାଜନ ବୋଇଲେ ଆଗୋ ମନୋରମା ଶୁଣ
ଯମଦଗ୍ନି ମୁନି ସଙ୍ଗେ କରି ଘୋର ରଣ ।
ହେନଥିଲି ତାହାଙ୍କର ଜୀବନକୁ ମୁହିଁ
ତାଙ୍କ ପୁତ୍ର ପର୍ଶୁରାମ ସେ କଥା ନ ସହି ।
କଠୋର ତପସ୍ୟା କରି ସବୁ ଶସ୍ତ୍ର ଅସ୍ତ୍ର
ପାଇଲେ ଶିବଙ୍କଠାରୁ ପୁଣି ବିଷ୍ଣୁ ମନ୍ତ୍ର ।
ଏକୋଇଶ ଥର ଯାଏ ବୁଲି ଭୂମଣ୍ଡଳ
କରିବେ କ୍ଷତ୍ରିୟଙ୍କର ବଂଶକୁ ନିର୍ମୂଳ ।
ଏମନ୍ତ ପ୍ରତିଜ୍ଞା କରି ନର୍ମଦା ତଟରେ
ରହିଛନ୍ତି ମୋର ସଙ୍ଗେ ଯୁଝିବା ଇଚ୍ଛାରେ ।
ପଠାଇଥିଲେ ମୋଠାକୁ ଆଜ ଏକ ଦୂତ
ସେତେବେଳୁ ଆନ୍ଦୋଳିତ ହେଉଛି ମୋ ଚିତ୍ତ ।
ସ୍ଫୁରୁଅଛି ବାମବାହୁ ପୁଣି ବାମନେତ୍ର
ବରଡ଼ାପତ୍ର ପରାଏ କମ୍ପୁଅଛି ଗାତ୍ର ।
ଯାହା ଯାହା କାଲି ମୁହିଁ ଦେଖିଲି ସ୍ୱପ୍ନରେ
କହୁଛି ସେସବୁ ଏବେ ଶୁଣିଥାଅ ଥରେ ।
ତଇଳ ଅଙ୍ଗରେ ବୋଳି ଗଧପୃଷ୍ଠେ ବସି
ଓଡ଼ଫୁଲମାଳା କଣ୍ଠେ ବାନ୍ଧିଅଛି କସି ।
ପିନ୍ଧିଅଛି ରକ୍ତବର୍ଣ୍ଣ ବସନ ଗୋଟିଏ
ରକତ ଚନ୍ଦନ ବୋଳା ହୋଇଅଛି ଦେହେ ।
ଲୁହାର କଙ୍କଣ ଖଡ୍ଗ କୁଣ୍ଡଳ କପାଟ
ଦେଇଅଛି ମୁଣ୍ଡେ ରଙ୍ଗ ବରନ ମୁକୁଟ ।
ଅଙ୍ଗାର ଗଦା ଉପରେ ଡେଇଁ ପୁନଃପୁନଃ
ଆରମ୍ଭ କରିଛି ଖେଳ କଉତୁକମାନ ।
ଦେଖିଲି ସବୁଆଡ଼ରେ ଉଡ଼ୁଛି ପାଉଁଶ
ଜବାପୁଷ୍ପେ ପୂର୍ଣ୍ଣ ହୋଇଅଛି ଦଶଦିଶ ।
ନୀଳବର୍ଣ୍ଣ ଦିଶୁଛନ୍ତି ଚନ୍ଦ୍ର ସୂର୍ଯ୍ୟ ଦୁଇ
ରକତବର୍ଣ୍ଣ କିରଣ ଅଙ୍ଗଦେଶେ ବହି ।
ବିଧବା କାମିନୀଟିଏ ଫିଟାଇଣ ବାଳ
ନାଚୁଅଛି ମୋର ଆଗେ ମାରି କରତାଳ ।
ଶସ୍ତ୍ରରେ କଟା ହୋଇଛି ନାସିକା ତାହାର
ବହିଯାଉଅଛି ତହିଁ ରକ୍ତ ଧାରଧାର ।
ରକ୍ତବର୍ଣ୍ଣ ବସ୍ତ୍ରଖଣ୍ଡେ ପିନ୍ଧିଅଛି ସେହି
ହସୁଅଛି ପୁଣି ମୋର ମୁଖକୁ ଅନାଇଁ ।
ଚିତାପରେ ଶବଟିଏ ଲଦା ହୋଇଅଛି
ଅଗ୍ନିର ବ୍ୟବସ୍ଥା ତହିଁ ହୋଇନାହିଁ କିଛି ।
କେବଳ ତାହାଉପରେ ପାଉଁଶଗୁଡ଼ାଏ
କେତେବେଳେ ଆଣି ବାୟୁ ଦେଇଅଛି କଏ ।
ପାଣିଶ ଅଙ୍ଗାର ଭୁଲେ ରକତ ଅଜାଡ଼ି
ଦେଉଅଛନ୍ତି ମେଘମାଳ ମାରି ଘଡ଼ଘଡ଼ି ।
ପଡ଼ିଅଛି ସବୁସ୍ଥାନେ ପାଚିଥିବା ବାଳ
ଆବର ପଡ଼ିଛି ପୁଣି ଅସ୍ଥି ମାଳ ମାଳ ।
ନଖବାଳ ମିଶା ହୋଇ ଖପରା ବହୁତ ।
ପଡ଼ିଅଛି କେତେସ୍ଥାନେ ତୁଷାର ସହିତ ।
ପର୍ବତ ପରାଏ ଲୁଣ କପର୍ଦ୍ଦକମାନ
ପଡ଼ିବାରେ ଚାଲିବାକୁ ନ ଦିଶଇ ସ୍ଥାନ ।
ପର୍ବତ କନ୍ଦର ମଧ୍ୟେ ତୈଳ ଗେରୁ ଚୂର୍ଣ୍ଣ
ରହିଛି ନିଶ୍ଚଳଭାବେ ହୋଇକରି ପୂର୍ଣ୍ଣ ।
ହୋଇଛନ୍ତି କରବୀର ଅଶୋକ ପୁଷ୍ପିତ
ପଡ଼ୁଅଛି ତାଳବୃକ୍ଷୁଁ ତାଳ ଅବିରତ ।
ମୋ ହସ୍ତରୁ ପୂର୍ଣ୍ଣକୁମ୍ଭ ଖସି ମହୀ ପରେ
ପଡ଼ି ଚୂର୍ଣ୍ଣ ହୋଇ ମିଶି ଯାଉଛି ଧୂଳିରେ ।
ଚନ୍ଦ୍ର ସୂର୍ଯ୍ୟ ବିମ୍ବ ଛାଡ଼ି ଆକାଶ ମଧ୍ୟରୁ
ପଡ଼ୁଅଛି ମୋର ଆଗେ ଆଗେ ଚୁରୁଭୁରୁ ।
ଅକସ୍ମାତେ ଉଦେ ହୋଇ ଧୂମକେତୁ ଗ୍ରହ
ଦେଖିବା ମାତ୍ରକେ ଜାତ କରାଉଛି ଭୟ ।
ଚାରିଦିଗେ ଉଲ୍କାଚୟ ପଡ଼ୁଛନ୍ତି ଛେଁଟି
ଖାଉଛନ୍ତି ଶିବା ଶବ ମାଉଁସ ଚେକଟି ।
ବିକଟ ପୁରୁଷଟିଏ ଦିଗମ୍ବର ହୋଇ
ଧାଇଁ ଆସୁଅଛି ତୀକ୍ଷ୍ଣ ଦନ୍ତକୁ ଦେଖାଇ ।
ଦ୍ୱାଦଶବର୍ଷ ବୟସ୍କା ବାଳିକା ଗୋଟିଏ
ବସ୍ତ୍ର ଅଳଙ୍କାର ମଣ୍ଡି ଆପଣାର କାୟେ ।
ମୋତେ ରୁହିଁ ବୋଲୁଅଛି ଆହେ ନରପତି
ବନକୁ ଯାଉଛି ଏବେ ଦିଅ ଅନୁମତି ।
ଗୁରୁଙ୍କ ସହିତେ ଦ୍ୱିଜ ସନ୍ନ୍ୟାସୀଏ ଆସି
ଶାପ ଦେଉଛନ୍ତି ମୋତେ ହୋଇ ମହାରୋଷୀ ।
କାନ୍ଥରେ ଚିତ୍ରିତ ହେବା ପ୍ରତିମା ସକଳ
ନୃତ୍ୟ କରୁଛନ୍ତି ସଦା ହୋଇ ଏକମେଳ ।
ମହିଷ ଗର୍ଦ୍ଦଭ ଗୃଧ୍ର କାକ ପକ୍ଷୀଗଣ
ପୀଡ଼ା ଦେଉଛନ୍ତି ମୋତେ ମାରି ପୁନଃପୁନଃ ।
ତଇଳ ପେଡ଼ିବା ଯନ୍ତ୍ର ଘେନି ତୈଳକାର
ବୁଲୁଅଛି ମୋହର ଆଗେ ବାରମ୍ବାର ।

ଦିଗମ୍ବର ପାଶ ଅସ୍ତ୍ର ପୁରୁଷେକ ଆସି
ନୃତ୍ୟ କରୁଅଛି ଆମ୍ଭ ପୁର ମଧ୍ୟେ ପଶି ।
ରାଜମାର୍ଗ ରେ ପୁରୁଷ ସ୍ତ୍ରୀ ଯୋଡ଼ ଯୋଡ଼
କାମକ୍ରୀଡ଼ା କରୁଛନ୍ତି ଲଜ୍ଜା ଭୟ ଛାଡ଼ି ।
କେଉଁଠାରେ ମିଶାମିଶି ହୋଇ ଦୁଇଜଣ
କରୁଛନ୍ତି ପରସ୍ପର କେଶ ଆକର୍ଷଣ ।
ନିଶାକାଳେ ଶଙ୍ଖଚିଲ କୁକୁର ବାୟସ
ମରାମରି ହେଉଛନ୍ତି ଜନମାନଙ୍କ ତ୍ରାସ ।
ଶ୍ମଶାନ ଭୂମିରେ ଶବ ପଡ଼ିଛି ବହୁତ
ତା ପାଶରେ ତିଳ କୁଶ ପିଣ୍ଡର ସହିତ ।
ପ୍ରତ୍ୟେକ ଗୃହ ଆଗରେ ରଙ୍ଗ ବସ୍ତ୍ର ଯେତେ
ଲମ୍ବିଥିଲା ତାହା କେହି ନ ପାରିଲେ ଦେଖି ।
ବିଧବା ସ୍ତ୍ରୀଟିଏ ପିନ୍ଧି କୃଷ୍ଣବର୍ଣ୍ଣ ଶାଢ଼ୀ
ମୁକୁଳା କରିଣ କେଶ ଓଷ୍ଠେ ଦନ୍ତ ଭିଡ଼ି ।
ଜଣ ପରେ ଜଣେ ଆସି ମୋତେ ଆଲିଙ୍ଗନ
କରିଦେଉଛନ୍ତି ମୋର ମୁଖରେ ଚୁମ୍ବନ ।
ସ୍ୱଇଚ୍ଛାରେ କ୍ଷୁର ଧରି ଆସିଣ ଭଣ୍ଡାରି
କାଟୁଛି ମୋହର କେଶ ନଖ ଆଦି କରି ।
ଚର୍ମର ପାଦୁକା ରଜ୍ଜୁ ଗଦା ଗଦା ହୋଇ
ପଡ଼ିଅଛି ସ୍ଥାନେ ସ୍ଥାନେ ଆଗୋ ଚନ୍ଦ୍ରମୁହିଁ ।
କୁମ୍ଭାର ଚକ ଗୋଟିଏ ବୁଲୁଅଛି ଦ୍ୱାରେ
କାର୍ଯ୍ୟ କରିବାକୁ କେହି ନାହିଁ ତା ପାଶରେ ।
ବତାସରେ ଶୁଷ୍କ ବୃକ୍ଷ ଭଙ୍ଗି କୋଟି କୋଟି
ହୋଇଛନ୍ତି ଆମ୍ଭପୁର ରାଜଦାଣ୍ଡେ ଗୋଟି ।
ଆଉରି ଛିନ୍ନ ମସ୍ତକ ମାଳା ଗୁନ୍ଥାହୋଇ
ଘୂରୁଅଛି ଆକାଶରେ ବାତାଘାତ ପାଇ ।
ଭୂତ ପ୍ରେତମାନେ କେଶ କରିଣ ମୁକୁଳା
ବାହାର କରନ୍ତି ମୁଖୁ ଅନଳର ଜ୍ୱଳା ।
ତାହାଙ୍କୁ ଦେଖିଣ ଭୟେ ମୋ ଅନ୍ତଃକରଣ
କମ୍ପି ଯାଉଥାଏ ଆଗୋ ମନୋରମ ଜାଣ ।
ଦଗ୍ଧଜୀବ ଦଗ୍ଧବୃକ୍ଷ ବ୍ୟାଧିଗ୍ରସ୍ତ ନର
ଦେଖିଲି ମୁଁ ଅଙ୍ଗହୀନ ବୃଷଭ ଆଉରି ।
ପୁଣି ଦେଖିଲି ପବନ ନ ଥାଇ କମ୍ପିତେ
ଉପୁଡ଼ି ପଡ଼ୁଅଛନ୍ତି ବୃକ୍ଷଲତା କେତେ ।
ମେଘଶୂନ୍ୟ ଆକାଶରୁ ମହାଶବ୍ଦ କରି
ରକ୍ତ ଝରୁଅଛି କୁଳଟେ ପୃଥିବୀ ବିଦାରି ।
ଦିବସରେ ଘରେ ଘରେ ପଶିଣ ବିଲୁଆ
ରଡ଼ି କରୁଛନ୍ତି ଆନନ୍ଦେ ବୋଲି ହୁଆ ହୁଆ ।
କାକଆ ମନୁଷ୍ୟଟିଏ ଅଧୋମୁଖ ହୋଇ
ଉପରକୁ ଟେକି ରଖିଅଛି ପାଦ ଦୁଇ ।
ଉଲଗ୍ନ ମୁକୁଳ କେଶ ହୋଇଅଛି ପୁଣି
ଭ୍ରମଣ କରୁଛି ମୋର ଯିବା ମାର୍ଗ ଜାଣି ।
ଗ୍ରାମଦେବତାଏ କରୁଅଛନ୍ତି ରୋଦନ
ଶୁଣିବାମାତ୍ରେ ବଧିର ହୋଇଯାଏ କର୍ଣ୍ଣ ।
ଏହିରୂପେ ନିଶି ଶେଷେ ବହୁତ ସ୍ୱପନ
ଦେଖିକରି ଆଗୋ ସଖି ବିକଳ ମୋ ମନ ।
କହିବାରୁ ସଭା ମଧ୍ୟରେ ଦୁଃଖେ ଥିଲି ବସି ।
ଏ ସମୟେ ରାମ ଦୂତ ପ୍ରବେଶିଲା ଆସି ।
ଯୁଦ୍ଧକୁ ଆହ୍ୱାନ କରି ଗଲା ସେ ପଳାଇ
ସେ ସକାଶୁ ଯାଉଅଛି ଏବେ ସଜ ହୋଇ ।
ଏଥିକୁ ଉପାୟ ଆଉ ଅଛି ଅବା କିସ
ଜାଣିଥିଲେ କହ ଆଗୋ ନାରୀଗଣ ଈଶ ।
ପତି ମୁଖ ମନୋରମା ଏ ବଚନ ଶୁଣି
ହୃଦୟ ଫିଟାଇ ଶୋକ କରେ ସେ ତରୁଣୀ ।
ବୋଇଲା ମୋଠାରୁ ଶୁଣ ଆହେ ପ୍ରାଣନାଥ
ଆଜଠାରୁ ନିଶ୍ଚେ ମୁହିଁ ହୋଇଲି ଅନାଥ ।
ନାରାୟଣଙ୍କ ଅଂଶରେ ଯମଦଗ୍ନି ସୁତ
ଜାତହୋଇ ବହିଛନ୍ତି ବଳ ଅପ୍ରମିତ ।
ଆଉରି ସଂହାର କର୍ତ୍ତା ସଦାଶିବଙ୍କର
ଶିଷ୍ୟଅଟନ୍ତି ସେ ପୁଣି ଦ୍ୱିଜବରଙ୍କର ।
ପ୍ରତିଜ୍ଞା କରିଅଛନ୍ତି ବୁଲି ବସୁମତୀ
ବିନାଶ କରିବେ ସର୍ବ କ୍ଷତ୍ରିୟ ସନ୍ତତି ।
ଏମନ୍ତ ଯେ ରାମ ତାଙ୍କ ସଙ୍ଗରେ ତୁମ୍ଭର
ଉଚିତ ନୁହଇ କେବେ ଯୁଦ୍ଧ କରିବାର ।
ପାପିଷ୍ଠ ଦ୍ୱାକ୍ଷସପତି ରାବଣକୁ ରଣେ
ଜିଣିଅଛ ବୋଲି କେବେ ନ ବିଚାର ମନେ ।
ତୁମ୍ଭ ବଳେ ପରାଜିତ ନ ହୋଇଛି ସେହି
ଆପଣାର ପାପ ତାକୁ ଦେଲାଟି ହରାଇ ।
ଧର୍ମ ରକ୍ଷା ନ କରଇ ଯେଉଁ ମୂଢ଼ଜନ
ରଖି ନ ପାରଇ ତାକୁ କାଳେ ତ୍ରିଭୁବନ ।
ଜୀଇଥିଲେ ହେଲେ ମଲାପରି ଅଟେ ସେହି
ଅନ୍ତଃକାଳେ କୁମ୍ଭୀପାକ ନରକେ ପଡ଼ଇ ।

ଶୁଭାଶୁଭ ଆଦିକରି ସକଳ କର୍ମର
ସାକ୍ଷୀ ଅଟଇ ପରମ ଆହେ ନୃପବର ।
ସମସ୍ତ ଆତ୍ମାରେ ବ୍ରହ୍ମ ଭାବରେ ସେ ଅଛି
ବିଷୟରେ ପଡ଼ି ମୂଢ଼ ଚିହ୍ନି ନ ପାରୁଛି ।
ପୁତ୍ରଦାରା ଆଦି ଯେତେ ସମ୍ପଦ ଜଗତେ
ଅନିତ୍ୟ ଅଟଇ ତାହା ଜାଣ ମହାମତେ ।
ସ୍ୱପନ ସଦୃଶ ଏହି ସଂସାରକୁ ଜାଣି
ଧର୍ମ କରନ୍ତି ସାଧୁଏ ଭବ୍ୟଭାବ ଘେନି ।
ଧରମକୁ ମୂଳକରି ଆଚରନ୍ତି ଜପ
ନ ପାଇବେ ବୋଲି କାଳେ ପାମର ସନ୍ତାପ ।
ଦତ୍ତ ଯେଉଁ ଦିବ୍ୟଜ୍ଞାନ ଦେଇ ଯାଇଥିଲେ
ପାସୋରି ଦେଲେଣି ତାହା ଜାଣୁଛି ମୁଁ ଭଲେ
ନୋହିଲେ ବ୍ରାହ୍ମଣ ବଧ କରିବାକୁ କପାଁ
ବଳୁଛି ତୁମ୍ଭର ମନ ଗୁରୁ ଅନୁକମ୍ପା ।
ମୃଗୟା କରିବା ପାଇଁ ବନେ ଯାଇଥିଲ
ଉପବାସେ ବୁଲି ବୁଲି ବାଳିଆ ହୋଇଲ ।
ଦୟାବନ୍ତ ମୁନିବର ବନେ ଡାକିନେଇ
ତୃପ୍ତ କରାଇଲେ ନାନା ଦ୍ରବ୍ୟମାନ ଦେଇ ।
ସୁରଗାଭି ସକାଶରେ ସୁଶାନ୍ତ ନରାହ
ଦ୍ୱିଜଙ୍କ ଜୀବନ କପାଁ ନେଲ ତା କହ ।
ଯେଉଁ ଲୋକ ଗୁରୁ ବିପ୍ର ଦେବତାଙ୍କ ବନେ
ପରାଭବ ପାଏ ଦୋଷ ନ ଥିଲେହେଁ ତିଳେ ।
ତାହାଠାରେ ଇଷ୍ଟଦେବ ଅସନ୍ତୁଷ୍ଟ ହୋଇ
ଯତନେ ପୂଜିଲେ ମଧ ଯାଆନ୍ତି ନ ରହି ।
ଆହେ ମହାରାଜ ତୁମ୍ଭେ ସ୍ଥିରମତି ହୋଇ
ଚିନ୍ତା କର ଦତ୍ତାତ୍ରେୟ ପାଦପଦ୍ମ ଦୁଇ ।
ଗୁରୁଙ୍କଠାରେ ଭକତି କରିବଟି ଯେବେ
ସର୍ବବିଘ୍ନ ବିନାଶନ ହେବ ଜାଣ ତେବେ ।
ଗୁରୁଙ୍କ ଅନୁଜ୍ଞା ମାଗି ବେଗ ହୋଇ ଯାଅ
ରାମଙ୍କ ଚରଣ ଧରି ବିନୟରେ କହ ।
ଦେବତା ବ୍ରାହ୍ମଣେ ଯେବେ ପ୍ରସନ୍ନ ହୁଅନ୍ତି
କ୍ଷତ୍ରିୟଙ୍କର ନୁହଇ ଜାଣ କିଛି କ୍ଷତି ।
ବ୍ରାହ୍ମଣଙ୍କୁ ସେବାକରି ପାରନ୍ତି କ୍ଷତ୍ରିୟେ
କ୍ଷତ୍ରିୟ ସେବିଲେ ବୈଶ୍ୟ ଅପଣ ନ ପାଏ ।
ସବୁର ସେବକ ଶୂଦ୍ର ଅଟଇ ଅବଶ୍ୟ
ଏରୂପେ ହୋଇଛି ବେଦଶାସ୍ତ୍ରରେ ପ୍ରକାଶ ।

କ୍ଷତ୍ରିୟଠାରେ କ୍ଷତ୍ରିୟ ଶରଣ ପଶିଲେ
ଅକୀର୍ତ୍ତି ତହିଁରୁ ଜାତ ହୁଅଇଟି ବଳେ ।
ଗୁରୁଦେବ ଦ୍ୱିଜଠାରେ ହୁଅନ୍ତେ ଶରଣ
ଉତ୍ତମ ଯଶ ତହିଁରୁ ଜାତ ହୁଏ ଜାଣ ।
ଦେବତାଙ୍କ ସମରୂପ ବ୍ରାହ୍ମଣ ଅଟନ୍ତି
ତାହାଙ୍କୁ ସନ୍ତୁଷ୍ଟ କର ଆହେ ନରପତି ।
ବ୍ରାହ୍ମଣ ସନ୍ତୁଷ୍ଟ ହେଲେ ସକଳ ଦେବତା
ସନ୍ତୁଷ୍ଟ ହୁଅନ୍ତି ଏଥି ନାହିଁ କିଛି ଚିନ୍ତା ।
ଏମନ୍ତ ବୋଲିଣ ସତୀ ପତି ପାଶେ ଯାଇ
ଆଲିଙ୍ଗନ କଲା ଅଙ୍ଗେ ଅଙ୍ଗକୁ ମିଶାଇ ।
ବିଳାପ ବହୁତ କରି ବୋଇଲାକ ପୁଣି
ମୁହୂର୍ତ୍ତେମାନ ବିଳମ୍ବ କର ନରମଣି ।
ସ୍ନାନସାରି ମୋ ପୁରକୁ ବିଜେକର ଥରେ
ଭୁଞ୍ଜାଇବି ନାନାରୂପ ଦ୍ରବ୍ୟ ଆନନ୍ଦରେ ।
ଚନ୍ଦନ କୁଙ୍କୁମ ଅଙ୍ଗେ ଲେପିବି ଯତନେ
ବସାଇବି କ୍ଷଣେ ରତ୍ନମୟ ସିଂହାସନେ ।
ସତୀ ସ୍ତ୍ରୀଙ୍କର ପତି ଶତ ପୁତ୍ରଠାରୁ
ଅଧିକ ଅଟଇ ଜାଣ ଆହେ ଜ୍ଞାନୀଗୁରୁ ।
ମନୋରମାଠାରୁ ଏହା ଶୁଣି ସହସ୍ରାର୍ଜ୍ଜୁନ
ବୋଧକଲେ କହି ତାଙ୍କୁ ମଧୁର ବଚନ ।
ବୋଇଲେ ଗୋ ପ୍ରାଣପ୍ରିୟେ କହୁଅଛ ଶୁଣ
କହିଲ ଯା ତାହା ଶୁଣି ଭାବୁଛି ମୋ ମନ ।
ଶୋକରେ ଆତୁର ହୋଇଥାନ୍ତି ଯେଉଁମାନେ
ତାହାଙ୍କ ବଚନ ଯୁକ୍ତ ନୁହେ ସର୍ବସ୍ଥାନେ ।
କର୍ମଭୋଗ ସମୟରେ ସୁଖ ଦୁଃଖ ଭୟ
ପ୍ରାପତ ହୁଅଇ ଜାଣିଥାଅ ଏ ନିଶ୍ଚୟ ।
କାଳ କଲୁ ସମୟରେ ରାଜତ୍ୱ ଦିଅଇ
ପୁଣି ସମୟରେ ମୃତ୍ୟୁ ଘଟାଏ ସେ ନେଇ ।
ସଂସାର ସର୍ଜ୍ଜନା କରେ କାଳ ମହାବଳୀ
ଆବର ସମସ୍ତ ଜାଣିବାଏ ସବୁ ଦଳି ।
ଜଗତ ପାଳନାକର୍ତ୍ତା କାଳ ଅଟେ ଜାଣ
କାଳସ୍ୱରୂପୀ ସାକ୍ଷାତେ ପ୍ରଭୁ ନାରାୟଣ ।
ଶ୍ରୀକୃଷ୍ଣ ସେହି କାଳର କାଳବୋଲି କରି
ତୋମାର କହିବାନ୍ତି ତୁମ୍ଭେ ଜାଣ ହେ ସୁନ୍ଦରୀ ।
ସଂହାରକର୍ତ୍ତାର ପୁଣି ସଂହାରକ ସେହି
ପାଳକର ପାଳକ ସେ ପ୍ରଭୁ ଭବସ୍ୱାମୀ ।

ତପସ୍ୟା ଫଳ ଯେ ଦେଇ ପାରନ୍ତି ସହଜେ
ତାହାଙ୍କଠାରେ ସକଳ ଗୁଣରାଶି ରାଜେ ।
ତାଙ୍କ ବିନା କାହାକୁ କେ ନ ପାରଇ ମାରି
ଆବର ପାଳନ ଅବା ସରଜନା କରି ।
ଯାହାକୁ ଯେଉଁ କର୍ମରେ ନିଯୁକ୍ତ କରାଇ
ଅଛନ୍ତି ସେ ଦୟାମୟ ନିଜ ହିତ ପାଇଁ ।
ସେହି କର୍ମରେ ସେହିଟି ହୋଇଣ ଆସକ୍ତ
ସର୍ବଦା ରହିଛି ଆନେ ନ ବଳାଇ ଚିତ୍ତ ।
କେବଳ ସୃଷ୍ଟି କରଣେ ରହିଛନ୍ତି ଧାତା
ପାଳନା କରୁଅଛନ୍ତି ଯେ ପାଳନକର୍ତ୍ତା ।
ସଂହାରକରତା ପୁଣି କରନ୍ତି ସଂହାର
ମାନି ରହିଥାନ୍ତି ସଦା ଆଜ୍ଞା ତାହାଙ୍କର ।
ତାହାଙ୍କ ଆଦେଶ ମାନି ବହଇ ପବନ
କିରଣ ପକାଇଛନ୍ତି ଦେବ ବିବସ୍ୱାନ ।
ଘରେ ଘରେ ବୁଲି ନିତି ଯେ ମୃତ୍ୟୁଦେବତା
ପ୍ରାଣୀଙ୍କ ଜୀବ ହରୁଛି ଛାଡ଼ିଦେଇ ଚିନ୍ତା ।
ବରଷା କରନ୍ତି ଇନ୍ଦ୍ର କାଳବେଳ ଜାଣି
ଅଗ୍ନିଦେବତା ଦହନ କରୁଛନ୍ତି ପୁଣି ।
ସ୍ଥିରହୋଇ ରହିଛନ୍ତି ସ୍ଥାବର ସକଳ
ଜଙ୍ଗମ ପ୍ରାଣୀଏ ହେଉଛନ୍ତି ଚଳାଚଳ ।
ଯଥାକାଳେ ବୃକ୍ଷଦେହେ ଫୁଟୁଅଛି ଫୁଲ
ଆବର ଜାତ ହେଉଛି ସ୍ୱାଦୁ ଫଳମୂଳ ।
ଶୁଷ୍କ ହେଉଅଛି ଜୀବ ତାହାଙ୍କ ଆଜ୍ଞାରେ
ପୁଷ୍ଟହୋଇ ବଢ଼ୁଅଛି ପୁଣି ସମୟରେ ।
ତାଙ୍କ ଅନୁଜ୍ଞାରେ ସୃଷ୍ଟି ଉତ୍ପତ୍ତି ବିନାଶ
ଘଟୁଛି ସମୟେ ଆଗୋ ନାରାୟଣ ଈଶ ।
ନିଜ ଇଚ୍ଛାରେ ଜଗତ ପ୍ରାଣୀଙ୍କ ମଧ୍ୟରେ
କେହିହେଲେ କେଉଁ କାର୍ଯ୍ୟ ସମ୍ପାଦି ନ ପାରେ
ନାରାୟଣ ଅଂଶେ ଜାତ ପର୍ଶୁରାମ ବୀର
ତାଙ୍କଠାରୁ କେହି ଆଉ ନାହିଁ ବଳଆର ।
ଏକବିଂଶ ଥର ବୁଲି ସମଗ୍ର ପୃଥିବୀ
ନିକ୍ଷତ୍ର କରିବା ପାଇଁ ମାନସରେ ଭାବି ।
ପ୍ରତିଜ୍ଞା କରିଅଛନ୍ତି ଯେ ବ୍ରାହ୍ମଣବର
ବିଫଳ କଦାପି ତାହା ନୋହିବ ତାଙ୍କର ।
ମରିବି ନିଶ୍ଚୟ ତାଙ୍କ ତୀକ୍ଷ୍ଣ ବାଣେ ମୁହିଁ
ଏ କଥା ଆଦ୍ୟରୁ ଜାଣିଅଛି ପ୍ରାଣସହି ।
ଜାଣୁ ଜାଣୁ କି ଭୂପରେ ଶରଣ ପଶିବି
ସକଳ ଲୋକ ମୁଖରେ ଅକୀର୍ତ୍ତି ପାଇବି ।
ଜନମ ଲଭିଲେ ନିଶ୍ଚେ ହୋଇବ ମରଣ
ତେବେ କିପାଁ ଶତ୍ରୁପଦେ ପଶିବି ଶରଣ ।
ଏମନ୍ତ କହିଣ ରାଜା ଯୁଦ୍ଧେ ଯିବାପାଇଁ
ସଜ ହୋଇ ବାହାରିଲେ କରରେ ଧନୁ ବହି ।
ନାନାବିଧ ରଣବାଦ୍ୟ ବାଜିଲା ଯେଷଣି
ମଙ୍ଗଳ ବିଧାନ ଆରମ୍ଭିଲେ ଦ୍ୱିଜଶ୍ରେଣୀ ।
ଶତେକୋଟି ନରପତି ଅସଂଖ୍ୟ ସଇନ
ଘେନି ବାହାରିଲେ ତାଙ୍କ ସଙ୍ଗତରେ ଜାଣ ।
ସେହିପରି ଗଜ ଅଶ୍ୱ ପଦାତି ଅପାର
ସେମାନଙ୍କ ସହିତରେ ହୋଇଲେ ବାହାର ।
ତାହା ଦେଖି ମନୋରମା ସ୍ତମ୍ଭୀଭୂତ ହୋଇ
କର୍ତ୍ତବ୍ୟକୁ ସ୍ଥିରକରି ନ ପାରିଲା ତହିଁ ।
ପତିଙ୍କୁ ଘେନିଣ କ୍ରୀଡ଼ା ଭବନରେ କ୍ଷଣେ
ବସିଲା ଦୁଃଖିତ ଭାବ ପୋଷି ନିଜ ମନେ ।
ସ୍ୱାମୀଙ୍କ ମୁଖକୁ ଅନାଇଲା ବାରମ୍ବାର
ବୁହାଇଣ ବେନି ନୟନରୁ ଅଶ୍ରୁଧାର ।
ଦୀନ କ୍ଷେତ୍ରଦାସ ବୋଲେ ବ୍ରହ୍ମବୈବର୍ତ୍ତ
ପୁରାଣକୁ ଶୁଣ ସାଧୁଜନେ ଦେଇ ଚିତ୍ତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ସହସ୍ରାର୍ଜୁନ ପ୍ରତି ପର୍ଶୁରାମଙ୍କର ଦୂତପ୍ରେରଣ ଓ ନିଜ ପ୍ରିୟା ସହିତ ସହସ୍ରାର୍ଜୁନର ବାକ୍ୟବିନିମୟେ ନାମ ସପ୍ତବିଂଶୋଽଧ୍ୟାୟଃ ।

# ଚତୁର୍ବିଂଶ ଅଧ୍ୟାୟ

## ମନୋରମାର ଦେହତ୍ୟାଗ ଓ ସହସ୍ରାର୍ଜୁନଙ୍କର ପରଶୁରାମ ସହିତ କଥୋପକଥନ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ଶୁଣ ମୁନିବର ଯାହା ହେଲା ସେ କାଳରେ ।
ପ୍ରାଣନାଥଙ୍କୁ ମୁହୂର୍ତ୍ତେ ଆଲିଙ୍ଗନ କରି
ସଂସାର ବାସନା ତେଜି ମନୋରମା ନାରୀ ।
ସ୍ୱାମୀଙ୍କ ମୁଖରୁ ଯାହା ଯାହା ଶୁଣିଥିଲା
ତାହାକୁ ଉତ୍ତମରୂପେ ଭାବନା ସେ କଲା ।
ପୁତ୍ର ବନ୍ଧୁ ବାନ୍ଧବଙ୍କୁ ଡକାଇ ପାଶକୁ
ସେମାନଙ୍କୁ ରଖିଁ କୋଳେ ଧରଣୀ ପତିଙ୍କୁ ।
ଶ୍ରୀହରିଙ୍କ ପାଦପଦ୍ମ ସ୍ମରଣ କରି
ସଂସାର ଅସତ୍ୟ ବୋଲି ଭାବି ସେ ସୁନ୍ଦରୀ ।
ଯୋଗବଳେ ଷଡ଼ଚକ୍ର ଭେଦକରି ନେଇ
ମସ୍ତକରେ ପ୍ରାଣରୂପ ବାୟୁକୁ ରଖାଇ ।
ସହସ୍ରଦଳ ବ୍ରହ୍ମରନ୍ଧ୍ର କମଳ ମଧ୍ୟରେ
ଆତ୍ମା ନିଯୋଜିତ ପୁଣି କରଣ ସହିତରେ ।
ବିଷୟରୁ ମାନସକୁ ନିବୃତ୍ତ ସେ କଲା
କର୍ମ ବନ୍ଧନରୁ ରକ୍ଷା ପାଇଲା ଅବଳା ।
ଶ୍ରୀକୃଷ୍ଣ ନାମ ଉଚ୍ଚାରି ବାରମ୍ବାର ମୁଖେ
ସେହିକ୍ଷଣି ପ୍ରାଣ ବିସର୍ଜନ କଲା ସୁଖେ ।
ପ୍ରାଣରୁ ଅଧିକ ତାର ଅଟନ୍ତି ତ ପତି
ନ ଛାଡ଼ିଲା ତାଙ୍କୁ ଜୀବ ଗଲେ ହେଲେ ସତୀ ।
ଏହିରୂପେ ଅବଳାର ରୀତିକି ଅନାଇଁ
ଯୁଦ୍ଧ ବେଶ ତେଜି କାର୍ତ୍ତବୀର୍ଯ୍ୟ ନରସାଇଁ ।
ପ୍ରିୟାର ଶବକୁ କୋଳେ ଘେନିଣ ସତ୍ୱର
ବାଳକ ପରାୟେ ଶୋକ କଲେ ବାରମ୍ବାର ।
ବୋଇଲେ ଗୋ ମନୋରମା ଯୁଦ୍ଧେ ଆଜ ମୁହିଁ
ଯାଉ ନାହିଁ ତୁମ୍ଭେ ଏବେ ଉଠ ଜୀବ ପାଇ ।
ଦେଖ ତୁମ୍ଭ ପାଖେ ବସି କରୁଛି ମୁଁ ଶୋକ
ଆସ ଗୃହେ ଯିବା ପ୍ରିୟେ ଛାଡ଼ିଦେଇ ଦକ ।
ପରଶୁରାମଙ୍କ ସଙ୍ଗେ ଯୁଦ୍ଧ ନ କରିବି
ନିଶ୍ଚୟ କହୁଛି ତୁମ୍ଭ ବଚନ ପାଳିବି ।
ଆସ ଆଗୋ ପ୍ରାଣ ପ୍ରିୟେ ଶ୍ରୀ ଶୈଳକୁ ଯିବା
ଇଚ୍ଛା ଅନୁସାରେ ତହିଁ ବିହାର କରିବା ।
ଆଗୋ ମନୋରମା ଗୋଦାବରୀ ନଦୀଜଳେ
ଜଳ ମୁଁ କ୍ରୀଡ଼ା କରିବି ତୁମ୍ଭ ସଙ୍ଗେ ଭଲେ ।
ଆଉର ଚନ୍ଦନ ବନେ ପୁଷ୍ପଭଦ୍ରା ତୀରେ
ବିହାର କରିବି ନିଶ୍ଚେ ତୁମ୍ଭସଙ୍ଗତରେ ।
ମଧୁର କୋକିଳ ରବ ଭ୍ରମର ଗୁଞ୍ଜନ
ଶୁଣି ଆନନ୍ଦିତ କରାଇବା କର୍ଣ୍ଣ ମନ ।
ମୋହର ବାମ ଅଙ୍ଗରେ ଚନ୍ଦନ କସ୍ତୁରୀ
ଲେପନ କରାଅ ଆନନ୍ଦରେ ପ୍ରାଣେଶ୍ୱରୀ ।
ସୁଧାମୟ ବଚନକୁ କହି ପଦେ ପଦେ
ଅପୂର୍ବ ପ୍ରେମ ବଢ଼ାଇ ଦିଅ ମୋର ହୃଦେ ।
କୁଟିଳ ଭ୍ରୂଲତା ଚାଳ କାହିଁପାଇଁ ମୋତେ
ଅନାଇଁ ନ ଦିଅ ଥରେ ଗଜରାଜ ଗତେ ।
ଏହିରୂପେ ବିକଳରେ ରାଜା କାର୍ତ୍ତବୀର୍ଯ୍ୟ
କାନ୍ଦୁଥିଲେ ବସି ତହିଁ ହରାଇଣ ଧୈର୍ଯ୍ୟ ।
ଶୁଭିଲା ଆକାଶ ବାଣୀ ଆହେ ମହାମନା
କାହିଁପାଇଁ ଅକାରଣେ କରୁଛ ଶୋଚନା ।
ଜ୍ଞାନୀଙ୍କ ମଧ୍ୟରେ ତୁମ୍ଭେ ଅଟ ତ ଗରିଷ୍ଠ
ଉଚିତ ନୁହଇ ଶୋକେ ପାଇବାର କଷ୍ଟ ।
ଗୁରୁ ଅଟନ୍ତି ତୁମ୍ଭର ଦତ୍ତାତ୍ରେୟ ମୁନି
ସମସ୍ତ ବିଷୟ ଜାଣିଅଛ ତାଙ୍କ ଘେନି ।
ଜଳବିନ୍ଦୁ ପ୍ରାୟେ ଅଟେ ଅନିତ୍ୟ ସଂସାର
ସ୍ଥିର ନୁହେ କେତେବେଳେ ଜୀବନ କାହାର ।
ତୁମ୍ଭର ଯେ ପ୍ରିୟତମା ମନୋରମା ସତୀ
କମଳା ଦେବୀଙ୍କ ଅଂଶେ ତାହାଙ୍କ ଉତ୍ପତ୍ତି ।
ଏବେ ସେ ଶରୀର ତେଜି ଗଲେ ଲକ୍ଷ୍ମୀପୁରେ
ନ ଭାବ କହୁଛିଁ ତୁମ୍ଭେ ତାଙ୍କ ବିଷୟରେ ।
ପରାକ୍ରମ ଆଶ୍ରେକରି ସଂଗ୍ରାମକୁ ଯାଅ
ଦେହ ତ୍ୟାଗ କରି ସୁଖେ ବଇକୁଣ୍ଠେ ରହ ।
ଏମନ୍ତ ଆକାଶ ବାଣୀ ଶୁଣନ୍ତେ ରାଜନ
ଶୋକ ଛାଡ଼ି ସେହିକ୍ଷଣି ହେଲେ ସୁସ୍ଥମନ ।
ଚନ୍ଦନ ତୁଳସୀ କାଷ୍ଠ ଅଣାଇ ସତ୍ୱରେ
ଚିତା ଗୋଟିଏ କରାଇ ଭୃତ୍ୟଙ୍କ ହାତରେ ।

ସଂସ୍କାର ଅନଳ ଭରି ଡକାଇ ପୁତ୍ରଙ୍କୁ
ଦାହ କରାଇଲେ ତାଙ୍କ ହସ୍ତେ ସେ ଶବକୁ ।
ବ୍ରାହ୍ମଣମାନଙ୍କୁ ନାନାବିଧ ଧନରତ୍ନ
ବସ୍ତ୍ର ଆଦି ଦେଲେ ସେ କାଳରେ କରି ଯତ୍ନ ।
ପୁରୋହିତଙ୍କ ସହିତେ ଶ୍ରାଦ୍ଧର ବିଧାନ
ଆରମ୍ଭ କଲେ ପୁତ୍ରଙ୍କୁ ବତାଇ ରାଜନ ।
ଦ୍ୱିଜଙ୍କୁ ନାନାପ୍ରକାର ମିଷ୍ଟଦ୍ରବ୍ୟ ଆଣି
ଭୋଜନ କରାଇ ତୋଷ କଲେ ତହିଁ ପୁଣି ।
ସବୁଆଡ଼େ ନିଅ ନିଅ ଖାଅ ଖାଅ ବୋଲି
ଶବଦ କରି ବ୍ରାହ୍ମଣେ ହେଲେ ପେଲପେଲି ।
ରାଜକୋଷରେ ସଞ୍ଚିତ ଧନ ଥିଲା ଯେତେ
ଦାନ କଲେ ନରପତି ମନୋରମା ଅର୍ଥେ ।
ସେ ଅନ୍ତେ ଦୁଃଖିତ ମନେ ଧନୁଶର ଧରି
ଯୁଦ୍ଧକୁ ବାହାର ହେଲେ ସୈନ୍ୟ ସଜକରି ।
ସମର ବାଦ୍ୟ ବହୁତ ବଜାଇଲେ ବେଗେ
କେ ଗଲେ ପଛେ କେହୁ ଗଲା ଆଗେ ଆଗେ ।
ସମୁଦ୍ର ମନ୍ଥିଲ ପରି ମୁଖ ଗୋଳ ଶବ୍ଦ
ଜାତ ହୋଇ କରାଇଲା ଶ୍ରବଣକୁ ସ୍ତବ୍ଧ ।
ଯିବାବେଳେ ଅମଙ୍ଗଳ ସୂଚକ ଦର୍ଶନ
କରିବାରୁ ନରପତି ଶୁଖାଇ ବଦନ ।
ସୈନ୍ୟଙ୍କୁ ଉତ୍ସାହ ଦେଇ ସଙ୍ଗେ ଘେନଗଲେ
ଘରକୁ ଫେରି ଆସିବା କଥା ଛାଡ଼ଦେଲେ ।
ବିଧବା କାମିନୀଟିଏ ଫିଟାଇଣ କେଶ
ନୃତ୍ୟ କରୁଅଛି ଆଗେ ହୋଇ ହସ ହସ ।
ସେହିପରି କୃଷ୍ଣବର୍ଣ୍ଣ ଶାଢ଼ୀ ଘେନି ଅଙ୍ଗେ
ଆଉ ଗୋଟିଏ ବିଧବା ଯାଉଅଛି ସଙ୍ଗେ ।
ମୁଖ ଦୁଷ୍ଟା ଯୋନି ଦୁଷ୍ଟା ବ୍ୟାଧି ପ୍ରପୀଡ଼ିତା
ଦେଖା ଯାଉଥିଲେ ତହିଁ ଅସଂଖ୍ୟ ବନିତା ।
ଅପୁତ୍ରିକା ପତିହୀନା ଡାକନୀ କୁଳଟା
ଏହିପରି ସ୍ତ୍ରୀ ଦେଖାଗଲେ କେତେଗୋଟା ।
କୁମ୍ଭକାର ତୈଳକାର ବ୍ୟାଧ ସର୍ପଗ୍ରାହୀ
କର୍କଶ ପୁରୁଷ ଅଙ୍ଗ ନଗ୍ନ ଖରଦେହୀ ।
ଏରୂପେ କେତେ ଲୋକଙ୍କୁ ଦେଖିଲେ ନୃପତି
ତଥାପି ମନରେ ଜାତ ନ ହୋଇଲା ଭୀତି ।
ଖଣ୍ଡେ ଦୂର ଯାଇ ପୁଣ ଦେଖିଲେ ସେଠାରେ
ଶବଟିଏ ଲଦା ହୋଇଅଛି ଶଡ଼ାପରେ ।

ଆବର ଭସ୍ମ ଅଙ୍ଗାର ସର୍ପଖିନ୍ନ ନର
ହେଲା ସେହିସ୍ଥାନେ ତାଙ୍କ ନୟନ ଗୋଚର ।
ବିଷବନ୍ତ ସର୍ପ ଗୋଧି ଶଶକ ଶୃଗାଳ
ଦେବଳ ବୃଷଭବାହ ଶୂଦ୍ରଯାଜୀ କୁଳ ।
ଶ୍ରାଦ୍ଧପାକ ପିଣ୍ଡ ତିଳ ମୋଟକ ଅକ୍ଷତ
କୁଶ ପୁଷ୍ପ ସହିତରେ ପଡ଼ିଅଛି ବହୁତ ।
କୃଶ ପୁତ୍ତଳିକା ଶବ ଦାହକାରୀ ଜନ
ଶୂନ୍ୟ କୁମ୍ଭ ଭଗ୍ନ କୁମ୍ଭ ତଇଳ ଲବଣ ।
କାର୍ପାସ କଚ୍ଛପ ଚୂର୍ଣ୍ଣ ଘଣ୍ଡ କୁକୁର
ଦେଖିଲେ ମାର୍ଗରେ କାର୍ତ୍ତିବୀର୍ଯ୍ୟ ନରବର ।
ଦକ୍ଷିଣ ପାର୍ଶ୍ୱରେ ରହି ଅସଂଖ୍ୟ ବିଲୁଆ
ରଡ଼ୁଥିଲେ ମୁଖ ଟେକି ବୋଲି ହୁଆ ହୁଆ ।
କପର୍ଦ୍ଦିକ କ୍ଷୌର ଛିନ୍ନ କେଶ ନଖ ମଳ
କଳହ ବିଳାପ ନାଦ ଜନ କୋଳାହଳ ।
ମିଥ୍ୟା ସାକ୍ଷୀ ଦ୍ରବ୍ୟଚୋର ନରହତ୍ୟାକାରୀ
ପତି ପୁତ୍ରଙ୍କ ସହିତ କୁଳଭ୍ରଷ୍ଟା ନାରୀ ।
ଦେବତା ଗୁରୁ ବ୍ରାହ୍ମଣ ଧନାପହାରକ
ଖଣ୍ଡ ନଷ୍ଟ ହିଂସା ପର ମିଥ୍ୟା ସୂଚକ ।
ବିଶ୍ୱାସ ଘାତକ ବିପ୍ର ଦେବ ଦ୍ରୋହୀ କ୍ରୂର
ଜୀବଘାତୀ ଅଙ୍ଗ ହୀନ ନିର୍ଦ୍ଦୟ ନିଷ୍ଠୁର ।
ବ୍ରତ ଉପବାସ ଦୀକ୍ଷା ତର୍ପଣ ରହିତ
କଣା କୁଜା ନପୁଂସକ ଜର ବ୍ୟାଧିଗ୍ରସ୍ତ ।
ପୁକ୍କସ ଛିନ୍ନମସ୍ତକ ସୁରା ମଦମତ୍ତ
ରୁଧିର ଭକ୍ଷକ କ୍ଷୀଣ ତେଜ ଶସ୍ତ୍ରାହତ ।
ଏମନ୍ତ ଲୋକଙ୍କୁ ତହିଁ ଦେଖିଲେ ନୃପତି
ଆବର ମହିଷ ଖର ଶସ୍ତ୍ରହୀନ ହାତୀ ।
ମନୁଷ୍ୟ କପାଳ ମଧ୍ୟେ ପୂରାଏ ରକତ
ଶ୍ଳେଷ୍ମ ସହିତରେ ପୂରି ରହିଅଛି ବହୁତ ।
ଆଗରୁ ପ୍ରଚଣ୍ଡବାତ ବହେ ଖରତର
ରକତ ବର୍ଷନ୍ତି ମେଘେ ଗରଜଣ ଘୋର ।
ଶୂକର ଭଲ୍ଲୁକ ଗୃଧ୍ର ଶୁକ କଙ୍କ ଶ୍ୟେନ
ବାୟସ ଆଦି ଜନ୍ତୁଏ କରନ୍ତି କ୍ରନ୍ଦନ ।
ଔଷଧ ରତନ ପୁଷ୍ପ ବୈଦ୍ୟ ତୁଳପାକ
କୁତ୍ସିତ ମରଣ ବାର୍ତ୍ତା ଦାରୁଣ-ଅମିକ ।
ଦୁଃଶବ୍ଦ ଦୁର୍ଗନ୍ଧ ବାତ ଆଦିକରି କେତେ
ଦେଖି ଶୁଣି ଗଲେ ରାଜା ଖେଦ ବହି ଚିତ୍ତେ ।

ସ୍ଫୁରିତ ହୋଇଲା ବାମ ଅଙ୍ଗ ଘନ ଘନ
ଜଳଭାବ ଆସି ଦେହେ କଲା ବେଗେ ସ୍ନାନ ।
ତଥାପି ରାଜାଙ୍କ ମନେ ନ ପଶିଲା ଶଙ୍କା
ବୀରଙ୍କ ମଧ୍ୟେ ଅଟନ୍ତି ଯେତ ରଣରଙ୍କା ।
ଚତୁରଙ୍ଗ ବଳ ଘେନି ରାମଙ୍କ ଆଗରେ
ପ୍ରବେଶ ହୋଇଲେ ସେହିକ୍ଷଣି ମଠାଗରେ ।
ମୁନିଙ୍କୁ ଦେଖିଣ ରଥୋପରୁ ଓହ୍ଲାଇଲେ
ରାଜନ୍ୟବର୍ଗ ଧାହ୍ନେ ପାଶକୁ ଆସିଲେ ।
ଦଣ୍ଡବତ ହୋଇ ପୁଣି କଲେ ନମସ୍କାର
ସ୍ୱର୍ଗକୁ ଯାଅ ବୋଇଲେ ପର୍ଶୁରାମ ବୀର ।
ତପସ୍ୱୀ ଗଣରେ ଯେ ନ ଉତ୍ତମ ଅଟନ୍ତି
ତାଙ୍କ ବାକ୍ୟେ ମେଲେ ଯୁଦ୍ଧେ ସକଳ ନୃପତି ।
ଏଥିଅନ୍ତେ କାର୍ତ୍ତବୀର୍ଯ୍ୟ ଧନ୍ୱୀ ଧନୁର୍ଦ୍ଧର
ସଜ ହୋଇ ରଥୋପରେ ବସିଲେ ସତ୍ୱର ।
ଦୁନ୍ଦୁଭି ପଣବ ଆଦି ନାନାବିଧ ବାଦ୍ୟ
ବାଜିଲା ବୀରଙ୍କ ମନେ ଜନମାଇ ମୋଦ ।
ଏହିକାଳେ ପର୍ଶୁରାମ ଅର୍ଜୁନଙ୍କୁ ଚାହିଁ
ବୋଇଲେ ମୋଠାରୁ ରାଜା ଶୁଣ ମନଦେଇ ।
ଚନ୍ଦ୍ରବଂଶେ ରାଜାହୋଇ ବୋଲାଅ ଧାର୍ମିକ
ତୁମ୍ଭ ଗୁରୁ ଦତ୍ତାତ୍ରେୟ ଋଷିଙ୍କ ନାୟକ ।
ତୁମ୍ଭଠାରୁ ବେଦଶିକ୍ଷା କରିଅଛ ଭଲେ
ଧର୍ମରେ ମାନସ ଦେଇଅଛ ସବୁବେଳେ ।
ତଥାପି ତୁମ୍ଭର ବୁଦ୍ଧି ଅଟେ କେଡ଼େ ହୀନ
ବିଷୟରେ ବାଳକଠାରୁ ଊଣା ତୁମ୍ଭେ ଜାଣ ।
ଗାଈଟିକୁ ଲୋଭକରି ନିରୀହ ବିପ୍ରର
ଜୀବନ ନେଇ ବସାଇ ଦେଲ ପ୍ରେତପୁର ।
ପତିହୀନ ହୋଇ ଘୋର ଶୋକରେ ବ୍ରାହ୍ମଣୀ
ଚିତାଅନଳରେ ଝାସଦେଲେ ସେହିକ୍ଷଣି ।
ଏ ଦୁହିଙ୍କୁ ମାରି କିବା ଅରଜିଲ ଯଶ
ପରଲୋକେ କେଉଁସ୍ଥାନେ ହେବ ତୁମ୍ଭ ବାସ ।
ଯେଉଁରୂପେ ପଦ୍ମପତ୍ରେ ଜଳବିନ୍ଦୁ ଥାଇ
ଟଳଟଳ ହେଉଥାଏ ସୁସ୍ଥିର ହୋଇ ନ ରହି ।
ତେମନ୍ତ ଅଟଇ ସିନା ସଂସାରର ସ୍ଥିତି
କ୍ଷଣକେ ହୁଅଇ ଲୀନ କ୍ଷଣକେ ଉତ୍ପତ୍ତି ।
କୀର୍ତ୍ତି ଅକୀର୍ତ୍ତି ଉଭୟ କଥା ମାନେ ରହି
ଦିଅନ୍ତି ଲୋକର ଗୁଣ ଦୁର୍ଗୁଣ ଚହଲାଇ ।

ସାଧୁଲୋକର ଅକୀର୍ତ୍ତିଠାରୁ ବଳି ଆଉ
ବିଡମ୍ବନା ଜଗତରେ ଥିବ ଅବା କାହୁଁ ।
କେଉଁଠାରେ ଅଛି ଅବା ସେ କପିଳା ଗାଈ
ମୁନିଙ୍କ ଜୀବନ ନାଶକଲ ଯାହାପାଇଁ ।
କାହିଁ ଗଲେ ମୁନି କାହିଁଗଲା ସେ ବିବାଦ
କେବଳ ରହିଲା ତୁମ୍ଭ ଅପକୀର୍ତ୍ତି ବାଦ ।
ଉପବାସେ ବୁଲୁଥିଲ ବନମଧ୍ୟେ ଯାଇଁ
ଦେଖି ମୋର ପିତା ହୃଦେ ଦୟାଭାବ ବହି ।
ଆଶ୍ରମକୁ ଡାକିନେଇ କଲେ ସତ୍କାର
ସେଥିପାଇଁ ଦେଲ ତୁମ୍ଭେ ଦକ୍ଷିଣା ତାହାର ।
ବ୍ରାହ୍ମଣଙ୍କଠାରୁ ବେଦ ପଢ଼ିଅଛ ତୁମ୍ଭେ
ଜ୍ଞାନୀ ବୋଲାଣ ତୁମ୍ଭଙ୍କୁ ଜାଣୁ ମଧ୍ୟ ଆମ୍ଭେ ।
ତୁମ୍ଭ ଯଶରେ ଜଗତ ହୋଇଛି ପୂରିତ
କାହିଁପାଇଁ ବୃଦ୍ଧକାଳେ କଲ ଏ ଅକୃତ୍ୟ !
ବନ୍ଦୀମାନେ ସବୁଆଡ଼େ କହୁଛନ୍ତି ବୁଲି
ଧାର୍ମିକ ଯଶସ୍ୱୀ କାର୍ତ୍ତବୀର୍ଯ୍ୟ ରାଜା ବୋଲି ।
ଯାହାଙ୍କର କଥା ଅଟେ ଜଗତ ବିଖ୍ୟାତ
ସେ ପୁଣି ହୋଇଲେ ବୃଦ୍ଧକାଳରେ ଲାଞ୍ଛିତ ।
ଆହେ ନୃପ ନିନ୍ଦାବାକ୍ୟ ଶସ୍ତ୍ରରୁ ଅଧିକ
ହୁଅଇ ସର୍ବଦା ହୃଦ ବାଧା ବିଧାୟକ ।
ଉତ୍ତମ ଲୋକଙ୍କ ମୃତ୍ୟୁ ବିପଦରେ ହେଲେ
ଅନ୍ୟାୟ କଥା ବାହାର ନୁହେ ଜାଣ ଭଲେ ।
ଦୁରୁକ୍ତି ତୁମ୍ଭଙ୍କୁ ମୁହିଁ କହୁନାହିଁ ଏବେ
ଯଥାର୍ଥ କହୁଛି ସାଧୁ ସହୃଦୟ ଭାବେ ।
ଆହେ ନରପତି ମୋର ବାକ୍ୟର ଉତ୍ତର
ଦିଅ ରାଜସଭା ମଧ୍ୟେ ନ ହୋଇ କାତର ।
ଚନ୍ଦ୍ର ସୂର୍ଯ୍ୟ ମନୁଙ୍କର ବଂଶେ ଉତ୍ପତ୍ତି
ଅଟନ୍ତି ଯେ ନୃପଗଣ ଏଠାରେ ଅଛନ୍ତି ।
ଯଥାର୍ଥ ରୂପ ସମସ୍ତ କଥା କହ ତୁମ୍ଭେ
ନ୍ୟାୟ ଧର୍ମରୁ ବାହାର ନୁହେ ବୋଲି ଆମ୍ଭେ ।
ଦେବ ପିତୃଗଣ ମଧ୍ୟ ଅଛନ୍ତି ଶୂନ୍ୟରେ
ଶୁଣନ୍ତୁ ତୁମ୍ଭ ଉତ୍ତର ଏ ସଭା ମଧ୍ୟରେ ।
ଏହିରୂପେ କହି ରାମ ହୁଅନ୍ତେ ବିରତ
କହି ଆରମ୍ଭିଲେ ଅରଜୁନ ନରନାଥ ।
ବୋଇଲେ ଆହେ ଭାର୍ଗବ ଶୁଣ ମନଦେଇ
ହରିଙ୍କ ବଂଶେ ଆପଣ ଅଛ ଜାତହୋଇ ।

ଜିତେନ୍ଦ୍ରିୟ ଲକ୍ଷଣରେ ଆପଣଙ୍କୁ ବଳି
ନ ଥିବ କେ ଜଗତରେ ନିଶ୍ଚୟ ଜାଣିଲି ।
ଧର୍ମକଥା ଶୁଣାଯାଏ ଯାହାଙ୍କ ମୁଖରୁ
ଆପଣ ଅଟନ୍ତି ତାଙ୍କ ଗୁରୁଙ୍କର ଗୁରୁ ।
କର୍ମଯୋଗେ ବ୍ରହ୍ମବଂଶେ ଜନ୍ମଲାଭ ହୁଏ
ବ୍ରାହ୍ମଣର କାଳ ବେଦ ପଠନରେ ଯାଏ ।
ସ୍ୱଧର୍ମରେ ରତହୋଇ ହୁଏ ଶୁଦ୍ଧଚିତ୍ତ
ତେଣୁ ବ୍ରାହ୍ମଣ ନାମରେ ଅଟେ ସେ ବିଦିତ ।
କାୟ ମନ ବଚନରେ କର୍ମ ଶେଷ କରି
ଜିତେନ୍ଦ୍ରିୟ ହୁଏ ଯେହୁ ମୌନଭାବ ଧରି ।
ମୁନି ବୋଲିଣ ତାହାକୁ ବୋଲନ୍ତି ସମସ୍ତେ
ରାଗ ହିଂସା ରହି ନ ପାରଇ ତାର ଚିତ୍ତେ ।
ସ୍ୱର୍ଣ୍ଣ ଲୋଷ୍ଟ୍ର ଗୃହ ବନ ତାଙ୍କ ସୁଚନ୍ଦନ
ଏମାନଙ୍କଠାରେ ବୁଦ୍ଧି ଯାହାର ସମାନ ।
ଯୋଗୀ ନାମେ ବିଖ୍ୟାତ ସେ ଜଗତ ମଧ୍ୟରେ
ଆହେ ମୁନିବର ଜାଣ ମୋର କହିବାରେ ।
ଯେଉଁ ଲୋକ ଜାଣିପାରେ ସକଳ ଜୀବରେ
ରହିଅଛନ୍ତି ଶ୍ରୀହରି ସମାନ ଭାବରେ ।
ଆବର ହରିଙ୍କଠାରେ ଭକ୍ତିକି ରଖଇ
ହରିଭକ୍ତ ବୋଲାଏଟି ଜଗତରେ ସେହି ।
ତପସ୍ୟା ଅଟଇ ଧନ ଦ୍ୱିଜମାନଙ୍କର
ତପରେ ବୋଲନ୍ତି ଦ୍ୱିଜେ ସର୍ବଜନ ବର ।
କଳପ ପାଦପ ତୁଲ୍ୟ ଅଟଇଟି ସେହି
କାମଧେନୁ ସମାନ ସେ ଜଗତେ ବୋଲାଇ ।
ଯେ ଯେତେ ବ୍ରାହ୍ମଣମାନେ ତପ କରିବାରେ
ଯତନ କରନ୍ତି-ସବୁବେଳେ ସବୁଠାରେ ।
ଐଶ୍ୱର୍ଯ୍ୟ ଇଚ୍ଛା କରନ୍ତି କ୍ଷତ୍ରିୟ ସନ୍ତାନେ
ବାଣିଜ୍ୟ ଦିଅନ୍ତି ମନ ବୈଶ୍ୟଜାତି ଜନେ ।
ଶୂଦ୍ରମାନେ ବ୍ରାହ୍ମଣଙ୍କୁ ସେବାକରି ନିତି
ଆପଣା କର୍ମରେ ଥାଇ ହରିକୁ ଭଜନ୍ତି ।
କ୍ଷତ୍ରିୟ ଯେବେ ତପସ୍ୟା ଅରଜି ପାରଇ
ଅତ୍ୟନ୍ତ ପ୍ରଶଂସା ତାକୁ ଜଗତେ ମିଳଇ ।
ଯୁଦ୍ଧରେ ଆସକ୍ତ ହେଲେ ବ୍ରାହ୍ମଣଙ୍କୁ ସର୍ବେ
ନିନ୍ଦା କରନ୍ତି ସକଳ ସ୍ଥାନେ ଦ୍ୱେଷଭାବେ ।
ରାଜସିକ ଗୁଣଯେବେ ରାଗୀ ହୋଇଥାଏ
ସେହିପରି ରାଗଯୁକ୍ତ କର୍ମେ ଯୋଗଦିଏ ।
ଆବର ରାଗରେ ଅନ୍ଧହୋଇ ରହିବାରୁ
ରାଜା ବୋଲାଏ ନୃପଶ୍ରେଷ୍ଠ ଆହେ ଜ୍ଞାନଗୁରୁ ।
ଯେହି ରାଗ ବଶ ହୋଇ ତୁମ୍ଭର ପିତାଙ୍କୁ
ମାଗିଲି ମୁଁ ସ୍ନେହକରି କପିଳା ଧେନୁକୁ ।
ତହିଁରେ କି ଅବା ଦୋଷ ହୋଇଲା ମୋହର
ଉଚିତ କାର୍ଯ୍ୟ ତ ଏହା କ୍ଷତ୍ରିୟ ଜାତିର ।
ତୁମ୍ଭବିନା କେଉଁଠାରେ କେବଣ ଦ୍ୱିଜର
କାମଧେନୁ ଅଛଇ କି କହ ମୋ ଆଗର ।
ଯୁଦ୍ଧରେ ଯୋଗରେ ଇଚ୍ଛା ତୁମ୍ଭ ବିନା କେହି
କେଉଁ ଦ୍ୱିଜ କରିବାର ଦେଖାଶୁଣା ନାହିଁ ।
ତିନିଶ ଅକ୍ଷଉଣୀ ସେନା ଆବର ନିଃକୋଟି
ନୃପଙ୍କର ପ୍ରାଣ ତୁମ୍ଭ ପିତା କଲେ ଲୁଟି ।
ଶେଷରେ ମୋତେ ମାରିବାପାଇଁ ଆସିଥିଲେ
ମୋ ସେନା ତାହାଙ୍କ ଜୀବ ନେଲା ମୁହିଁ ଭଲେ
ନିଜକୁ ମାରିବାପାଇଁ ଧାଇଁ ଯେ ଆସିବ
ଜଗିବା ଲୋକ ତାହାକୁ ଅବଶ୍ୟ ମାରିବ ।
ତପସ୍ୱୀ ହେଉ ବା ସେହି ହେଉ ଦ୍ୱିଜଶ୍ରେଷ୍ଠ
ବ୍ରହ୍ମହତ୍ୟା ନ ଲାଗିବ କଲେ ତାକୁ ନଷ୍ଟ ।
ହିଂସ୍ରକ ଲୋକକୁ ହିଂସା କଲେ ସେଥିପାଇଁ
ପ୍ରାୟଶ୍ଚିତ୍ତ କରିବାର ବେଦଶାସ୍ତ୍ରେ ନାହିଁ ।
ଉଚିତ ଅଟଇ ସ୍ୱାଙ୍କୁ ବଧ କରିବାର
ଏମନ୍ତ କହିଅଛନ୍ତି ସାବର୍ଣ୍ଣୀଙ୍କ ବର ।
ମହାବଳ ପରାକ୍ରମ ବହୁତ କ୍ଷତ୍ରିୟ
ଯୁଦ୍ଧରେ ତୁମ୍ଭର ପିତା କରିଛନ୍ତି କ୍ଷୟ ।
ଏବେ ତୁମ୍ଭେ ପୃଥ୍ୱୀ ବୁଲି ଏକବିଂଶ ବାର
ନିକ୍ଷତ୍ର କରିବା ପାଇଁ ହୋଇଛ ତତ୍ପର ।
ରକ୍ଷାକର ଏବେ ନିଜ ପ୍ରତିଜ୍ଞା ବଚନ
ଶୂରଙ୍କ କର୍ତ୍ତବ୍ୟ ଅଟେ ପ୍ରତିଜ୍ଞା ପାଳନ ।
କ୍ଷତ୍ରିୟର ଯୁଦ୍ଧଦାଣ୍ଡେ ମରଣ ଗର୍ହିତ
ନୁହଇ କଦାପି ଆହେ ଯମଦଗ୍ନି ସୁତ ।
ବ୍ରାହ୍ମଣ ଯେ କାର୍ଯ୍ୟକଲେ ନିନ୍ଦା ଯୋଗ୍ୟହୁଏ
ପ୍ରଶଂସା ତାହାକୁ କାହିଁ ନ କରନ୍ତି କିଏ ।
ଶାନ୍ତ ସ୍ୱସ୍ତ୍ୟୟନ ଆଦି ବେଦଉକ୍ତ କର୍ମ
ବ୍ରାହ୍ମଣ ପକ୍ଷରେ ଅଟେ ସ୍ୱାଭାବିକ ଧର୍ମ ।
କ୍ଷତ୍ରିୟର ବଳ ଯୁଦ୍ଧ ବୈଶ୍ୟର ବ୍ୟାପାର
ଭିକ୍ଷୁକର ଭିକ୍ଷା ବିପ୍ର ଶୁଶ୍ରୂଷା ଶୂଦ୍ରର ।

ହରି ଭକତରେ ହରିଦାସ୍ୟ ଅଟେ ବଳ
ବୈଷ୍ଣବର ବଳ ଶ୍ରୀହରିଙ୍କ ପାଦତଳ ।
ହିଂସାବଳ ଅଟେ ଖଳ ଲୋକରଟି ଜାଣ
ତପସ୍ୟାବଳ ଅଟନ୍ତି ସର୍ବ ତପୋଧନ ।
ବେଶ୍ୟାମାନଙ୍କର ବେଶ ରଚନା ଅଧିକ
ବଳବୋଲି ଜାଣ ମୁନି ଗଣର ନାୟକ ।
କାମିନୀର ବଳ ଅଟେ ଯୌବନ ବୟସ
ପ୍ରତାପ ବଳ ଅଟଇ ରାଜାର ଅବଶ୍ୟ ।
ଶିଶୁଙ୍କର ବଳ ଅଟଇ ରୋଦନ କରିବା
ସାଧୁଙ୍କର ବଳ ସତ୍ୟକଥା କହୁଥିବା ।
ଅସାଧୁ ହିଂସ୍ରକ ଦୁଷ୍ଟ ଜନମାନଙ୍କର
ଅସତ୍ୟ ପ୍ରଧାନ ବଳ ବୋଲି ମନେକର ।
ଅନୁଚରଗଣଙ୍କର ସ୍ୱାମୀ ସଙ୍ଗ ସେବା
ଅଳ୍ପସ୍ୱ ଲୋକର ନିତ୍ୟ ସଞ୍ଚୟ କରିବା ।
ପଣ୍ଡିତର ବିଦ୍ୟା ପଣ୍ୟଜୀବୀର ବଣିଜ
କର୍ମଠ ଲୋକର ମୁଖ୍ୟ ବଳ ଅଟେ ଧୈର୍ଯ୍ୟ ।
ଧନିକ ଲୋକର ଧନ ସାଧୁର ଚରିତ
ବିବେକ ଶାନ୍ତର ବଳ ଅଟେ ଏକମାତ୍ର ।
ଗୁଣୀ ଲୋକଙ୍କର ଗୁଣ ଶୂରର ଚାତୁର୍ଯ୍ୟ
ଅଧର୍ମ ବେଶ୍ୟା ନାରୀର ବଳ ବୋଲି ହେଜ ।
ହିଂସ୍ର ଜନ୍ତୁଙ୍କର ହିଂସା ସଞ୍ଚାର ସତ୍ତ୍ୱ
ଶିଷ୍ୟର ଗୁରୁସେବନ ଅଟଇ ମହତ୍ତ୍ୱ ।
ଧାର୍ମିକ ଗୃହସ୍ଥଙ୍କର ନିତ୍ୟକର୍ମ ବଳ
ଭୃତ୍ୟଙ୍କର ରାଜସେବା ପ୍ରଧାନ ସମ୍ବଳ ।
ବ୍ରହ୍ମଜ୍ଞଙ୍କର ପରଂବ୍ରହ୍ମ ସାକ୍ଷାତ୍କାର
ସନ୍ତଙ୍କର ସଦାଚାର ବଳ ମନେକର ।
ପାତକୀ ଲୋକର ପାପ ଅଶକ୍ତର ହରି
ଧାର୍ମିକର ପୁଣ୍ୟବଳ ଆହେ ତପସ୍ୱୀ ।
ରାଜାମାନଙ୍କର ରାଜା ବୃକ୍ଷଙ୍କର ଫଳ
ସମୁଦ୍ରର ଜଳରାଶି ଅଟଇଟି ବଳ ।
ମତ୍ସ୍ୟମାନଙ୍କର ବଳ ସମୁଦ୍ର ଅଟଇ
ବ୍ରାହ୍ମଣ କ୍ଷତ୍ରିୟଙ୍କର ଶାନ୍ତ ଶ୍ରେଷ୍ଠବୋଲାଇ ।
ଅଶାନ୍ତ ଭାବରେ ବିପ୍ର ଯୁଦ୍ଧ କରିବାର
ଦେଖା ଥାଉ ଶୁଣା ହୋଇ ନାହିଁ କେଉଁଠାର
ଥିବାଠାରେ ନାରାୟଣ ଦେବଗଣ ଈଶ
ଏହିରୂପେ ବିପରୀତ କଥା ହେଲା ଦୃଶ୍ୟ ।

ଏମନ୍ତ କହିଣ ରାଜା ସେ ସଭା ମଧ୍ୟରେ
ନୀରବ ହୋଇ ରହିଲେ ସବୁର ଆଗରେ ।
ତାହା ଶୁଣି ସଭାମଧ୍ୟେ ବସିଥିଲେ ଯେତେ
ନ କହିଣ କିଛି ତୁନି ହୋଇଲେ ସମସ୍ତେ ।
ଏ ସମୟେ ପରଶୁରାମ ଭାଇଙ୍କୁ ଅନାଇଁ
ଯୁଦ୍ଧକର ବୋଲି ଆଜ୍ଞା ଦେଲେ କ୍ରୋଧବନ୍ତ ।
ଶୁଣି ସେମାନେ ନାନା ଶସ୍ତ୍ର ଅସ୍ତ୍ର ଘେନି
ଆରମ୍ଭିଲେ ଯୁଦ୍ଧ ନ ରହିଣ ହୋଇ ତୁନି ।
ଆଗରେ ତାହାଙ୍କୁ ଦେଖି ମତ୍ସ୍ୟ ଅଧିପତି
ରଣକଲେ ଶରକାଟି ଆପଣା ଶକତି ।
ମଙ୍ଗଳ ତାହାଙ୍କ ନାମ ଅଟଇଟି ଜାଣ
ବିନ୍ଧିଲେ ଧନୁଟଙ୍କାରି ଲକ୍ଷ ଲକ୍ଷ ବାଣ ।
ତାଙ୍କ ଶରଘାତ ପାଇ ଯମଦଗ୍ନି ସୁତେ
ରହି ନ ପାରିଲେ କେହି ତାହାଙ୍କ ଅଗ୍ରତେ
ସେ ଅନ୍ତରେ ବୀରପଣ ଦେଖାଇ ସେ ପୁଣି
କାଟିଲେ ସମସ୍ତେ ଶିର ଧନୁର୍ଗୁଣ ଟାଣି ।
ତାହା ଦେଖି ନୃପତି ଦିବ୍ୟଅସ୍ତ୍ର ଧରି
ବିନ୍ଧିଲେ ମନେ ଶିବଙ୍କୁ ସୁମରଣା କରି ।
ମାହେଶ୍ୱର ଶର ପେଷି ମୁନିମାନେ ତାଙ୍କୁ
କାଟିଲେ ସେ ନ ଆସୁଣୁ ଆପଣା ପାଖକୁ ।
ଆଉର ଦିବ୍ୟ ସାୟକ ଶର ସହିତରେ
ଧନୁ ଛେଦି ପକାଇଣ ଦେଲେ ଭୂମିପରେ ।
ପୁଣି କ୍ଷୁର ଶର ବିନ୍ଧି ସାରଥିର ପ୍ରାଣ
ନେଲେ ପୁଣି ତାଙ୍କ ଦେହ କବଚ କାଟିଣ ।
ହତଶସ୍ତ୍ର ହେବା ଦେଖି ତାଙ୍କୁ ଦ୍ୱିଜସୁତେ
ଆନନ୍ଦରେ ସିଂହନାଦ କଲେକ ସମସ୍ତେ ।
ପୁଣି ଅମୋଘ ଅଟଇ ଯେଉଁ ମହାଶୂଳ
ଧରିଲେ ତାହାକୁ କରେ ହୋଇ କୋପାନଳ
ପୂର୍ବକାଳେ ମହାଦେବ ସନ୍ତୋଷ ମନରେ
ଦେଇଥିଲେ ସେ ଶୂଳକୁ ସେମାନଙ୍କ କରେ
ତାହାଙ୍କୁ ଫିଙ୍ଗିବାପାଇଁ ଯତ୍ନ କଲାବେଳେ
ଶୁଭିଲା ଆକାଶ ବାଣୀ ସମସ୍ତେ ଶୁଣିଲେ ।
ଆହେ ବିପ୍ରଗଣ ତୁମ୍ଭେ ଏ ମହାଶୂଳକୁ
ନ ମାର ତୁମ୍ଭେ ବଚନେ ରାଜାଙ୍କ ଦେହକୁ ।
ବ୍ୟର୍ଥ ନ ହୋଇବ କେବେ ଏହି ଶସ୍ତ୍ରବର
ଯେରୂପେ ହୋଇଛି ଆଜ୍ଞା ସଦାଶିବଙ୍କର ।

ଏ ନୃପଙ୍କୁ ପୂର୍ବକାଳେ ଦୁର୍ବାସା ମହର୍ଷି
ଶିବଙ୍କ କବଚ ଦେଇଛନ୍ତି ହୋଇ ତୋଷି ।
ସେ କବଚ ଗଳେ ଅଛି ମତ୍ସ୍ୟରାଜାଙ୍କର
ସେ ସକାଶୁ ତାଙ୍କ ଜୀବ ନୋହିବ ସଂହାର ।
ତୁମ୍ଭେମାନେ ଏବେ ଆଗ କପଟରେ ଯାଇ
କବଚ ଗୋଟି ଗ୍ରହଣ କର ମାଗିନେଇ ।
ସେ ଅନ୍ତରେ ଯୁଦ୍ଧକରି ମାରିବ ତାହାଙ୍କୁ
ନୋହିଲେ ସମର୍ଥ କେବେ ନୁହଁ ଜିଣିବାକୁ ।
ଏହା ଶୁଣି ଶୃଙ୍ଗୀନାମେ ଏକ ଦ୍ୱିଜବର
ସନ୍ନ୍ୟାସୀ ବେଶରେ ଯାଇ ରାଜାଙ୍କ ପାଶର ।
ସତ୍ୟ କରାଇ କବଚ ମାଗି ଘେନିଗଲେ
ସେ ଅନ୍ତରେ ଶୂଳ ଫିଙ୍ଗି ତାହାଙ୍କୁ ମାଇଲେ
ମଧ୍ୟ ଆକାଶରୁ ପୂର୍ଣ୍ଣଚନ୍ଦ୍ରବିମ୍ବପରି
ପଡ଼ିଲେ ରଥରୁ ଖସି ମତ୍ସ୍ୟ ଦଣ୍ଡଧାରୀ ।
ନାରଦ ବୋଇଲେ ନାରାୟଣ ମୁନିବର
ଶିବଙ୍କ କବଚ ଏବେ କହ ମୋ ଆଗର ।
ତାହା ଶୁଣି ନାରାୟଣ ସନ୍ତୁଷ୍ଟ ହୋଇଲେ
ଶୁଣ ମନଦେଇ କହୁଅଛି ମୁଁ ବୋଇଲେ ।
ବ୍ରହ୍ମାଣ୍ଡ ବିଜୟ ନାମ ଅଟଇ ତାହାର
ରକ୍ଷା କରଇ ଯେ ହେଲେ ସମସ୍ତ ଶରୀର ।
ଦୁର୍ବାସା ମହର୍ଷି ପୂର୍ବେ ମତ୍ସ୍ୟ ନୃପତିଙ୍କୁ
ଦେଇଥିଲେ ଆନନ୍ଦରେ ପ୍ରକାଶି ସ୍ନେହକୁ ।
ଏ କବଚ ଥିଲେ ଦେହେ ମୃତ୍ୟୁ ନ ଆସଇ
ଶସ୍ତ୍ର ଅସ୍ତ୍ରଆଦି କିଛି ବାଧା ନ ଦିଅଇ ।
ଯାହାକୁ ଧାରଣ କରି ଦୈତ୍ୟରାଜ ବାଣ
ଶିବଙ୍କ ପ୍ରାପତ ହୋଇଥିଲେ ପୂର୍ବେ ଜାଣ ।
ନନ୍ଦିକେଶ ଯାହା ଯୋଗେ ଶିଶୁତ୍ୱ ପାଇଲେ
ବୀରଭଦ୍ର ବୀରଗଣେ ଶ୍ରେଷ୍ଠ ବୋଲାଇଲେ ।
ହିରଣ୍ୟକଶିପୁ ରାଜା ତିନି ଲୋକଙ୍କରେ
ବିଜୟୀ ହୋଇଲେ ଯେଉଁ କବଚ ଯୋଗରେ ।
ଯାହାକୁ ଧାରଣ କରି ଦୁର୍ବାସା ମହର୍ଷି
ପାଉଛନ୍ତି ତ୍ରିଭୁବନେ ପୂଜା ଅହର୍ନିଶି ।
ବାମଦେବ ଦେବଳ ଯେ ଚ୍ୟବନ ଅଗସ୍ତି
ଯାହାକୁ ଘେନି ଲୋକରେ ପାଇଲେ ପ୍ରଶସ୍ତି ।
ସେ କବଚର ସ୍ୱରୂପ ଶୁଣ ମନଦେଇ
ଯେମନ୍ତେ ପୂଜିବ ତାହା କହିବା ବତାଇ ।

ପ୍ରଥମେ ବୋଲିବ ଶିବ ରଖନ୍ତୁ ମସ୍ତକ
ରକ୍ଷା କରନ୍ତୁ ଭାଲକୁ ତ୍ରିପୁର ଅନ୍ତକ ।
ନେତ୍ରକୁ ରଖନ୍ତୁ ସ୍ୱାହା ଅନ୍ତ ସଦାଶିବ
ନାସିକା ରକ୍ଷା କରନ୍ତୁ ଦେବ ମହାଦେବ ।
ପ୍ରଶାନ୍ତ ମୂରତି ଶିବ କଣ୍ଠକୁ ରକ୍ଷଣ
କରନ୍ତୁ ଶ୍ରୋତ୍ରକୁ ଲୋକ ସଂହାର କାରଣ ।
ପଞ୍ଚବକ୍ତ୍ର ସଦାଶିବ ମୋର ଦନ୍ତପନ୍ତି
ରଖନ୍ତୁ ଅଧର ଦେଶ ଶ୍ରୀଗିରିଜାପତି ।
ରକ୍ଷାକରନ୍ତୁ ତ୍ରିନେତ୍ର କେଶପାଶ ମୋର
ବକ୍ଷସ୍ଥଳକୁ ପାଳନ୍ତୁ ଶ୍ରୀଚନ୍ଦ୍ରଶେଖର ।
ରୁଦ୍ର ରକ୍ଷା କରନ୍ତୁ ମୋ ନାଭି ପ୍ରଦେଶକୁ
ଈଶ୍ୱର ରଖନ୍ତୁ ସଦା ମୋହର ପୃଷ୍ଠକୁ ।
ମୃତ୍ୟୁଞ୍ଜୟ ବେନି ଚକ୍ଷୁ ଭ୍ରୂଲତା ରକ୍ଷଣ
କରନ୍ତୁ ପାର୍ଶ୍ୱକୁ ଦେବ ସଂସାର କାରଣ ।
ଉଦରକୁ ମହେଶ୍ୱର ପାଳନ କରନ୍ତୁ
ମହାମୃତ୍ୟୁଞ୍ଜୟ ବେନି ବାହୁକୁ ରଖନ୍ତୁ ।
ଦୁଇହସ୍ତକୁ ରଖନ୍ତୁ ପରମ ଈଶ୍ୱର
ନିତମ୍ବବିମ୍ବକୁ ଦେବ ଦେବ ଶୂଳଧର ।
ଭୂତ ଅଧିପତି ପାଦ ରକ୍ଷଣ କରନ୍ତୁ
ସକଳ ଅଙ୍ଗକୁ ତ୍ରିଭୁବନ ଦେବ ହେନ୍ତୁ ।
ପୂର୍ବଦିଗେ ଭୂତନାଥ ଆଗ୍ନେୟେ ଶଙ୍କର
ଦକ୍ଷିଣେ ରୁଦ୍ର ମୂରତି ନୈଋତେ ଈଶ୍ୱର ।
ପଶ୍ଚିମ ଦିଗରେ ଖଣ୍ଡ ପରଶୁଧାରଣ
ବାୟବ୍ୟେ ଚନ୍ଦ୍ରଶେଖରେ କରନ୍ତୁ ରକ୍ଷଣ ।
ଉତ୍ତର ଦିଗେ ଗିରିଶ ଐଶାନ୍ୟେ ଈଶ୍ୱର
ଊର୍ଦ୍ଧ୍ୱ ମୃଡ଼ ଅଧୋଭାଗେ ମୃତ୍ୟୁଞ୍ଜୟେଶ୍ୱର ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ସ୍ୱପ୍ନେ ଜାଗରଣେ
ପିନାକୀ କରନ୍ତୁ ରକ୍ଷା ଦୟାଳୁତା ଗୁଣେ ।
ଗଗନେ ପବନେ ପୁଣି ପାତାଳ ପୁରରେ
ପାଦପଣି ପତି ରଖନ୍ତୁ ମୋତେ ଅବହେଳେ ।
ଏରୂପେ ଶିବ କବଚ ସ୍ୱରୂପ ଅଟଇ
ଦଶଲକ୍ଷ ଜପନ୍ତିଲେ ସିଦ୍ଧ ସେ ହୁଅଇ ।
ଯେଉଁଲୋକ ସିଦ୍ଧକରି ପାରିବ ଏହାକୁ
ଶଙ୍କର ସମାନ ବୋଲି ଜାଣିବ ତାହାକୁ ।
ତୁମ୍ଭଠାରେ ସ୍ନେହଭାବ ଥିବାରୁଟି ମୁହିଁ
କହିଲି ଅନ୍ୟକୁ ଏହା କହିବ ନ ଯୋଗାଇ ।

କାଣ୍ୱ ଶାଖାରେ କଥିତ ହୋଇଅଛି ଜାଣ
ଅତ୍ୟନ୍ତ ଗୁପ୍ତ ଅଟଇ ଆହେ ଋଷିଗଣ ।
ସହସ୍ରେକ ଅଶ୍ୱମେଧ ରାଜସୂୟ ଶତ
ବୃହନ୍ତ ଏହାର ତୁଲ୍ୟ କହୁଅଛି ସତ୍ୟ ।
ଏ କବଚ ନ ଜାଣି ଯେ ଶିବଙ୍କୁ ପୂଜଇ
ସମସ୍ତ କର୍ମ ତାହାର ନିଷ୍ଫଳ ହୁଅଇ ।
ଶତଲକ୍ଷ ଜପକଲେ ହେଲେ ମନ୍ତ୍ର ତାର
ସିଦ୍ଧ ନ ହୁଅଇ ଗୀତେ ଭଣେ କ୍ଷେତ୍ର ସ୍ଥିର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ମନୋରମାର ଦେହତ୍ୟାଗ ଓ ସହସ୍ରାର୍ଜ୍ଜୁନଙ୍କର ପର୍ଶୁରାମ ସହିତ କଥୋପକଥନେ ନାମ ଚତୁସ୍ତ୍ରିଂଶୋଽଧ୍ୟାୟଃ ।**

---

# ପଞ୍ଚତ୍ରିଂଶ ଅଧ୍ୟାୟ

## ପର୍ଶୁରାମଙ୍କ ଦ୍ୱାରା ଯୁଦ୍ଧ ନୃପମୃତ୍ୟୁ ବର୍ଣ୍ଣନା

ଏଥୁଅନ୍ତେ ଶୁଣ ଆହେ ନାରଦ ମହର୍ଷି
କହୁଅଛି ଯୁଦ୍ଧକଥା ସମସ୍ତ ବିଶେଷି ।
ଯୁଦ୍ଧ ବିଶାରଦ ମତ୍ସ୍ୟ ରାଜାଙ୍କ ପତନ
ଶୁଣିବାରୁ ସେହିକ୍ଷଣି ରାଜା ସହସ୍ରାର୍ଜ୍ଜୁନ ।
ଅନ୍ୟ ନୃପତିଙ୍କୁ ରଣଦାଣ୍ଡେ ପଠାଇଲେ
ସୈନ୍ୟଙ୍କୁ ସଜ କରାଇ ତାଙ୍କ ସଙ୍ଗେ ଦେଲେ ।
ବୃହଦ୍ବଳ ସୋମଦତ୍ତ ବିଦର୍ଭ ମୈଥିଳ
ନିଷଧ ନୃପତି ମଗଧେଶ ନରପାଳ ।
ଏମାନେ ସମସ୍ତେ ଆସି ଏକତ୍ରିତ ହେଲେ
ଯୁଦ୍ଧରେ ପରଶୁରାମ ଆଗରେ ମିଳିଲେ ।
ତିନ ଅକ୍ଷୌହିଣୀ ସେନା ତାହାଙ୍କର ପଛେ
ନାନା ଶସ୍ତ୍ର ଅସ୍ତ୍ର ଘେନି ପ୍ରବେଶିଲେ ସ୍ୱଚ୍ଛେ ।
ରାମଙ୍କର ଭାଇମାନେ ସେ ସ୍ଥାନରେ ଥିଲେ
ସୈନ୍ୟ ତୁଲେ ନୃପତିଙ୍କୁ ନିବାରଣ କଲେ ।
ତାହା ଦେଖି ମହାବୀର କ୍ଷତ୍ରିୟ ମଣ୍ଡଳ ।
ବିନ୍ଧିଲେ ଦ୍ୱିଜଙ୍କ ପରେ ତୀକ୍ଷ୍ଣ ଶରଜାଳ ।
ଜଣକୁ ଜଣେ ଆକୁଳ ମହାଯୁଦ୍ଧ କଲେ
ନାନାଶସ୍ତ୍ର ଅସ୍ତ୍ର ମାରି ପଥ ନିରୋଧିଲେ ।
ଭାଇଙ୍କ ଅବସ୍ଥା ଦେଖି ପର୍ଶୁରାମ ବୀର
ଆସିଲେ ପିନାକ ଧନୁ ଧରି ନିଜକର ।
ନାଗପାଶ ଅସ୍ତ୍ର ଯୋଗି ପ୍ରହାରନ୍ତେ ବୃନ୍ଦେ
କାଟିଲେ ତା ସୋମଦତ୍ତ ଗରୁଡ଼ାସ୍ତ୍ର କାଣ୍ଡେ ।
ଶଙ୍କର ଶୂଳ ପ୍ରହାରି ଯମଦଗ୍ନି ସୁତ
ଯୁଦ୍ଧରେ ଘେନିଲେ ସୋମଦତ୍ତଙ୍କ ଜୀବିତ ।
ଗଦାରେ ବୃହଦ୍ବଳଙ୍କୁ ପକାଇଲେ ମାରି
ବୈଦର୍ଭ ପ୍ରାଣ ନାଶିଲେ ମୁଷ୍ଟିକୁ ପ୍ରହାରି ।
ମୁଦ୍ଗର ଘାତେ ମୈଥିଳ ରାଜାଙ୍କୁ ସେକ୍ଷଣି
ଯମପୁରେ ବସାଇଲେ ହୋଇ ଟାଣିକୁଣି ।
ନୈଷଧ ରାଜାଙ୍କର ହୃଦୟ ଦେଶକୁ
ମାରନ୍ତେ ଶକ୍ତି ଗଲେ ସେ ଯମ ପାଶକୁ ।
ଗୋଇଠା ପ୍ରହାରି ନେଲେ ମାଗଧାଙ୍କ ପ୍ରାଣ
ସୈନ୍ୟଙ୍କୁ ନାଶିଲେ ବିନ୍ଧି ମୁନସିଆ ବାଣ ।
ଏହିରୂପେ ଚତୁରଙ୍ଗ ବଳ ସହିତରେ
ନୃପତିଙ୍କୁ ବିନାଶିଲେ କ୍ଷଣେକ ଭିତରେ ।
ସେ ଅନ୍ତେ ସହସ୍ରାର୍ଜ୍ଜୁନ ପାଶେ ଧାଇଁ ଯାଇଁ
ପ୍ରହାରିଲେ ନାନାବିଧ ଶସ୍ତ୍ରକୁ ନିଠାଇ ।
ତାହାଙ୍କୁ ଦେଖି ଅନେକ ନରପତି ଆସି
ଉଭା ହେଲେ ଆଗେ ବେନିହାତେ ନିଶଘସି ।
କାର୍ତ୍ତବୀର୍ଯ୍ୟ ନୃପତିଙ୍କୁ ନିବାରଣ କଲେ
ନିଜେ ଶସ୍ତ୍ର ଅସ୍ତ୍ର ଘେନି ଯୁଦ୍ଧ ଆରମ୍ଭିଲେ ।
କାନ୍ୟକୁବ୍ଜ ସଉରାଷ୍ଟ୍ର ଶତ ଶତ ବୀର
ରାଢ଼ୀୟ ମଧ୍ୟରୁ ଶତେ ଯୋଦ୍ଧା ସେ ପ୍ରକାର ।
ସୌହ୍ମବଙ୍ଗ ମହାରାଷ୍ଟ୍ର ସହସ୍ର ପ୍ରମାଣ
କଳିଙ୍ଗ ସେ ଗୁଜରାଟୀୟ ଦଶଶତ ଜାଣ ।
ସମସ୍ତେ ଆପଣା କରି ଶରାସନ ଟାଣି
ବିନ୍ଧିଲେ ସର୍ପ ସଦୃଶ ତୀକ୍ଷ୍ଣବାଣ ଶ୍ରେଣୀ ।
ତିନଦିନ ତିନିରାତ୍ରି ତାଙ୍କ ସଙ୍ଗତରେ
ଯୁଝିଲେ ପରଶୁରାମ ମହାକ୍ରୋଧଭରେ ।

ସେ ଅସ୍ତ୍ରରେ ଦିବ୍ୟଶର କରିଣ ପ୍ରହାର
ଛେଦିଲେ ତାହାଙ୍କୁ ଯେହ୍ନେ ତମକୁ ଭାସ୍କର ।
ଦ୍ୱାଦଶ କ୍ଷଉଣୀ ସୈନ୍ୟ ପରଶୁ ପ୍ରହାରେ
ଦେଖାଇଲେ କ୍ଷଣକରେ ଯମରାଜ ପୁରୀ
ଆବର ଯେତେ ସାମାନ୍ୟ ବୀର ତହିଁ ଥିଲେ
ଖଡ଼ଗରେ ସମସ୍ତଙ୍କୁ ହାଣି ପକାଇଲେ ।
ଏରୂପେ କ୍ଷତ୍ରିୟଗଣ କ୍ଷୟ ହେବା ଦେଖି
ସୁଚନ୍ଦ୍ର ନାମେ ନୃପତି ହୋଇ ମହା ଦୁଃଖୀ ।
ଲକ୍ଷେ ରାଜାଙ୍କୁ ସଙ୍ଗତେ ଘେନିଣ ଆସିଲେ
ସିଂହପରି ରାମଙ୍କର ଆଗେ ପ୍ରବେଶିଲେ ।
ପରସ୍ପରେ ଦିବ୍ୟଶର ବନ୍ଧ ବେନିବୀରେ
ଯୁଝିଲେ ହୁଙ୍କାର ନାଦ କରି ପରସ୍ପରେ ।
ଶଙ୍କର ଶୂଳରେ ରାମ ରାଜାଙ୍କର ମୁଣ୍ଡ
କାଟି କରି ଗଡ଼ାଇଣ ଦେଲେ ରଣଦାଣ୍ଡ ।
ସୈନ୍ୟଙ୍କୁ ପରଶୁଘାତେ କଲେ ଟିକ ଟିକ
ଧାଇଁଲେ ଓଟାରି ନିଜ ଧନୁ ଗୁଣଟିକ ।
ଏରୂପେ ରାଜନ୍ୟବର୍ଗ ନାଶକରି ବଳୀ
ସୁଚନ୍ଦ୍ର ରାଜା ପାଶକୁ ଗଲେ ବେଗେ ଚଳି ।
ନାଗ ଅସ୍ତ୍ର ବସାଇଣ ବିନ୍ଧିଲେ ବେଗରେ.
ନୃପତି ଗରୁଡ଼ ଅସ୍ତ୍ରେ କାଟିଲେ ରାଗରେ ।
ରାମଙ୍କୁ ଅନାଇ କେତେ ଉପହାସ କଲେ
ବ୍ରାହ୍ମଣ ହୋଇ କି ଯୁଦ୍ଧ କରିବ· ବୋଇଲେ ।
ତାହା ଶୁଣି ପର୍ଶୁରାମ ସହି ନ ପାରିଲେ
ନାରାୟଣ ଅସ୍ତ୍ର ଧରି ସେକ୍ଷଣି ବିନ୍ଧିଲେ ।
ତାହା ଜାଣି ନରପତି ରଥରୁ ଓହ୍ଲାଇ
ପ୍ରଣାମ କଲେ ଅସ୍ତ୍ରକୁ ଧନୁ ତଳେ ଥୋଇ ।
ସେ ଅସ୍ତ୍ର ତା ଜାଣିପାରି ଛାଡ଼ିଣ ରାଜାଙ୍କୁ
ଗଲା ନାରାୟଣଙ୍କର ପାଶେ ରହିବାକୁ ।
ତା ଦେଖି ପରଶୁରାମ ବିସ୍ମିତ ହୋଇଲେ
ଶକ୍ତିଶୂଳ ପରଶ୍ୱଧ ପଟ୍ଟିଶ ମାଇଲେ ।
ଆବରି ଗଦା ମୁଦ୍‌ଗର ଆଦି ଶସ୍ତ୍ରଗଣ
ଫିଙ୍ଗିଲେ ନେବାକୁ ନରପତିଙ୍କର ପ୍ରାଣ ।
ରାଜା ତ ଅଟନ୍ତି କାଳୀଭକ୍ତ ମହାମତି
ତେଣୁ ତାଙ୍କ ପ୍ରତି ଦେବୀ ଦୟାକରି ଅତି ।
ରଥ ଆଗେ ଉଭା ହୋଇ ସବୁ ଶସ୍ତ୍ର ଧରି
ନେବାରୁ ରାଜାଙ୍କ ଦେହ ଦେଲେ ସେ ନିବାରି ।

ପୁଣି ପର୍ଶୁରାମ ଧରି ଶିବଦତ୍ତ ଶୂଳ
ଫିଙ୍ଗିଲେ ସମର ଦାଣ୍ଡେ ହୋଇ କୋପାନଳ ।
ତାହାଙ୍କୁ ମଧ୍ୟ ସମ୍ମୁଖରେ ଧରି ମହାମାୟା
ରଥ ଆଗେ ଦେଖାଇଲେ ଆପଣାର କାୟା ।
ପରଶୁରାମ ତାହାଙ୍କୁ ନିରୀକ୍ଷଣ କଲେ
ବିସ୍ମିତ ହୋଇଣ ଧନୁଶର ଥୋଇଦେଲେ ।
ଭକ୍ତିଭରେ ମସ୍ତକରେ ଯୋଡ଼ି ବେନିକର
ସ୍ତୁତିକଲେ ନୁଆଇଣ ଆପଣାର ଶିର ।
ବୋଇଲେ ନମସ୍ତେ ଦେବୀ ଦୁର୍ଗତିନାଶିନୀ
ଭକତବତ୍ସଳା ଦେବୀ ପାପ ବିଧ୍ୱଂସିନୀ ।
ମାୟାରୂପେ ଜଗଦ୍ଧାତ୍ରୀ ଜଗତ କାରଣୀ
ନମସ୍ତେ ଜଗତମାତା ତ୍ରିପୁର ମୋହିନୀ ।
ସୃଷ୍ଟି ସଂହାର କାରଣେ ସମରଥ ତୁମ୍ଭେ
ତୁମ୍ଭ ଏ ମହିମା ଅବା କି ଜାଣିବୁ ଆମ୍ଭେ ।
ତୁମ୍ଭ ପାଦରେ ଶରଣ ପଶୁଅଛି ମୁହିଁ
ପ୍ରତିଜ୍ଞା ପୂରଣ ମୋର କର ମହାମାୟୀ ।
ବିମୁଖ ହୋଇଲେ ତୁମ୍ଭେ ଏ ତିନି ଲୋକରେ
ସ୍ଥାନ ନ ମିଳିବ ମୋତେ ଆଉ କେଉଁଠାରେ ।
ପ୍ରସନ୍ନ ହୋଇଣ ଏବେ ଘେନ ମୋ ବିନତି .
ସୁଫଳକର ପ୍ରତିଜ୍ଞା ଦେବୀ ଜଗଦ୍ଧାତ୍ରୀ ।
ପୂର୍ବକାଳେ ଶିବଲୋକେ ତୁମ୍ଭେମାନେ ମୋତେ
ବର ଦେଇଅଛ ଦୟାବହି ନିଜଚିତ୍ତେ ।
ସେ ବର ଏବେ ସଫଳ ନ କରିବ ଯେବେ ।
ତୁମ୍ଭର ଅଯଶ ଖ୍ୟାତ ହୋଇବଟି ତେବେ ।
ଏରୂପେ ପରଶୁରାମ ସ୍ତବ ଶୁଣିକରି
ପ୍ରସନ୍ନ ହୋଇଲେ ଦେବୀ ଦୟାଭାବ ଧରି ।
ବୋଇଲେ ହେ ବତ୍ସମାନେ ନ କର ଆଶଙ୍କା
ଜିଣିବୁ ଯୁଦ୍ଧରେ ସବୁ କ୍ଷତ୍ରିୟଙ୍କୁ ଏକା ।
ଏମନ୍ତ ବୋଲିଣ ଦେବୀ ଅନ୍ତର୍ଦ୍ଧାନ ହେଲେ
ତା ଦେଖି ପରଶୁରାମ ହରଷ ହୋଇଲେ ।
ପରଶୁରାମଙ୍କ କୃତ ସ୍ତୋତ୍ରକୁ ଯେ ଜନ
ସର୍ବଦା ସଂଯତଭାବେ କରିବ ପଠନ
ତିନିଲୋକରେ ତାହାର ଯଶଖ୍ୟାତି ହେବ
ସବୁଠାରେ ଜୟଲକ୍ଷ୍ମୀ ପ୍ରାପତ ହୋଇବ ।
ଏଥୁଅନ୍ତେ ପ୍ରଜାପତି ପର୍ଶୁରାମ ପାଶେ
ପ୍ରବେଶ ହୋଇଲେ ଆସି ଅତ୍ୟନ୍ତ ହରଷେ ।

ତାହାଙ୍କୁ ଅନାଇ ପୁଣି କହିଲେ ବଚନ
ବୋଇଲେ ହେ ସମଦର୍ଶିନ୍ ମୁନିପୁତ୍ର ଶୁଣ ।
ରହସ୍ୟ ବିଷୟ ଯାହା ଅଟେ ହିତକର
ମନ ଦେଇକରି ଶୁଣ ମୁନିଗଣ ବର ।
ସୁଚନ୍ଦ୍ର ରାଜାକୁ ଜୟ କରିବା ସକାଶେ
ଯେ ଉପାୟ ଅଛି ତାହା କହୁଅଛି ତୋତେ ।
ପୂର୍ବକାଳେ ମୁନିବର ଦୁର୍ବାସାଙ୍କ ଠାରେ
ଭକ୍ତି କରିଣ ସୁଚନ୍ଦ୍ର ରାଜା ଧ୍ୟାନକରେ ।
ଦଶାକ୍ଷରୀ ମହାବିଦ୍ୟା ଭଦ୍ରକାଳୀଙ୍କର
ଗ୍ରହଣ କରିଅଛନ୍ତି କବଚ ଆବର ।
ତାହାଙ୍କ ଗଳାରେ ଅଛି ସେ କବଚଶ୍ରେଷ୍ଠ
ତେଣୁ କେ କରି ନ ପାରେ ତାଙ୍କର ଅନିଷ୍ଟ ।
ଏବେ ତୁମ୍ଭେ ମୋର ବୋଲେ ଭିକ୍ଷୁ ରୂପେଯାଅ
ରାଜାଙ୍କଠାରୁ କବଚ ମାଗି ଘେନି ନିଅ ।
ସୂର୍ଯ୍ୟବଂଶ ଜାତ ସେହୁ ଧାର୍ମିକ ପ୍ରବର
ମାଗିଲେ ସର୍ବସ୍ୱ ଦେବ ସନ୍ଦେହ ନ କର ।
ତାହା ଶୁଣି ପର୍ଶୁରାମ ସନ୍ନ୍ୟାସୀ ବେଶରେ
ମିଳିଲେ ସେକ୍ଷଣି ଯାଇ ରାଜାଙ୍କ ପାଶରେ ।
କବଚ ମନ୍ତ୍ର ସହିତ ଭିକ୍ଷା କରିବାରୁ
ସନ୍ତୋଷରେ ଦେଲେ ରାଜା ଧାର୍ମିକଙ୍କ ଗୁରୁ ।
ଘେନିଣ ପରଶୁରାମ ବାହୁଡ଼ି ଆସିଲେ
ପୁଣି ତାଙ୍କ ସଙ୍ଗେ ଯୁଦ୍ଧ-ଭୂମିରେ ମିଶିଲେ ।
ରାଜା ମୁନିଙ୍କର ହେଲା ଯୁଦ୍ଧ ଘୋରତର
ଉପୁରେ କମ୍ପିଲେ ରହି ଦେବେ ସ୍ୱର୍ଗପୁର ।
ଶଙ୍କର ଶୂଳ ପ୍ରହାରି ସେ ନୃପବରଙ୍କୁ
ପଠାଇଲେ କ୍ଷଣକରେ ଶମନପୁରକୁ ।
ବୋଲେ ଦୀନ କ୍ଷେତ୍ରବାସୀ ବ୍ରହ୍ମବୈବର୍ତ୍ତ
ପୁରାଣକୁ ଶୁଣି ଜନେ ତୋଷକର ଚିତ୍ତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପର୍ଶୁରାମଙ୍କ ଦ୍ୱାରା ଯୁଦ୍ଧ ବିଷୟ ବର୍ଣ୍ଣନା
କଥନେ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।

—*—

# ଷଟ୍‌ତ୍ରିଂଶ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା କାଳୀ ସ୍ତୋତ୍ର ବିବରଣ

ନାରଦ ବୋଇଲେ ନାରାୟଣ ମୁନିବର
କହ ଦଶାକ୍ଷରୀ ବିଦ୍ୟା ମହା କାଳୀଙ୍କର ।
ଆବର କବଚ ରୂପ ଜାଣିବାକୁ ମୋତେ
ଶ୍ରଦ୍ଧା ଲାଗୁଅଛି ତାହା କହ ମହାମତେ ।
ଏହିରୂପେ ନାରଦଙ୍କ ବଚନକୁ ଶୁଣି
କହି ଆରମ୍ଭିଲେ ନାରାୟଣ ଋଷିମଣି ।
ବୋଇଲେ ହେ ମହାଭାଗ ଶୁଣ ମନଦେଇ
ପୁଚ୍ଛିଲ ଯା କହୁଅଛି ସେ କଥା ବତାଇ ।
ପ୍ରଥମେ ଓଁକାର ପୁଣି ମହାଲକ୍ଷ୍ମୀ ବୀଜ
ତାହାପରେ ବସାଇବ କାମାକ୍ଷର ବୀଜ ।
ଚତୁର୍ଥୀ ବିଭକ୍ତି ଦେଇ କାଳିକା ଶବ୍ଦରେ
ସ୍ୱାହା ବେନି ଅକ୍ଷରକୁ ଦେବ ତାହା ପରେ ।
ଏହିରୂପେ ଦଶାକ୍ଷରୀ ବିଦ୍ୟାର ସ୍ୱରୂପ
ଦୁର୍ବାସା ମୁନିଙ୍କଠାରୁ ପାଇଥିଲେ ନୃପ ।
ପୁଷ୍କର ତୀର୍ଥରେ ସୂର୍ଯ୍ୟ ପର୍ବ ଦିବସରେ
ଦେଲେ ନୃପତିଙ୍କୁ ମୁନି ସନ୍ତୁଷ୍ଟ ଚିତ୍ତରେ ।
ସେ ଅନ୍ତରେ ରାଜା ଦଶଲକ୍ଷ ଜପକରି
ମନ୍ତ୍ର ସିଦ୍ଧ କଲେ ଜାଣ ଆହେ ତପସ୍ୱୀ ।
ପାଞ୍ଚଲକ୍ଷ ଜପ କରି ପୁଣି କବଚକୁ
ସିଦ୍ଧକଲେ ସ୍ନେହପରେ ଲଗାଇ ମନକୁ ।
ପୃଥିବୀ ମଧ୍ୟରେ ସେହୁ ହେଲେ ଏକ ବୀର
ମନ୍ତ୍ର କବଚ ପ୍ରସାଦେ ସେ ନୃପଶେଖର ।
ନାରଦ ବୋଇଲେ ବିଦ୍ୟା ଦଶାକ୍ଷରୀ ନାମ
ଶୁଣିଲି ତୁମ୍ଭ ମୁଖରୁ ଦ୍ୱିଜଙ୍କ ଉତ୍ତମ ।
କବଚ ସ୍ୱରୂପ ଏବେ କହ ଭଲକରି
ଶୁଣିଲେ ସଂଶୟ ଦୂର ହୋଇବ ମୋହରି ।
ନାରାୟଣ ବୋଇଲେ ସେ ଅଟଇ ଅଦ୍ଭୁତ
ପୂର୍ବରେ ଶିବଙ୍କୁ ଦେଲେ ପ୍ରଭୁ ରମାକାନ୍ତ ।

ସେ ସକାଶୁ ମହାଦେବ ତ୍ରିପୁର ସଂହାର
କଲେ ସେହି କବଚକୁ ଜପି ନିରନ୍ତର ।
ଦୁର୍ବାସାମୁନିଙ୍କୁ ତାହା ଦେଲେ ମନ ସନ୍ତୋଷେ
ନୃପତି ପାଇଲେ ତାଙ୍କଠାରୁ କାଳବଶେ ।
ଗୁପତ ଅଟଇ ତିନି ଭୁବନରେ ସେହି
ସ୍ୱରୂପ ତାହାର ଏବେ ଶୁଣ ସ୍ଥିର ହୋଇ ।
ଓଁକାର ଯେ ମାୟାବୀଜ ଲକ୍ଷ୍ମୀ ବୀଜାକ୍ଷର
କାମବୀଜ ଯୁକ୍ତ କରିଥିବ ତା ପାଶର ।
ପ୍ରତ୍ୟେକ ବାକ୍ୟରେ ଦେଇ ଏହି ପରକାରେ
ମନ୍ତ୍ର ପଠନ କରିବ ପଞ୍ଚାଙ୍ଗ ଭାବରେ ।
ପ୍ରଥମେ ବୋଲିବ କାଳୀ ରଖ ମସ୍ତକକୁ
କପାଳିନୀ ରକ୍ଷାକର ନାସିକା ନେତ୍ରକୁ ।
ଭଦ୍ରକାଳୀ ବେନି ଦନ୍ତଶ୍ରେଣୀକୁ ରଖନ୍ତୁ
ଅଧର ଯୁଗଳ ଦେବୀ ପାଳନ କରନ୍ତୁ ।
କଣ୍ଠକୁ ରକ୍ଷା କରନ୍ତୁ ତ୍ରୈଲୋକ୍ୟ ପାବନୀ
ରଖନ୍ତୁ ଦକ୍ଷିଣ କାଳୀ ମୋର ସ୍କନ୍ଧ ବେନି ।
ମହାମାୟା ବକ୍ଷସ୍ଥଳ କରନ୍ତୁ ପାଳନ
ଶିବପ୍ରିୟେ କର ନାଭି ଦେଶକୁ ରକ୍ଷଣ ।
ପୃଷ୍ଠ ରକ୍ଷାକର ଦେବୀ ଶ୍ରୀସିଂହବାହିନୀ
ହସ୍ତ ରକ୍ଷାକର ରକ୍ତବୀର୍ଯ୍ୟ ବିନାଶିନୀ ।
ରଖନ୍ତୁ ମୁଣ୍ଡମାଳିନୀ ମୋର ବେନିପାଦ
ବ୍ରହ୍ମାଣ୍ଡୀ ରଖନ୍ତୁ ସର୍ବ ଶରୀର ସଂପଦ ।

ପୂର୍ବେ କାଳୀ ଅଗ୍ନିକୋଣେ ରକ୍ତଦନ୍ତିକା
ଦକ୍ଷିଣେ ଚାମୁଣ୍ଡା ନୈର୍ଋତରେ କାଳିକା ।
ପଶ୍ଚିମ ଦିଗରେ ଶ୍ୟାମା ବାୟବ୍ୟେ ଚଣ୍ଡିକା
ଉତ୍ତରେ ବିକଟମୁଖୀ ଈଶାନେ ଶ୍ୟାମିକା ।
ଊର୍ଦ୍ଧ୍ୱଦେଶେ ଲୋଲଜିହ୍ୱା ଅଧରେ ଭବାନୀ
ଜଳେ ସ୍ଥଳେ ଅନ୍ତରୀକ୍ଷେ ଶ୍ରୀ ବିଶ୍ୱଜନନୀ ।
ଏ ରୂପେ କବଚରୂପ ଅଟଇଟି ଜାଣ
କହିଲି ଯଥାର୍ଥରୂପେ ଆହେ ଋଷିଗଣ ।
ଏ କବଚ ପ୍ରସାଦରେ ସୁଚନ୍ଦ୍ର ନୃପତି
ଅକ୍ଳେଶରେ ହେଲେ ସପ୍ତଦ୍ୱୀପ ଅଧିପତି ।
ମାନ୍ଧାତା ପୃଥିବୀ ଜିଣି ବୋଲାଇଲେ ଶ୍ରେଷ୍ଠ
ପ୍ରଚେତା ଲୋମଶ ହେଲେ ସଭିଙ୍କ ଗରିଷ୍ଠ ।
ଆବର ପିପ୍ପଳାୟନ ସୌଭରି ଏ ଦୁହେଁ
ଏହା ପ୍ରସାଦରେ ଖ୍ୟାତ ହେଲେ ସବୁଠାଏଁ ।
ସର୍ବସିଦ୍ଧିଦାତା ସିଦ୍ଧ କବଚ ସମାନ
ଜଗତ ମଧ୍ୟରେ ସତ ନୁହେଁ କେହି ଆନ ।
ଦେବତା ରାକ୍ଷସ ନର ପଶୁପକ୍ଷୀ କୁଳେ
ସକଳେ ହୁଅନ୍ତି ବଶ ଏ କବଚ ଥିଲେ ।
ବାର ପୁଣ୍ୟବ୍ରତ ଉପବାସ ଆଦି ଯେତେ
ଏହାର ସମାନ କେହି ନୋହିବେ କିଞ୍ଚିତେ ।
ବୋଲେ ଦୀନ କ୍ଷେମବାସୀ ଆହେ ଲକ୍ଷ୍ମୀପତି
ଦୟାକର ଯେନ ବାରେ ମୋହର ବିନତି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ନାରାୟଣଙ୍କ ଦ୍ୱାରା କାଳୀସ୍ତୋତ୍ର ବିବରଣ
କଥନେ ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।

—*

# ସପ୍ତତ୍ରିଂଶ ଅଧ୍ୟାୟ

## ସହସ୍ରାର୍ଜ୍ଜୁନ ସହିତ ପର୍ଶୁରାମଙ୍କର ଯୁଦ୍ଧ ଓ ପର୍ଶୁରାମଙ୍କର ଲକ୍ଷ୍ମୀସ୍ତୋତ୍ର ପଠନ

ନାରଦଙ୍କ ଆଗେ ନାରାୟଣ ମହାଋଷି
କହନ୍ତି ରାମ ଅର୍ଜ୍ଜୁନ ଯୁଦ୍ଧକୁ ବିଶେଷି ।
ଆହେ ମୁନି ଶୁଣ ବସି ବଧିର ବିଧାନ
ସୁଚନ୍ଦ୍ର ନୃପତି ଯୁଦ୍ଧେ ହୁଅନ୍ତେ ନିଧନ ।
ପୁଷ୍କରାକ୍ଷ ନାମେ ଥିଲା ତାହାଙ୍କର ସୁତ
ମହାଲକ୍ଷ୍ମୀ ସେବକ ଯେ ଅତି ବଳବନ୍ତ ।

ମହାଲକ୍ଷ୍ମୀଙ୍କ କବଚ ଗଳେ ତାହାଙ୍କର
ଅଜେୟ ଅଟନ୍ତି ତାହା ଯୋଗେ ନୃପବର ।
ତାଙ୍କୁ ଦେଖି ପର୍ଶୁରାମଙ୍କର ଭାଇମାନେ
ଶସ୍ତ୍ର ଧରି ପରବେଶ ହେଲେ ରଣସ୍ଥାନେ ।
ପୁଷ୍କରାକ୍ଷ ନରପତି ବର୍ଷି ଶରଜାଳ
ରୁନ୍ଧିଲେ ତାହାଙ୍କ ମାର୍ଗ ହୋଇ କୋପାନଳ ।

ଗଣନା ନ କରି ତାହା ସମଦଗ୍ନି ସୁତ
କାଟିଲେ ରାଜାଙ୍କ ରଥ ତୀକ୍ଷ୍ଣ ଶରଘାତେ ।
ପଞ୍ଚବାଣେ ସାରଥିର ମୁଣ୍ଡକୁ କାଟିଲେ।
ଦଶଶରେ ଅଶ୍ୱଙ୍କର ଜୀବନ ଲୁଟିଲେ ।
ସାତଶରେ ଧନୁ ଛେଦି ବାନ୍ଧ ପଞ୍ଚବାଣୀ
ନିମିଷ ମାତ୍ରକେ କାଟି ପକାଇଲେ ତୂଣ ।
ରାଜାଙ୍କର ଭ୍ରାତାମାନେ ତାଙ୍କ ସଙ୍ଗେ ଥିଲେ
ଶିବ ଶୂଳେ ସେମାନଙ୍କୁ ମାରି ପକାଇଲେ ।
ସେ ଅନ୍ତେ ରାଜାଙ୍କ ପ୍ରାଣ ନେବା ସକାଶେ
ଫିଙ୍ଗିଲେ ଅମୋଘ ଶୂଳ ଟେକି କରଦେଶେ
ସେ ଶୂଳ ଆକାଶମାର୍ଗେ ଚହଟିଣ ଗଲା
ନୃପଙ୍କ ଗଳେ ପୁଷ୍ପର ମାଳିକା ହୋଇଲା ।
ତାହା ଦେଖି ବିପ୍ରଗଣେ ମହାକ୍ରୋଧ କରି
ପ୍ରହାରିଲେ ଗଦାଶକ୍ତି ମୁଦ୍ଗରକୁ ଧରି ।
ଆଦରି ବିବିଧ ଶସ୍ତ୍ର ପ୍ରହାରନ୍ତେ ଗୃଣ୍ଡେ
ଅସିଲେ ସେ ସର୍ପପରି ଘୋଟି ରଣଦାଣ୍ଡେ ।
ରାଜାଙ୍କ ଦେହରେ ପଡ଼ି ହେଲେ ଧୂଳିସାତ
ଦେଖିକରି ଦ୍ୱିଜଗଣ ହୋଇଲେ ବିସ୍ମିତ ।
ସେ ସମୟେ କାର୍ତ୍ତବୀର୍ଯ୍ୟ ନାନାଶସ୍ତ୍ର ଭୁଲେ
ଚତୁରଙ୍ଗବଳ ସେହିଠାକୁ ପଠାଇଲେ ।
ସୈନ୍ୟ ଦେଖି ପୁଷ୍କରାକ୍ଷ ରଥୋପରେ ବସି
ବିନ୍ଧିଲେ ଅସଂଖ୍ୟା ଶର ଦ୍ୱିଜଙ୍କୁ ଉଦ୍ଦେଶି ।
ବ୍ରାହ୍ମଣେ ତ ଶୂରପଣେ ଉତ୍ତମ ଅଟନ୍ତି
କାଟିଲେ ପ୍ରତି ସାୟକେ ଗୁଡ଼ ମନୁ ଖିତ ।
ସେ ଅନ୍ତରେ ପୁଷ୍କରାକ୍ଷ ପ୍ରସ୍ୱାପନ ଅସ୍ତ୍ର
ବିନ୍ଧିଲେ ସମର ଦାଣ୍ଡେ ପାଠକରି ମନ୍ତ୍ର ।
ସେ ଘାତେ ପରଶୁରାମଙ୍କର ସବୁ ଭାଇ
ଶସ୍ତ୍ର ତେଜି ନିଦ୍ରାବଶେ ପଡ଼ିଲେକ ଶୋଇ ।
ଭାଇଙ୍କୁ ନିଦ୍ରିତ ଦେଖି ବୀର ପର୍ଶୁରାମ
ଧାଇଁଲେ ସେଠାକୁ କ୍ରୋଧେ ହୋଇ ତମତମ ।
ପ୍ରବୋଧନା କରି ତାଙ୍କୁ ରାଜାପାଶେ ଯାଇ
ପରଶୁ ଫିଙ୍ଗିଲେ ତାଙ୍କ ପ୍ରାଣ ନେବା ପାଇଁ ।
ସେ ପରଶୁ ବାତପରି ବେଗେ ଚଳିଗଲା
ରାଜାଙ୍କ ମୁକୁଟ କାଟି ଭୂମିରେ ପଡ଼ିଲା ।
ପରଶୁରାମ ତାହାକୁ ଫୋଟାଇ ଧରିଲେ
ମହାଦେବ ଦେବା ଶୂଳ ପୁଣି ପ୍ରହାରିଲେ ।
ପୁଷ୍କରାକ୍ଷ ନୃପଙ୍କର କୁଣ୍ଡଳ ଛିଣ୍ଡାଇ
ଗଲା ସେ ଶୂଳ ଶିବଙ୍କ ପାଶକୁ ପଳାଇ ।
ନୃପତି ଆପଣା କରି ଶରାସନ ଟାଣି
ରାମଙ୍କ ଉପରେ ପ୍ରହାରିଲେ ଶରଶ୍ରେଣୀ ।
କଣ୍ଟକ ମାତ୍ରକେ ତାହା ଛେଦି ଦ୍ୱିଜବର
ନାନା ଶସ୍ତ୍ର ପ୍ରହାରିଲେ ହୋଇ କୋପଭର ।
ନିବାରଣ କରି ପୁଣି ବୀର ନାରାୟଣ
ବିନ୍ଧିଲେ ବରୁଣ ଶର ଟାଣି ଶରାସନ ।
କାଣ୍ଡକରେ କାଟି ତାହା ସମଦଗ୍ନି ସୁତ
ମନ୍ତ୍ର ମନ୍ତ୍ରେଣ ବିନ୍ଧିଲେ ବ୍ରହ୍ମଶର ଅସ୍ତ୍ର ।
ବ୍ରହ୍ମାସ୍ତ୍ରେ ନୃପତି ତାକୁ ଖଣ୍ଡ ଖଣ୍ଡ କରି
ଉଭାହେଲେ ରଣଦାଣ୍ଡେ ମାରତଣ୍ଡ ପରି ।
ତାହା ଦେଖି ପର୍ଶୁରାମ ପାଶୁପତ ତ୍ରାଣ୍ଡ
ବିନ୍ଧିଲେ ସମସ୍ତ ଅସ୍ତ୍ର ଓଟ୍ରେ ଦଳକାଣ୍ଡ ।
ପୁଷ୍କରାକ୍ଷ ପ୍ରତିଅସ୍ତ୍ର କରି ସବୁ ପୁଣି
ନ ବାଜୁ ଆପଣା ଦେହେ କଲେ ଛିନ୍ନଭିନ୍ନ ।
ପର୍ଶୁରାମ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଲେ
ଧ୍ୟାନକରି ଶଙ୍କରଙ୍କୁ ସୁମରଣା କଲେ ।
ନୃପତିଙ୍କ ନାଶପାଇଁ ପାଶୁପତ ଶର
ବସାଇଲେ ଧନୁମଧ୍ୟେ ହୋଇ କୋପଭର ।
ତାହା ଜାଣି ନାରାୟଣ ବିପ୍ରରୂପ ଧରି
ପ୍ରବେଶ ହୋଇଲେ ତାଙ୍କ ଆଗେ ଆସିକରି ।
ବୋଇଲେ ଅହେ ଭାର୍ଗବ ଜ୍ଞାନୀ ହୋଇ ତୁମ୍ଭେ
ଅବିଚାର କରୁଅଛ ଜାଣୁଅଛୁ ଆମ୍ଭେ ।
ମନୁଷ୍ୟଙ୍କୁ ମାରିବାକୁ ପାଶୁପତ ବାଣ
ଭ୍ରମବଶେ ଧନୁ ମଧ୍ୟେ କରିଛ ସନ୍ଧାନ ।
ମୋତେ ଗୁଡ଼ିକରି ଏହି ପାଶୁପତ ଶର
କଟିପାରେ ତ୍ରିଭୁବନ କ୍ଷଣକେ ସଂହାର
ଶିବଙ୍କର ପାଶୁପତ ବିଷ୍ଣୁ ସୁଦର୍ଶନ
ସକଳ ଅସ୍ତ୍ର ମଧ୍ୟରେ ଅଟନ୍ତି ପ୍ରଧାନ ।
ସେ ସକାଶୁ ମୋର ବୋଲେ ଏ ମହାଅସ୍ତ୍ରକୁ
ନ ମାର କେବେ ରାଜାଙ୍କ ପ୍ରାଣ ନାଶିବାକୁ ।
ସେଉଁରୂପେ ପୁଷ୍କରାକ୍ଷ ସହସ୍ର ଅର୍ଜୁନ
ଦୁହିଙ୍କୁ ଜିଣିବ ତାହା ସାବଧାନେ ଶୁଣ ।
ମହାଲକ୍ଷ୍ମୀଙ୍କ କବଚ କଣ୍ଠଦେଶେ ଧରି
ତ୍ରୈଲୋକ୍ୟ ଦୁର୍ଜ୍ଜୟ ପୁଷ୍କରାକ୍ଷ ଦଣ୍ଡଧାରୀ ।

ତାଙ୍କ ସୁତ ଦାକ୍ଷଭୁଜେ ଦୁର୍ଗା ଦେବୀଙ୍କର
କବଚ ବନ୍ଧା ହୋଇଛୁ ଆହେ ଦ୍ୱିଜବର ।
ସେ ସକାଶୁ ସେ ଦୁହିଁଙ୍କୁ ସଂଗ୍ରାମ ଭିତରେ
ଜିଣିବା ଭଲ କେ ଦଶୁନାହିଁ ମୋ ନେତ୍ରରେ ।
କବଚ ଦେହରେ ଥିଲେ ଶସ୍ତ୍ର ଅସ୍ତ୍ର ଯେତେ
ବାଧା ଦେଇ ନ ପାରନ୍ତି କଦାପି କିଞ୍ଚିତେ ।
ସେ ସକାଶୁ ତୁମ୍ଭ ହିତ ହେବାପାଇଁ ମୁହିଁ
ଉପାୟ କରିବି ଯାହା ଶୁଣ କହୁଥାଇ ।
ଭିକ୍ଷୁକରୂପେ ଦୁହିଙ୍କ ସମୀପକୁ ଯିବି
କବଚ ଦୁଇଟି ମାଗି ଘେନିଣ ଆସିବି ।
ତେମନ୍ତ ହେଲେ ତୁମ୍ଭର ପ୍ରତିଜ୍ଞା ସଫଳ
ହୋଇବ ନିଶ୍ଚୟ ଆହେ ଯମଦଗ୍ନି ବାଳ ।
ଏହା ଶୁଣି ପର୍ଶୁରାମ ବ୍ରାହ୍ମଣକୁ ଚାହିଁ
ବୋଇଲେ କିଏ ଆପଣ ଅଟ ଦ୍ୱିଜସାଇଁ ।
ଚିହ୍ନି ନ ପାରିବା ଯୋଗୁ ପଚାରିଲି ଜାଣ
ଦୟାକରି ପରିଚୟ ଦିଅ ବିପ୍ରଗଣ ।
ବ୍ରାହ୍ମଣ ବୋଇଲେ ମୁହିଁ ଅଟଇଟି ହରି
ଆସିଅଛୁ ତୁମ୍ଭ ହିତ ମନରେ ବିଚାରି ।
ଏମନ୍ତ କହି ନୃପଙ୍କ ସମୀପକୁ ଗଲେ
କବଚ ଦୁଇଟି ମାଗି ଘେନି ଚାଲିଗଲେ ।
ବିଷ୍ଣୁ ମାୟାରେ ମୋହିତ ହେବାରୁ ସେ ନୃପେ
ନିଜ ନିଜ କବଚକୁ କାଢ଼ି ଦେଲେ ଆପେ ।
ବଇକୁଣ୍ଠ ପୁରେ ହରି ପ୍ରବେଶ ହୋଇଲେ
ତା ଜାଣି ପରଶୁରାମ ସିଂହନାଦ କଲେ ।
ନାରଦ ବୋଇଲେ ଦେବ ମହାଲକ୍ଷ୍ମୀଙ୍କର
କବଚ ପାଇଲେ କାହୁଁ ପୁଷ୍କରାକ୍ଷ ବୀର ।
ସେ କଥା ବିସ୍ତାରି କହ ମୁନିଗଣଈଶ
ଶୁଣିବାକୁ ଲାଳାୟିତ ମୋହର ମାନସ ।
ଆଉରି ଦୁର୍ଗାଦେବୀଙ୍କ କବଚକୁ ପୁଣି
ଘେନିଲେ ତାହାଙ୍କ ସୁତ କେଉଁଠାରୁ ଆଣି ।
ସେ ବେନି କବଚଙ୍କର ସ୍ୱରୂପ ଯେ ଫଳ
ଆମୂଳ କହିଣ ମୋତେ କହ ତପଶୀଳ ।
ନାରାୟଣ ବୋଇଲେ ହେ ଶୁଣ ମୁନିବର
ଜାଣିବାକୁ ଯେବେ ଇଚ୍ଛା ହେଉଛି ତୁମ୍ଭର ।
ପୁଷ୍କରାକ୍ଷ ନରପତି ଭକ୍ତି ଭାବ ବହି
ସନତ-କୁମାର ଋଷିଙ୍କୁ ସେବାକଲେ ଯାଇଁ ।
ସେ ସକାଶୁ ମୁନି ତାଙ୍କୁ ମହାଲକ୍ଷ୍ମୀଙ୍କର
କବଚ ଧ୍ୟାନ ମନ୍ତ୍ରକୁ ଦେଲେ ସେ କାଳର ।
ପୁଷ୍କରାକ୍ଷ ସୁତ ଯାଇ ଦୁର୍ବାସାଙ୍କ ପାଶେ
ରହିଲେ ତାହାଙ୍କୁ ସେବା କରିଣ ବରଷେ ।
ସନ୍ତୋଷ ହୋଇ ତାହାଙ୍କୁ ଭକ୍ତିରେ ସେ ମୁନି
ଦୁର୍ଗାଙ୍କ କବଚ ଦେଲେ ସେତ ବ୍ରହ୍ମଜ୍ଞାନୀ ।
ସ୍ତବ ସହିତରେ ପୁଣି ମନ୍ତ୍ର ଦଶାକ୍ଷର
ଦେଲେ ଆନନ୍ଦଚିତ୍ତରେ ଋଷିଗଣବର ।
ଏବେ ମହାଲକ୍ଷ୍ମୀଙ୍କର ମନ୍ତ୍ର ସ୍ୱରୂପକୁ
କହୁଅଛୁ ଶୁଣ ଆଗ ଦେଇଣ ମନକୁ ।
ଓଁ କାର ସେ ଲକ୍ଷ୍ମୀବୀଜ କମଳବାସିନୀ
ଶବ୍ଦକୁ ଚତୁର୍ଥ୍ୟନ୍ତ କରିଦେବ ପୁଣି ।
ସ୍ୱାହା ବେନି ଅକ୍ଷରକୁ ଦେବ ତାହାପରେ
ମନ୍ତ୍ରଟି ସଂପୂର୍ଣ୍ଣ ହୋଇଅଛି ଏ ପ୍ରକାରେ ।
ଧ୍ୟାନ ପୂଜାବିଧି ମଧ୍ୟ କହୁଅଛି ଶୁଣ
ଲଭିଥିଲେ ଯାହା ପୁଷ୍କରାକ୍ଷ ନରବଣ ।
ସହସ୍ର ଦଳ କମଳ ମଧ୍ୟ ନିବାସିନୀ
ପଦ୍ମନାଭ ପ୍ରିୟା ସତୀ ପଙ୍କଜଲୋଚନୀ ।
ପଦ୍ମାଳୟା ପଦ୍ମମୁଖୀ ପଦ୍ମପୁଷ୍ପ ପ୍ରିୟା
ପଦ୍ମତଳପ ଶାୟିନୀ କ୍ଷୀରବ୍ଧିତନୟା ।
ପଦ୍ମିନୀ ପଙ୍କଜହସ୍ତା ସରୋଜମାଳିନୀ
ପଦ୍ମପୁଷ୍ପ ବିଭୂଷିତା ପଦ୍ମ ସୁଶୋଭିନୀ ।
ଏମନ୍ତ ଯେ ମହାମାୟା ତାଙ୍କ ଶ୍ରୀଚରଣେ ।
ଭକ୍ତିସହ ମୋର ମନ ରହୁ ଅନୁକ୍ଷଣେ ।
ଏହିରୂପେ ଧ୍ୟାନ ପଢ଼ି ଷୋଳ ଉପଚାରେ
ପୂଜିବ ବିଧାନମତେ ପଦ୍ମ ସୁକୁମାରେ ।
ସେ ଅନ୍ତରେ ସ୍ତୁତିପାଠ କରି ପ୍ରଣମିବ
ଏମନ୍ତ ହେଲେ ନିଶ୍ଚୟ କାର୍ଯ୍ୟ ସିଦ୍ଧ ହେବ ।
କବଚ ସ୍ୱରୂପ ଏବେ ଶୁଣ ମୁନିବର
ଦେଲେ ଯା ବ୍ରହ୍ମାଙ୍କୁ ପୂର୍ବେ ଶଙ୍ଖ ଚକ୍ରଧର ।
ଯାହା ପ୍ରଭାବରେ ବ୍ରହ୍ମା ସରଜିଲେ ମହୀ
ପ୍ରଳୟ ଜଳ ଉପରେ ପଦ୍ମ ଫଳେ ରହି ।
ସେହି କବଚକୁ ବ୍ରହ୍ମା ସନତ୍କୁମାରଙ୍କୁ
ଦେଲେ ପୂର୍ବକାଳେ ମନେ ବହିଣ ପ୍ରୀତିକୁ ।
ତାହା ପ୍ରଭାବେ କୁବେର ହେଲେ ଧନପତି
ବୋଲାଇଲେ ଦକ୍ଷ ତାହାଯୋଗେ ପ୍ରଜାପତି ।

ସକଳ ଲୋକର ସାକ୍ଷୀ ହେଲେ ଧର୍ମଦେବ
ବିଷ୍ଣୁଙ୍କ ଷଡ଼ୈଶ୍ୱର୍ଯ୍ୟୀ କଲା ଯା ପ୍ରଭାବ ।
ଆବର ଅନେକ ଲୋକ ଏହା ପ୍ରସାଦରେ
ଐଶ୍ୱର୍ଯ୍ୟ ପ୍ରାପତ ହୋଇଛନ୍ତି ସହଜରେ ।
ଧର୍ମ ଅର୍ଥ କାମ ମୋକ୍ଷ ଦେଇପାରେ ଏହି
ଅନ୍ୟ କବଚ ଏହାର ସମାନ ନୁହଇ ।
ପ୍ରଥମେ ବୋଲିବ ଦେବୀ କମଳବାସିନୀ
ରଖନ୍ତୁ ମୋର ମସ୍ତକ ଦୟା ମନେ ଘେନି ।
କପାଳ ଆବର ନେତ୍ର ଯୁଗଳକୁ ମୋର
ରଖନ୍ତୁ ଶ୍ରୀଦେବୀ ସଦା ହୋଇ ତତପର ।
ମହାଲକ୍ଷ୍ମୀ ନାସିକାକୁ କରନ୍ତୁ ରକ୍ଷଣ
ଦନ୍ତକୁ ରଖନ୍ତୁ ପଦ୍ମାଳୟା ପୁଣ ପୁଣ ।
କୃଷ୍ଣପ୍ରିୟା ଦନ୍ତମୂଳ ରନ୍ଧ୍ରକୁ ରଖନ୍ତୁ
କଣ୍ଠକୁ ଶ୍ରୀନାରାୟଣୀ ପାଳନ କରନ୍ତୁ ।
କେଶବକାନ୍ତା ରଖନ୍ତୁ ମୋର ସ୍କନ୍ଧଦେଶ
ପଦ୍ମବାସିନୀ ରକ୍ଷା କର ନାଭିପାଶ ।
ବକ୍ଷସ୍ଥଳକୁ ରଖନ୍ତୁ ତ୍ରିଜଗତ ମାତା
ପୃଷ୍ଠକୁ ପାଳନ୍ତୁ ଦେବୀ ଶ୍ରୀକେଶବ କାନ୍ତା ।
ହସ୍ତକୁ ଶ୍ରୀ ମହାଲକ୍ଷ୍ମୀ କରନ୍ତୁ ରକ୍ଷଣ
ଶ୍ରୀନିବାସକାନ୍ତା ପାଦ ଦୁଇଗୋଟି ପୁଣ ।
ସକଳ ଅଙ୍ଗକୁ ଦେବୀ କମଳସମ୍ଭୂତା
ରକ୍ଷା କରନ୍ତୁ ନିବାରି ମୋର ଦୁଃଖଚିନ୍ତା ।
ପୂର୍ବଦିଗେ ମହାଲକ୍ଷ୍ମୀ ରକ୍ଷଣ କରନ୍ତୁ
ଅଗ୍ନିକୋଣରେ କମଳସମ୍ଭବା ରଖନ୍ତୁ ।
ଦକ୍ଷିଣରେ ପଦ୍ମା ନଇର୍‌ତେ ହରିପ୍ରିୟା
ପଶ୍ଚିମ ଦିଗରେ ଦେବୀ ସରୋଜନିଳୟା ।
ବାୟବ୍ୟ କୋଣରେ ଶ୍ରୀ ଉତ୍ତରେ କମଳା
ଈଶାନ୍ୟେ ମହାଲକ୍ଷ୍ମୀ ବିଷ୍ଣୁ ଗଳାମାଳା ।
ନାରାୟଣ କାନ୍ତା ରକ୍ଷା କରନ୍ତୁ ଊର୍ଦ୍ଧ୍ୱରେ
ଅଧୋଭାଗେ ମହାମାୟା ରଖନ୍ତୁ ସର୍ବରେ ।
ଏହିରୂପେ ଲକ୍ଷ୍ମୀଙ୍କର କବଚ ପ୍ରକାର
ସକଳ କବଚ ମଧ୍ୟେ ଅଟଇ ସେ ସାର ।
ଧନ ଜନ ଐଶ୍ୱର୍ଯ୍ୟ ଏହା ପ୍ରସାଦରେ
ପ୍ରାପତ ହୁଅଇ ସବୁକାଳେ ସବୁଠାରେ ।
ମେରୁ ସମାନ ସୁବର୍ଣ୍ଣ ଦେଲେ ଫଳ ଯେତେ
ହୁଅଇ ଏହି କବଚ ଧାରଣେ କହିତେ ।
ଗୁରୁଙ୍କୁ ଅର୍ଚ୍ଚନା କରି ବିଧି ଅନୁସାରେ
ଘେନିବ ଏହାକୁ କଣ୍ଠେ ଅଥବା ବାହୁରେ ।
ଆବର ଲକ୍ଷ୍ମୀଦେବୀଙ୍କୁ ସ୍ମରଣ କରିବ
ତେବେ ସେ ସକଳ କାର୍ଯ୍ୟ ସିଦ୍ଧି ଲଭି ହେବ ।
ଲୋଭ ମୋହ ଭୟରେ ଏ ଦିବ୍ୟ କବଚକୁ
ଦାନ ନ କରିବ କେବେ ସାମାନ୍ୟ ଲୋକକୁ ।
କେବଳ ଶରଣାଗତ ହେବ ଯେଉଁ ନର
ଦେବ ତାକୁ ଥିବ ଯେବେ ସାଧୁପଣ ତାର ।
ନ ଜାଣି ସେ କବଚକୁ ଲକ୍ଷ୍ମୀଙ୍କୁ ପୂଜିଲେ
ସଫଳ ନୋହିବ କେଉଁ କାର୍ଯ୍ୟ କେବେ ହେଲେ
ବୋଲେ ଅଧମ ମୋହନ ଶ୍ରୀକୃଷ୍ଣଙ୍କ ପାଦେ
ମୋହର ମାନସ ସଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ସହସ୍ରାର୍ଜ୍ଜୁନ ସହିତ ପର୍ଶୁରାମଙ୍କର ଯୁଦ୍ଧ
ଓ ପର୍ଶୁରାମଙ୍କର ଲକ୍ଷ୍ମୀସ୍ତୋତ୍ର ପଠନେ ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।

—*—

## ଅଷ୍ଟତ୍ରିଂଶୋ ଅଧ୍ୟାୟ

### ନାରାୟଣଙ୍କ ଦ୍ୱାରା ଦୁର୍ଗାଦେବୀଙ୍କର କବଚ ସ୍ୱରୂପ କଥନ

ଏଥିଅନ୍ତେ ନାରାୟଣ ମୁଖକୁ ଅନାଇ
ପୁଚ୍ଛିଲେ ପୁଣି ନାରଦ ଋଷିକୁଳ ସାଇଁ ।
ବୋଇଲେ ହେ ମୁନି ତୁମ୍ଭଠାରୁ ଲକ୍ଷ୍ମୀଙ୍କର
କବଚକୁ ଶୁଣି ମୁହିଁ ହେଲି ତୋଷବର ।
ଏବେ ଦୁର୍ଗାଙ୍କ କବଚ ସ୍ୱରୂପ କପଣ
ଆମୂଳ କହିଣ ମୋତେ କହ ତପସ୍ୱୀ ।
ତାହାଶୁଣି ନାରାୟଣ ବୋଇଲେ ସେ କଥା
କହୁଅଛି ମନଦେଇ ଶୁଣ ସରବଥା ।
ଯେଉଁ କବଚକୁ ପୂର୍ବେ ଗୋଲୋକରେ ହରି
ବ୍ରହ୍ମାଙ୍କୁ ପ୍ରଦାନ କଲେ ସମାଦର କରି ।
ତ୍ରିପୁର ସଂହାରକାଳେ ପୁଣି ପ୍ରଜାପତି
ଶିବଙ୍କୁ ତା ସମର୍ପଣ କଲେ ବହୁ ପ୍ରୀତି ।

ସେ କବଚ ପ୍ରଭାବରେ ପ୍ରଭୁ ଶୂଳପାଣି
ତ୍ରିପୁର ସଂହାର କଲେ କରେ ଶସ୍ତ୍ର ଘେନି ।
ସେ ଅନ୍ତେ ଗନ୍ଧଦମକୁ ଦେଲେ ସନ୍ତୋଷରେ
ଗନ୍ଧଦମ ଦେଲେ ନେଇ ପଦ୍ମାକ୍ଷଙ୍କଠାରେ ।
ସେ ପ୍ରକାଶୁ ନରପତି ସପ୍ତଦ୍ୱୀପା ମହୀ
ଜିଣିଲେ ଆପଣା ବଳ ପ୍ରଭାବ ଦେଖାଇ ।
ସେ କବଚ ଘେନି ଶିବ ସର୍ବଜ୍ଞ ହୋଇଲେ
ଗନ୍ଧଦମ ଋଷି ଶିବ ତୁଲ୍ୟ ହୋଇଲେ ।
ବ୍ରହ୍ମାଣ୍ଡ ବିଜୟ ନାମ ଅଟଇ ତାହାର
ଋଷି ଅଟନ୍ତି ପ୍ରଜାପତି ଧାର୍ମିକଙ୍କ ବର ।
ଗାୟତ୍ରୀ ଛନ୍ଦ ଦୁର୍ଗତିନାଶିନୀ ଦେବତା
ବ୍ରହ୍ମାଣ୍ଡ ବିଜୟେ ବିନିଯୋଗ ହୁଏ କଥା ।
ଯେଉଁରୂପେ କବଚ ପାଠ ହେବ ପ୍ରଥମନ୍ତ
କହୁଅଛୁ ଶୁଣ ଆହେ ଜ୍ଞାନୀଙ୍କର ଗୁରୁ ।
ଓଁକାର ସେ ମାୟାବୀଜ ଅକ୍ଷର ଦୁଇଟି
ସମସ୍ତ ବାକ୍ୟ ଆଗରେ ବସାଇବ ଯୋଡ଼ି ।
ଦୁର୍ଗତିନାଶିନୀ ଶବ୍ଦ ଚତୁର୍ଥ୍ୟନ୍ତ କରି
ଶେଷରେ ସେ ସ୍ୱାହା ବେନି ଅକ୍ଷରକୁ ଭରି ।
ବୋଲିବ ମସ୍ତକ ମୋର କରନ୍ତୁ ରକ୍ଷଣ
କପାଳ ପାଳନ୍ତୁ ମାୟା ବୀଜାକ୍ଷର ପୁଣ ।
ଆବର ସେ ଲକ୍ଷ୍ମୀବୀଜ ସମ୍ବନ୍ଧରେ ମୋର
ନେତ୍ର ଦୁଇଙ୍କୁ ପାଳନ କରନ୍ତୁ ସତ୍ୱର ।
କର୍ଣ୍ଣ ଯୁଗଳକୁ ଦୁର୍ଗା ରକ୍ଷଣ କରନ୍ତୁ
ନାସିକାକୁ ମହାମାୟା ସର୍ବଦା ପାଳନ୍ତୁ ।
ଓଷ୍ଠକୁ ରକ୍ଷା କରନ୍ତୁ ଉଗ୍ରଚଣ୍ଡିକା
କଣ୍ଠକୁ ପାଳନ୍ତୁ ଚଣ୍ଡରୂପିଣୀ ଚଣ୍ଡିକା ।
ସ୍କନ୍ଧକୁ ରଖନ୍ତୁ ମୋର ଦୁର୍ଗତି ନାଶିନୀ
ବକ୍ଷସ୍ଥଳକୁ ରଖନ୍ତୁ ବିପଦନାଶିନୀ ।
ମହାଦୁର୍ଗା ନାଭିଦେଶ ରକ୍ଷଣ କରନ୍ତୁ
ମସ୍ତକ ମାଳନ୍ତୁ ଦେବୀ ଧର୍ମକର୍ମ ହେତୁ ।
ହସ୍ତ ପଦ ରକ୍ଷା କର ପ୍ରଭୁ ମହାମାୟା
ଦୈତ୍ୟବିନାଶିନୀ ରକ୍ଷା କର ସର୍ବକାୟା ।
ଦିବସ ରଜନୀ ରକ୍ଷା କର ଜଗନ୍ମାତା
ଦୂର ହୋଇଯାଉ ଭୟ ପ୍ରଦୋଷରେ ଚିନ୍ତା ।
ପୂର୍ବଦିଗେ ମହାମାୟା ଆଗ୍ନେୟେ କାଳିକା
ଦକ୍ଷିଣରେ ଦକ୍ଷକନ୍ୟା ନୈଋତେ ଏକା ।
ଶ୍ରୀ ଶିବସ୍ତୁନ୍ଦରୀ ରକ୍ଷା କରନ୍ତୁ ଆବର
ପଶ୍ଚିମେ ସର୍ବଜ୍ଞ ଦେବୀ ରଖନ୍ତୁ ସତ୍ୱର ।
ବାୟବ୍ୟ କୋଣେ ବାରାହୀ ଉତ୍ତରେ କୌମାରୀ
ଈଶାନ୍ୟ କୋଣେ ଈଶାନପ୍ରିୟ ସହଚରୀ ।
ଉର୍ଦ୍ଧ୍ୱ ଦିଗେ ନାରାୟଣୀ ଅଧରେ ଅମ୍ବିକା
ଜ୍ଞାନେ ଜ୍ଞାନ ପ୍ରଦାୟିନୀ ସ୍ୱପ୍ନେ ଶ୍ରୀଚଣ୍ଡିକା ।
ରକ୍ଷା କରନ୍ତୁ ସର୍ବଦା ଦମ୍ଭାବହ ମନେ
ଏରୂପେ କବଚ ପାଠ କରିବ ଯତନେ ।
ସକଳ ତୀର୍ଥରେ ସ୍ନାନ କଲେ ଯେଉଁ ଫଳ
ହୁଅନ୍ତେ ଏହି କବଚ ପଠନେ କେବଳ ।
ଗୁରୁଙ୍କୁ ଭକତି କରି କଣ୍ଠେ ବାହୁମୂଳେ
ବନ୍ଧନ କରିବ ଏହା ଶୁଭମନ୍ତ ବେଳେ ।
ସେମନ୍ତ ହେଲେ ତ୍ରୈଲୋକ୍ୟ ବିଜୟୀ ହୋଇବ
ସକଳ ଶତ୍ରୁ ନିବାରି ଯଶ ଅର୍ଜିବ ।
ଏ କବଚ ନ ଜାଣି ଯେ ଦୁର୍ଗାଙ୍କୁ ଭଜଇ
ସମସ୍ତ କର୍ମ ତାହାର ନିଷ୍ଫଳ ହୁଅଇ ।
ଅତ୍ୟନ୍ତ ଗୁପତ ଏହା ଅଟଇ ଆହେ ମୁନି
ନ ହେବ କେବେ ସାମାନ୍ୟ ଲୋକେ ସେ ଶୁଣିବେନି
ଏହିରୂପେ ନାରଦଙ୍କ ଆଗେ ମୁନିବର
କହିଲେ ଗୀତରେ ଭାବ ହୋଇ ବାର୍ତ୍ତାଗ୍ରହ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ନାରାୟଣ ଦ୍ୱାରା ଦୁର୍ଗାଦେବୀଙ୍କର
କବଚ ସ୍ୱରୂପ କଥନେ ନାମ ଅଷ୍ଟବିଂଶୋଽଧ୍ୟାୟଃ ।

# ଊନଚତ୍ୱାରିଂଶ ଅଧ୍ୟାୟ

## ଯୁଦ୍ଧରେ ପର୍ଶୁରାମଙ୍କ ମୋହ ଓ ଦେବତାମାନଙ୍କର

## ପର୍ଶୁରାମଙ୍କ ନିକଟକୁ ଆଗମନ

ନାରଦଙ୍କ ଆଗେ ନାରାୟଣ ମୁନିବର
କହନ୍ତି ସମର ପର୍ଶୁରାମ ରାଜାଙ୍କର ।
ସେ ସମରେ କଥା ଦେବ ନରେ ଅଗୋଚର
ତାକୁ ବର୍ଣ୍ଣିବାକୁ ନବେ ଶକ୍ତି ଅଛି କାର ।
ନାରାୟଣ ମହାମୁନି ସର୍ବସିଦ୍ଧି ପ୍ରଦ
ନାରାୟଣ ସମ ଯେହୁ ଜଗତେ ପ୍ରସିଦ୍ଧ ।
ପରଶୁରାମଙ୍କ ଯୁଦ୍ଧ କହନ୍ତି ବୁଝାଇ
ବୈକୁଣ୍ଠ ଯାଆନ୍ତେ ହରି କବଚକୁ ନେଇ ।
ପୁନଶ୍ଚରୁଲେ ପୁଷ୍କରାକ୍ଷ ରାଜଙ୍କୁ ଭାର୍ଗବ
ବଧିଲେ ସମର ଦାଣ୍ଡେ ପ୍ରକାଶି ଆହବ ।
ତାହା ଜାଣି ସହସ୍ରାର୍ଜ୍ଜୁନ ରଥୋପରେ ବସି
ଧନୁଶର ଧରି ଯୁଦ୍ଧେ ପ୍ରବେଶିଲେ ଆସି ।
ଦୁଇଲକ୍ଷ ଅକ୍ଷୌହିଣୀ ସୈନ୍ୟ ତାଙ୍କ ଭୁଲେ
ସେ ଯାହାର ଶସ୍ତ୍ରଅସ୍ତ୍ର ଘେନିଣ ଆସିଲେ ।
ପରଶୁରାମ ତ ସେହିଠାରେ ରହିଥିଲେ
ସୈନ୍ୟଘେନି କାର୍ତ୍ତବୀର୍ଯ୍ୟ ଆସିବା ଦେଖିଲେ ।
ତାହାଙ୍କ ପଛରେ ଲକ୍ଷକୋଟି ନରପତି
ଧନୁଶର ଘେନି ଯୁଦ୍ଧ ପାଇଁ ଆସିଛନ୍ତି ।
ସୁବର୍ଣ୍ଣ ରଥ ଉପରେ ବୀର ସହସ୍ରାର୍ଜ୍ଜୁନ
ବସିଛନ୍ତି ଅଙ୍ଗେ ଭରି ନାନା ଆଭରଣ ।
ପରଶୁରାମଙ୍କ ଆଗେ ଦେଖିଣ ନୃପତି
ରଥୁ ଓହ୍ଲାଇ ପ୍ରଣାମ କଲେ ସେ ଝଟତି ।
ଶୁଭ ଆଶୀର୍ବାଦ କଲେ ତାଙ୍କୁ ମୁନିବର
ଉଭାହେଲେ କରେ ଧରି ଧନୁ ତୀକ୍ଷ୍ଣ ଶର ।
ସହସ୍ରାର୍ଜ୍ଜୁନ ମଧ୍ୟ ଉଠି ବେଗହୋଇଲେ
ରଥୋପରେ ବସି ଯୁଦ୍ଧ ଇଚ୍ଛାରେ ରହିଲେ ।
ଏହିକାଳେ ଦୁଇ ସୈନ୍ୟ ମଧ୍ୟେ ଘୋରତର
ପ୍ରବର୍ତ୍ତିଲା ପରସ୍ପରେ ହୋଇ ମହାରଣ ।
ରାମଙ୍କର ଭାଇମାନେ ନିଜ ସୈନ୍ୟଭୁଲେ
କ୍ଷତ ବିକ୍ଷତ ସର୍ବାଙ୍ଗ ହୋଇ ପଳାଇଲେ ।

କାର୍ତ୍ତବୀର୍ଯ୍ୟ ଶରାଘାତ ନ ପାରନ୍ତେ ସହି
ଅସ୍ତ ବ୍ୟସ୍ତ ହେଲେ ରଣସ୍ଥାନରେ ନ ରହି ।
ତାହା ଦେଖି ପର୍ଶୁରାମ ଅଗ୍ନିଅସ୍ତ୍ର ଧରି
ବିନ୍ଧିଲେ ରାଜାଙ୍କୁ ନିଜ କାର୍ମୁକ ଓଟାରି ।
ସେ ଅସ୍ତ୍ର ଆକାଶମାର୍ଗେ ଯାଆନ୍ତେ ଚହଟି
ଜାତକଲା ମହାଅଗ୍ନି ଜ୍ୱାଳା କୋଟି କୋଟି ।
ବାରୁଣ ଅସ୍ତ୍ରରେ ତାହା ସହସ୍ର ଅର୍ଜ୍ଜୁନ
ନ ବାଜୁ ଆପଣା ଦେହେ କଲେ ନିବାରଣ ।
ଗାନ୍ଧର୍ବ ଅସ୍ତ୍ର ବସାଇ ପୁଣି ପର୍ଶୁରାମ
ବିନ୍ଧିଲେ ଘେନିବା ପାଇଁ ଅର୍ଜ୍ଜୁନଙ୍କ ପ୍ରାଣ ।
ସେ ଅସ୍ତ୍ରରେ ଲକ୍ଷ ଲକ୍ଷ ସର୍ପ ପରବତ
ମୁହୂର୍ତ୍ତ ମଧ୍ୟରେ କାହୁଁ ହେଲେ ତହିଁ ଜାତ ।
ବାୟବ୍ୟ ଅସ୍ତ୍ରରେ ତାହା କାଟନ୍ତେ ରାଜନ
ନାଗଅସ୍ତ୍ର ପ୍ରହାରିଲେ ଦ୍ୱିଜକୁଳ ରାଣ ।
ଗରୁଡ଼ ଅସ୍ତ୍ର ପ୍ରହାରି କାର୍ତ୍ତବୀର୍ଯ୍ୟ ବୀର
ଛେଦି ପକାଇଲେ ନାଗ ଅସ୍ତ୍ର ରାମଙ୍କର ।
ମାହେଶ୍ୱର ଅସ୍ତ୍ର ତହୁଁ କଲେ ପର୍ଶୁରାମ
କାଟିଲେ ବୈଷ୍ଣବ ଅସ୍ତ୍ରେ ନୃପଙ୍କ ଉତ୍ତମ ।
ସେ ଅନ୍ତେ ପରଶୁରାମ ବ୍ରହ୍ମଅସ୍ତ୍ର ଧରି
ପ୍ରହାରିଲେ ସହସ୍ରାର୍ଜ୍ଜୁନ ବଧ ଇଚ୍ଛାକରି ।
ବ୍ରହ୍ମାସ୍ତ୍ରେ ତାହାକୁ ରାଜା ଛେଦି ପକାଇଲେ
ଦତ୍ତାତ୍ରେୟ ଦେବା ଶୂଳ ହସ୍ତରେ ଧଇଲେ ।
ମନ୍ତ୍ର ପଢ଼ି ବହୁବାର ବୁଲାଇ ତାହାକୁ
ଫିଙ୍ଗିଲେ ସେକ୍ଷଣି ପର୍ଶୁରାମ ଉପରକୁ ।
ପ୍ରଳୟାଗ୍ନି ଶିଖାପରି ତାର ତେଜରାଜି
ଦେଖିକରି ଦୁଇସୈନ୍ୟ ନୟନ ଦେଲେ ବୁଜି ।
ଉଲ୍‌କାପରି ଆକାଶରୁ ଖସି ଅସ୍ତ୍ରବର
ପଡ଼ିଲା ଅଙ୍ଗରେ ଯମଦଗ୍ନି ସୁତଙ୍କର ।
ସେ ଘାତରେ ଜ୍ଞାନ ତେଜି ବୀର ଚୂଡ଼ାମଣି
ଧନୁଶର ଛାଡ଼ି ବେଗେ ଲୋଟିଲେ ଧରଣୀ ।

ତାହାଦେଖି ଦେବଗଣ ଦୁଃଖିତ ହୋଇଲେ
ବ୍ରହ୍ମା ବିଷ୍ଣୁ ଶଙ୍କରଙ୍କୁ ସଙ୍ଗେ ଘେନିଗଲେ ।
ସମର ଭୂମିରେ ସର୍ବେ ହୋଇଲେ ପରବେଶ
ରାମଙ୍କୁ ଦେଖିଣ ଶିବ ତ୍ରିଭୁବନ ଈଶ ।
ମହାଜ୍ଞାନ ବଳେ ତାଙ୍କୁ ମୁହୂର୍ତ୍ତ ମଧରେ
ଜୀଆଇଲେ ମନ୍ତ୍ରଜଳ ସିଞ୍ଚିଣ ମୁଖରେ ।
ଚେତନା ପାଇଲେ ପର୍ଶୁରାମ ମହାବଳୀ
ଦେଖିଲେ ଅଛନ୍ତି ଆଗେ ଅମର ମଣ୍ଡଳୀ ।
ଭକ୍ତିଭରେ ସେମାନଙ୍କ ପାଦତଳେ ପଡ଼ି
ସ୍ତୁତିକଲେ ଆନନ୍ଦରେ ବେନିକର ଯୋଡ଼ି ।
ସହସ୍ର ଅର୍ଜ୍ଜୁନ ମଧ ଦେବଙ୍କ ଚରଣେ
ଦଣ୍ଡବତ ହୋଇ ସ୍ତୁତିକଲେ ସେହିକ୍ଷଣେ ।
ସେ ସମୟେ ଦତ୍ତାତ୍ରେୟ ଆସି ସେହିଠାରେ
ମିଳିଲେ ନିଜ ଶିଷ୍ୟଙ୍କୁ ଦେଖିବା ଇଚ୍ଛାରେ ।
ପାଶୁପତ ଅସ୍ତ୍ର ଧରି ବୀର ପର୍ଶୁରାମ
ଧନୁରେ ଯୋଚିଲେ ମନେ ବହ୍ନି ଘୋରତମ ।
ରାଜାଙ୍କ ରଥକୁ ଚାହିଁ ଦେଖିଲେ ସେ ପୁଣି
ବିଜେ କରିଛନ୍ତି ଆଗେ ଶଙ୍ଖ ଚକ୍ରପାଣି ।
ପାରିଷଦଗଣ ବେଢ଼ି ରହିଛନ୍ତି ପାଶେ
ବୁଲୁଅଛି ସୁଦର୍ଶନ ଏଣେ ତେଣେ ବେଗେ ।
ତା ଦେଖି ସ୍ତମ୍ଭିତ ହୋଇ ସଂହାରି ଅସ୍ତ୍ରକୁ
ରହିଲେ କେବଳ ଚାହିଁ ରାଜାଙ୍କ ରଥକୁ ।
ଏହିକାଳେ ଶୁଣାଗଲା ଆକାଶରୁ ବାଣୀ
ବିସ୍ମିତ ନ ହୁଅ ଭୃଗୁବଂଶ ଶିରୋମଣି ।
କାର୍ତ୍ତବୀର୍ଯ୍ୟ ନୃପତିଙ୍କୁ ଦତ୍ତାତ୍ରେୟ ଋଷି
ଶ୍ରୀକୃଷ୍ଣ କବଚ ଦେଇଛନ୍ତି ହୋଇ ତୋଷି ।
ଦକ୍ଷିଣ ବାହୁରେ ରାଜା ଭରିଛନ୍ତି ତାକୁ
ମିଶାଇ ତା ସହିତରେ ରତ୍ନ ଗୁଟିକାକୁ ।
ସେ ସକାଶୁ ଆହେ ରାମ ତାହାଙ୍କୁ ସଂହାରି
ନ ଯାଇ ପାରନ୍ତି କେବେ ପରିତ୍ୟାଗ କରି ।
ଯେବେ ମହାଦେବ ଭିକ୍ଷୁ ସ୍ୱରୂପରେ ଯାଇ
ସେ କବଚ ମାଗିନେବେ କାହାକୁ ନ କହି ।
ତେବେ ତୁମ୍ଭେ ଅର୍ଜ୍ଜୁନକୁ ଜିଣିବଟି ରଣେ
ନୋହିଲେଯେନ ହାରିବେକେବେ ତୁମ୍ଭବାଣେ
ଏମନ୍ତ ଆକାଶ ବାଣୀ ଶୁଣି ମହେଶ୍ୱର
ଭିକ୍ଷୁକ ରୂପ ଧାରଣ କରି ସେ କାଳର ।

ନୃପଙ୍କଠାରୁ କବଚ ମାଗି ଘେନିଗଲେ
ରାମଙ୍କୁ ନେଇ ଆପଣା ଭୁବନେ ମିଳିଲେ ।
ଆଉ ଯେତେ ଦେବଗଣ ଥିଲେ ସେହିଠାରେ
ସମସ୍ତେ ଚଳିଲେ ମଧ ସେ ଯାହାର ପୁରେ ।
ପରଶୁରାମ ସେ କାଳେ ସହସ୍ରାର୍ଜ୍ଜୁନଙ୍କୁ
କହିଲେ କାଳ ଉଚିତ ଯଥାର୍ଥ ବାକ୍ୟକୁ ।
ବୋଇଲେ ଆହେ ରାଜନ ବଳ ଆସ୍ଫେକରି
ଯୁଦ୍ଧକର ଏବେ ଆମ୍ଭ ଆଗେ ଧନୁର୍ଧର ।
କାଳ ହେତେ ମନୁଷ୍ୟର ଜୟ ପରାଜୟ
ହୁଅଇ ନିହିଁରେ କିଛି ନ ଥାଏ ନିଶ୍ଚୟ ।
ବିଧି ଅନୁସାରେ ତୁମ୍ଭେ ପଢ଼ିଅଛ ବେଦ
ଦାନ କରିଅଛ ପୁଣି ବହୁତ ସମ୍ପଦ ।
ସକଳ ରାଜାଙ୍କୁ ଯୁଦ୍ଧେ ଜିଣିଅଛ ହେଳେ
ହାରିଅଛି ଦଶମୁଖ ତୁମ୍ଭ ବାହୁବଳେ ।
ଏବେ ଦତ୍ତଶୂଳ ଯୋଗେ ମୋତେ ପରାଜିତ
କରିଅଛ ବୋଲି ମୁହିଁ ବିଚାରୁଛି ଚିତ୍ତ ।
ଅଜ୍ଞାନ ହୋଇଣ ମହୀତଳେ ପଡ଼ିଥିଲି
ଶିବଙ୍କ ପ୍ରସାଦେ ସିନା ଚେତନା ପାଇଲି ।
ତୁମ୍ଭଙ୍କୁ ବହୁତ ମୁହିଁ କରୁଛି ପ୍ରଶଂସା
ବିକ୍ରମ ଦେଖାଅ ଏବେ ନୃପ ମହାଯଶା ।
ଏରୂପେ ରାମଙ୍କ ବାକ୍ୟ ଶୁଣି ସହସ୍ରାର୍ଜ୍ଜୁନ
କହି ଆରମ୍ଭିଲେ ତାଙ୍କୁ କରିଣ ପ୍ରଣାମ ।
ବୋଇଲେ ଶୁଣିବା ହେଉ ଦ୍ୱିଜକୁଳ ଈଶ
ମନୁଷ୍ୟ ଜୀବନ ଜଳଫେଣର ସଦୃଶ ।
ଅଧ୍ୟୟନ ଦାନ ମହୀ ଶାସନ ବିଜୟ
କରିଛି ବୋଲି ଯା କହୁଅଛ ମହାଶୟ ।
ମୋର ଆୟତ୍ତରେ ତାହା ନୋହିପାରେ କିଛି
କେବଳ ବିଧି ବିଧାନ ଯୋଗରେ ହୋଇଛି ।
ମୋହର ସମାନ କେତେ କେତେ ନରପତି
ଯାଇଛନ୍ତି ନିଜପଥେ ଛାଡ଼ି ବସୁମତୀ ।
ବୁଦ୍ଧି ତେଜ ବଳ ବିଦ୍ୟା ଅଇଶ୍ୱର୍ଯ୍ୟ ଜ୍ଞାନ
ଲୌକିକ ଅଟଇ ଏହି ସବୁ କଥା ଜାଣ ।
ଆତ୍ମର ବିନୟ ବିଦ୍ୟା ପ୍ରତିଜ୍ଞା ତପସ୍ୟା
ଶ୍ରୀମନ୍ତ ଲୋକଠାରେ ଏ କରନ୍ତି ବସା ।
ଲୌକିକ ବିଭବ ଯେତେ ଥିଲା ମୋହଠାରେ
ସମସ୍ତ ଯାଇଛି ମନୋରମା ସଙ୍ଗତରେ ।

ମୋର ପ୍ରାଣପ୍ରିୟା ସେହୁ ସତୀ ପତିବ୍ରତା
କମଳା ଅଂଶରେ ପୁଣି ଅଟଇ ସମ୍ଭୂତା ।
ବାଳକାଳୁ ସହଚରୀ ହୋଇଥିଲା ମୋର
ଏବେ ସେହି ସ୍ତ୍ରୀ ଆଗ ହୋଇଲା ଅନ୍ତର ।
ତାହା ବିନା ପ୍ରାଣଶୂନ୍ୟ ହେଲାପରି ମୁହିଁ
ରହିଅଛି ଜାଣ ଆହେ ଦ୍ୱିଜକୁଳ ସାଇଁ ।
ପୁତ୍ରଙ୍କ ମୋର ସନ୍ତାନମ ଆପଣଙ୍କ ଥରେ
ଦେଖାଇ ନ ପାରି ଦୁଃଖ ହୋଇଛି ମନରେ ।
ଆବର ଦ୍ୱିତୀୟ ଦୁଃଖ ଅଛି ମୋର ପୁଣ
ବ୍ରାହ୍ମଣ ହାତରେ ଯାହା ଘଟିବ ମରଣ ।
କାଳବଳେ ସିଂହ ହୁଏ ଶୃଗାଳ ସଦୃଶ
ଶୃଗାଳ କରଇ କାଳେ ସିଂହ ବଂଶ ନାଶ ।
ବ୍ୟାଘ୍ରକୁ ମାରଇ ମୃଗ କାଳ ଅନୁସାରେ
କାଳରେ ମରଇ ଗଜ ମଶକ ଯୋଗରେ ।
ମହାସର୍ପକୁ ମଶା କାଳେ ବିନାଶ କରଇ
କାଳ ଅନୁସାରେ ସର୍ପ ଚଟିଆକୁ ଖାଇ ।
କିଙ୍କର ରାଜାକୁ କାଳେ କରୁଥାଏ ସ୍ତୁତି
କାଳେ କିଙ୍କରକୁ ପୂଜା କରଇ ନୃପତି ।
ମନୁଷ୍ୟ ହୁଅଇ ଇନ୍ଦ୍ର କାଳ ପ୍ରଭାବରେ
ମରଣ ଲଭନ୍ତି ଧାତା ପୁଣି କାଳାନ୍ତରେ ।
ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗରେ ସମଗ୍ର ପ୍ରକୃତି
ଲୀନ ହୁଅଇ ତା ରୂପେ କେହି ନ ଦେଖନ୍ତି ।
ଶ୍ରୀକୃଷ୍ଣ ଅଟନ୍ତି କାଳ କାଳରଟି ଜାଣ
ତାଙ୍କ ଯୋଗେ ସୃଷ୍ଟି ସ୍ଥିତି ଲୟ ହୁଏ ପୁଣ ।
ସ୍ଥୂଳଠାରୁ ସ୍ଥୂଳ ପୁଣ ସୂକ୍ଷ୍ମଠାରୁ ସାନ
ହୋଇ ଯେ ପରମାଣୁ ଅଟେ ତାହା ନାମ ।
ଯାହାଙ୍କ ଲୋମ ମୂଳରେ ଅଖିଳ ଜଗତ
ମହା ବିରାଟ ନାମରେ ଅଟନ୍ତି ସେ ଖ୍ୟାତ ।
ଶ୍ରୀକୃଷ୍ଣଙ୍କ ଷୋଳଭାଗୁ ଏକଭାଗ ସେହି
ତାହାଙ୍କଠାରୁ ଅଧିକ ଜଗତେ କେ ନାହିଁ ।
ସେ ମହାବିରାଟଙ୍କର ଅଙ୍ଗରୁ ଉତ୍ପନ୍ନ
ହେଲେ ଯେ କ୍ଷୁଦ୍ର ବିରାଟ ବୋଲେ ତାଙ୍କୁ ଜାଣ
କାରଣ ଅଟନ୍ତି ସେହି ସର୍ବଲୋକଙ୍କର
ତାହାଙ୍କ ନାଭି ପଦ୍ମରୁ ହେଲେ ବେଦବର ।
ଲକ୍ଷେ ବର୍ଷ ବୁଲି ସେହି ପୁଣି ନିଜସ୍ଥାନେ
ରହି ତପକଲେ ଲକ୍ଷବର୍ଷ ପରିମାଣେ ।

ସେ ଅନ୍ତରେ ଗୋଲୋକକୁ ଦରଶନ କଲେ
ଶ୍ରୀକୃଷ୍ଣଙ୍କୁ ମଧ୍ୟ ସେହି ସ୍ଥାନରେ ଦେଖିଲେ ।
ଅତ୍ୟନ୍ତ ସୁନ୍ଦର ରୂପ ପ୍ରସନ୍ନ ମୂରତି
ରତ୍ନସିଂହାସନ ପରେ ବିଜେ କରିଛନ୍ତି ।
ତାହାଙ୍କୁ ଦେଖି ଅନୁଜ୍ଞା ଘେନି ସେ ପୁରୁଷ
ସୃଷ୍ଟି ସରଜିବା ପାଇଁ ଲଭିଲେ ମାନସ ।
ତାଙ୍କ ଯୋଗେ ନିଷ୍ପନ୍ନ ହୁଅଇ ସର୍ଜନା
ବିଷ୍ଣୁ ତାହାଙ୍କୁ ଯତ୍ନରେ କରନ୍ତି ପାଳନା ।
ସଂହାର କରନ୍ତି ରୁଦ୍ର ପ୍ରଳୟ କାଳରେ
ଏହିରୂପେ ବାରମ୍ବାର ହୁଏ କାଳାନ୍ତରେ ।
ଏମାନେ ଶ୍ରୀକୃଷ୍ଣଙ୍କର କଳାରୁ ସମ୍ଭୂତ
ପ୍ରକୃତି ଦେବୀଙ୍କ ଯୋଗେ ହୋଇଛନ୍ତି ଜାତ ।
ସକଳ ଲୋକ ଜନନୀ ଅଟନ୍ତି ପ୍ରକୃତି
ଶ୍ରୀକୃଷ୍ଣ କେବଳ ଭିନ୍ନ ନୁହନ୍ତି ଅଟନ୍ତି ।
ପ୍ରକୃତି ବିନା ଈଶ୍ୱର ସୃଷ୍ଟି ସରଜନେ
ସମର୍ଥ ନୁହନ୍ତି ବୋଲି ଘେନିଥାଅ ମନେ ।
ଆବୃତ କରିଛି ମାୟା ସକଳ ଲୋକଙ୍କୁ
ମାୟାଯୋଗେ କେହି ନ ଜାଣଇ ଶ୍ରୀକୃଷ୍ଣଙ୍କୁ ।
ବୈଷ୍ଣବୀ ଶକ୍ତି ଅଟେ ପ୍ରକୃତିଟି ଜାଣ
ସୃଷ୍ଟିକାଳେ ପାଞ୍ଚ ଭାଗ ହୋଇଲା ସେ ପୁଣ ।
ରାଧା ପଦ୍ମା ସାବିତ୍ରୀ ସେ ଦୁର୍ଗା ସରସ୍ୱତୀ
ଶ୍ରୀକୃଷ୍ଣଙ୍କ ପ୍ରାଣପ୍ରିୟା ରାଧିକା ଅଟନ୍ତି ।
ଐଶ୍ୱର୍ଯ୍ୟ ଅଧିଷ୍ଠାତ୍ରୀ ମଙ୍ଗଳ କାରଣୀ
ଅଟନ୍ତି ଶ୍ରୀ ମହାଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ ।
ବିଦ୍ୟା ଅଧିଷ୍ଠାତ୍ରୀ ଦେବୀ ଦେବୀ ସରସ୍ୱତୀ
ବେଦ ଶାସ୍ତ୍ର ଯୋଗ ମାତା ସାବିତ୍ରୀ ଅଟନ୍ତି ।
ବୁଦ୍ଧି ଅଧିଷ୍ଠାତ୍ରୀ ସର୍ବ ଶକ୍ତି ସ୍ୱରୂପିଣୀ
ସର୍ବଜ୍ଞାନମୟୀ ଦୁର୍ଗା ଦୁର୍ଗତି ନାଶିନୀ ।
ଏରୂପେ ମୂଳ ପ୍ରକୃତି ପାଞ୍ଚଭାଗ ହୋଇ
ପାଳନା କଲେ ପୃଥିବୀ ପ୍ରଥମରେ ଯାଇ ।
ସେ ଅନନ୍ତରେ ତାଙ୍କ କଳାରୁ ବହୁତ
ସ୍ତ୍ରୀ ଜାତ ହେଲେ ଜାଣ ଆହେ ତପୋବନ୍ତ ।
ସକଳ କାମିନୀ ହେଲେ ପ୍ରକୃତି ଅଂଶରୁ
ପୁରୁଷ ହୋଇଲେ ମହାପୁରୁଷଙ୍କଠାରୁ ।
ସେହି ମହାପୁରୁଷଙ୍କୁ ବିଷ୍ଣୁ ବୋଲି ଜାଣ
ତାଙ୍କ ମାୟାରେ ଜଗତ ହୋଇଛି ଆଚ୍ଛନ୍ନ ।

ଏ ଦିବ୍ୟଜ୍ଞାନକୁ ମୁହିଁ ମନ୍ତ୍ରଦୀକ୍ଷା କାଳେ
ପାଇଲି ଦତ୍ତଙ୍କଠାରୁ ପୁଣ୍ୟତୀର୍ଥ ସ୍ଥଳେ ।
ଏରୂପେ ରାମଙ୍କ ଆଗେ କହି ସହସ୍ରାର୍ଜ୍ଜୁନ
ପ୍ରଣାମ କରି ତାହାଙ୍କୁ ଚଳିଲେ ବହନ ।
ଆନନ୍ଦମନରେ ରଥ ଉପରେ ବସିଲେ
ଧନୁ ଧରି ଯୁଝିବାକୁ ବାହାର ହୋଇଲେ ।
ତାହାଙ୍କ ସଙ୍ଗେ ବହୁତ ନରପତି ଥାଇ
ଧନୁଘୋଟେ ଦେଲେ ଯୁଦ୍ଧ ଭୂମିକୁ କମ୍ପାଇ ।
ତାହା ଦେଖି ପର୍ଶୁରାମ ଭାଇଙ୍କର ଭୁଲେ
ରାଜାଙ୍କ ସଙ୍ଗରେ ମିଶି ରଣ ଆରମ୍ଭିଲେ ।
କ୍ରମେ କ୍ରମେ ପରସ୍ପରେ ହେଲା ଘୋର ଯୁଦ୍ଧ
ବହୁତ ସୈନ୍ୟ ସେ କାଳରେ ହେଲେ ବଧ ।
ତାହା ଦେଖି ପର୍ଶୁରାମ ବ୍ରହ୍ମଅସ୍ତ୍ର ମାରି
ସକଳ ରାଜାଙ୍କୁ ଦେଲେ କ୍ଷଣକେ ସଂହାରି ।
ଏକା ହୋଇ ସହସ୍ରାର୍ଜ୍ଜୁନ କଲେ ମହାରଣ
ବିନ୍ଧିଲେ ଅନଳ ପ୍ରାୟ କୋଟି କୋଟି ବାଣ ।
ତିନଦିନ ଯାଏ ସହସ୍ରାର୍ଜ୍ଜୁନ ପର୍ଶୁରାମ
ଯୁଝିଲେ ବୃଷଭ ପରି ବହି ଘୋର ତମ ।
ସେ ଅନ୍ତରେ ଯମଦଗ୍ନି ସୁତ ମହାବଳୀ
ଧନୁରେ ପାଶୁପତାସ୍ତ୍ର ବସାଇଲେ ଚଳି ।
ମନ୍ତ୍ର ପଢ଼ି କର୍ଣ୍ଣଯାଏ ଝିଙ୍କିଦ୍ୟନ୍ତି ଛାଡ଼ି
ଚଳିଲା ସେ ଆକାଶରେ କରି ଘୋର ରଡ଼ି ।
ଦଗ୍ଧ କଲା ପରି ତିନି ଭୁବନ ଲୋକଙ୍କୁ
ଆସିଲା ନିନ୍ଦି ପ୍ରଳୟକାଳର ବଜ୍ରକୁ ।
କାର୍ତ୍ତବୀର୍ଯ୍ୟ ଅର୍ଜ୍ଜୁନଙ୍କ ଉପରେ ପଡ଼ିଲା
ମୁହୂର୍ତ୍ତକେ ପୋଡ଼ି ତାଙ୍କୁ ଭସ୍ମ କରିଦେଲା ।
ସେ ରାଜାଙ୍କ ଦେହରୁ ଜାତହୋଇ ଦିବ୍ୟଜ୍ୟୋତି
ଗୋଲୋକଭୁବନେ ଯାଇ ପଶିଲା ଝଟତି ।
ଏଥୁଅନ୍ତେ ପର୍ଶୁରାମ ଏକବିଂଶ ବାର
ବୁଲିଲେ ପୃଥିବୀ କରେ ଧରି ଧନୁଶର ।
ବାଳବୃଦ୍ଧ ଯୁବା ଆଦି କ୍ଷତ୍ରିୟ ଯେତେକ
ସମସ୍ତଙ୍କୁ ମାରି ଦେଖାଇଲେ ପ୍ରେତଲୋକ ।
ପ୍ରତିଜ୍ଞା ପୂରଣକରି ବୀରଗଣବର
ଶ୍ରୀହରିଙ୍କ ପଦଧ୍ୟାୟି ଗଲେ ନିଜପୁର ।
ପରଶୁରେ ନୃପତିଙ୍କୁ କଲେ ତ ବିନାଶ
ସେ ସକାଶୁ ମହାଦେବ ବହି ମନେ ତୋଷ ।

ପରଶୁରାମ ବୋଲିଣ ତାଙ୍କ ନାମ ଦେଲେ
ଦେବତାମାନେ ଆକାଶୁ ପୁଷ୍ପ ବରଷିଲେ ।
ରାମଙ୍କ ଯଶରେ ମହୀ ହୁଅନ୍ତେ ପୂରିତ
ମହୀଧାର ନାମରେ ସେ ହେଲେ ପରିଚିତ ।
ସେ ସମୟେ ବ୍ରହ୍ମା ଭୃଗୁ ଶୁକ ବାଲ୍ମୀକି
ଚ୍ୟବନ ଆଦି ଋଷିଏ ତେଜି ବ୍ରହ୍ମଲୋକ ।
ଯମଦଗ୍ନିଙ୍କୁ ସଙ୍ଗରେ ଘେନିଣ ଆସିଲେ
ପରଶୁରାମଙ୍କ ପାଶେ ପରବେଶ ହେଲେ ।
ଦଣ୍ଡବତ ହୋଇ ଆଗେ ରାମ ମହାମତି
ପ୍ରଣାମ କଲେ ତାହାଙ୍କୁ ପ୍ରକାଶି ବିନତି ।
ଶୁଭ ଆଶୀର୍ବାଦ କରି ବ୍ରହ୍ମାଦି ସମସ୍ତେ
ବହୁତ ପ୍ରଶଂସା ତାଙ୍କୁ କଲେ ତୋଷଚିତ୍ତେ ।
ସେ ଅନ୍ତରେ ପ୍ରଜାପତି କୋଳରେ ବସାଇ
କହିଲେକ ମିଷ୍ଟମୟ ହିତବାକ୍ୟ ତହିଁ ।
ବୋଇଲେ ହେ ବତ୍ସ ଶୁଣ ମୋହର ବଚନ
ସମସ୍ତଙ୍କଠାରୁ ପିତା ପୂଜ୍ୟତମ ଜାଣ ।
ଜନ୍ମ ଦେବାରୁ ଜନକ ବୋଲନ୍ତି ଯେହୁ
ପାଳନ କରିବା ଯୋଗୁ ପିତା ନାମ ବହୁ ।
ତାଙ୍କଠାରୁ ବଳି ଅଟେ ଅନ୍ନଦାତା ଶ୍ରେଷ୍ଠ
ବିନା ଅନ୍ନରେ ଶରୀର ହୁଏ ଯେଣୁ ନଷ୍ଟ ।
ଅନ୍ନଦାତାଠାରୁ ପୁଣି ଅଧିକ ଜନନୀ
ଗର୍ଭରେ ଧରି ପାଳନ କରିଥିବା ଯେନ ।
ଏ ସମସ୍ତଠାରୁ ଶ୍ରେଷ୍ଠ ଅଭୀଷ୍ଟ ଦେବତା
ଶ୍ରୁତି ଶାସ୍ତ୍ରରେ ବିଦିତ ଅଟେ ଏହି କଥା ।
ଇଷ୍ଟଦେବ ସମାନଟି ଜ୍ଞାନଦାତା ଗୁରୁ
ଗୁରୁପତ୍ନୀ ପୂଜ୍ୟତମା ପୁଣି ତାଙ୍କଠାରୁ ।
ଦେବତା ରୁଷ୍ଟ ହୋଇଲେ ଗୁରୁ ରକ୍ଷାକରେ
ଗୁରୁ ରୁଷ୍ଟ ହେବ ଯେବେ କେ ରଖି ନ ପାରେ ।
ଗୁରୁ ଅଟେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପ
ଆବର ସେ ପରଂବ୍ରହ୍ମ ଧର୍ମର ସ୍ୱରୂପ ।
ଗୁରୁ ସର୍ବ ସିଦ୍ଧିଦାତା ଗୁରୁ ନାରାୟଣ
ସର୍ବ ଅମଙ୍ଗଳ ଗୁରୁ ହେଲେ ଅପ୍ରସନ୍ନ ।
ହରିଭକ୍ତି ଜ୍ଞାନଦାତା ଗୁରୁ ଯେ ଅଟନ୍ତି
ଗୁରୁ ସମାନ ଜଗତେ ବନ୍ଧୁ କେ ନାହାନ୍ତି ।
ଗୁରୁଦତ୍ତ ବିଦ୍ୟାବଳେ ଜଗତରେ ଲୋକ
ସମଲୋକଠାରୁ ପୂଜା ଲଭଇ ଅଧିକ ।

ସନ୍ଧ୍ୟାରେ ଧ୍ୟାନରେ ଅବା ମନ୍ତ୍ର ହୋମ କରି
ଗୁରୁଙ୍କୁ ପୂଜା ନକଲେ ଯେଉଁ ପାପାଗ୍ରହୀ ।
ବ୍ରହ୍ମହତ୍ୟାଠାରୁ ବଳି ଅଟଇ ସେ ପାପ
ଆକ୍ରମଣ କରି ତାର ଧର୍ମ କରେ ଲୋପ ।
ଗୁରୁଙ୍କୁ ଯେ ଦେଖୁଥାଏ ନିକୃଷ୍ଟ ଦୃଷ୍ଟିରେ
ଅଧିକାରୀ ନୁହନ୍ତି ସେ କେବଳ କର୍ମରେ ।
ତୁମ୍ଭର ଅଭୀଷ୍ଟ ଦେବ ଶ୍ରୀକୃଷ୍ଣ ଅଟନ୍ତି
ଆବର ଯେ ଗୁରୁ ଶିବ ପାର୍ବତୀଙ୍କ ପତି ।
ସେ ଯୋଗାଣୁ ତୁମ୍ଭେ ଏବେ ପ୍ରଣମି ତାହାଙ୍କୁ
ପୁଣି ଇନ୍ଦ୍ର ଆଦି ସବୁ ଦେବତାମାନଙ୍କୁ ।
ଯେଉଁ ଶିବଙ୍କ ପ୍ରସାଦେ ପୃଥ୍ୱୀମଣ୍ଡଳକୁ
ନିକ୍ଷତ୍ର କଲ ଦେଖାଇ ନିଜ ବିକ୍ରମକୁ ।
ସେ ଶିବଙ୍କ ପାଦତଳେ ଶରଣ ପଶିବ
କେମନ୍ତ ହେଲେ ତୁମ୍ଭର ସର୍ବ ଶୁଭ ହେବ ।
ଆତ୍ମା ସ୍ୱରୂପ ଶ୍ରୀକୃଷ୍ଣ ଜ୍ଞାନମୟ ଶିବ
ତାହାଙ୍କ ଯୋଗରେ ଜାତ ଚରାଚର ଜୀବ ।
ମନୁଷ୍ୟ ରୂପରେ ମୁହିଁ ରହିଥାଏ ଜାଣ
ଏରୂପେ ହୁଅଇ ସୃଷ୍ଟି ଆତ୍ମ ଯୋଗେ ପୁଣ ।
ବ୍ରହ୍ମଜ୍ୟୋତି ସ୍ୱରୂପ ଯେ ସର୍ବ ଜ୍ଞାନମୟ
ଯାହାଙ୍କ ପ୍ରସାଦେ ନାଶ ଯାଏ ସର୍ବ ଭୟ ।
ସେ ମହାଦେବ ତ ତୁମ୍ଭେ ଗୁରୁଦେବ
ତାହାଙ୍କୁ ଭଜ ମନରେ ବହି ଭକ୍ତିଭାବ ।
ଏହିପରି କହି ବ୍ରହ୍ମା ନିଜପୁରେ ଗଲେ
ପରଶୁରାମ ଆପଣା ମନ୍ଦିରେ ରହିଲେ ।
ପରଦିନ ପ୍ରଭାତରେ ନିତ୍ୟକର୍ମ ସାରି
କୈଳାସ ଯିବାକୁ ମନ କଲେ ତପସ୍ୱୀ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ଦେଇଣ ମାନସ
ଅଧମ ଷେନରର ବୋଇଲ ରଖି ପୀତବାସ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଯୁଦ୍ଧରେ ପର୍ଶୁରାମଙ୍କର ମୋହ
ଓ ଦେବତାମାନଙ୍କର ପର୍ଶୁରାମଙ୍କ ନିକଟକୁ ଆଗମନ କଥନେ
ନାମ ଊନଚତ୍ୱାରିଂଶୋଽଧ୍ୟାୟଃ ।

—*—

# ଚତ୍ୱାରିଂଶ ଅଧ୍ୟାୟ

## ପର୍ଶୁରାମଙ୍କର କୈଳାସପୁରେ ପ୍ରବେଶ

କହୁଛନ୍ତି ନାରାୟଣ ନାରଦ ଆଗରେ
ଶୁଣ ଆହେ ମୁନିବର ଏଥୁ ଅନନ୍ତରେ ।
ହରିଙ୍କ କବଚ ଘେନି ପର୍ଶୁରାମ ବଳୀ
ଏକବିଂଶ ଥର ମହୀ ମଣ୍ଡଳକୁ ବୁଲି ।
ନିକ୍ଷତ୍ରିୟ କରି ନିଜ ଗୁରୁଙ୍କୁ ଦର୍ଶନ
କରିବା ପାଇଁକି ଗଲେ କୈଳାସ ଭୁବନ ।
ଯୋଗବଳେ କ୍ଷଣକରେ ପ୍ରବେଶ ହୋଇଲେ
ଅତ୍ୟନ୍ତ ସୁନ୍ଦର ଶିବ ଭୁବନ ଦେଖିଲେ ।
ଶୁଦ୍ଧ ସ୍ଫଟିକ ସଦୃଶ ବରନ ତାହାର
ନାନା ମଣିଗଣରେ ଯେ ଦିଶେ ମନୋହର ।
ସୁବର୍ଣ୍ଣ ଭୂମି ସମାନ ରାଜମାର୍ଗ ରାଜି
ପ୍ରକାଶଇ ଦିବ୍ୟତେଜ ଶୋଭାରେ ବିରାଜି ।
ସିନ୍ଦୂର ପରାୟେ ବର୍ଣ୍ଣେ ପ୍ରକାଶି ସତତ
ହୋଇଅଛି ମଣିମୟ ବେଦୀରେ ବେଷ୍ଟିତ ।
ଯକ୍ଷଙ୍କ ମନ୍ଦିର ତାର ନିକଟରେ ଥାଇ
ହାଟକ ପର୍ବତ ପରି ନେତ୍ରକୁ ଦିଶଇ ।
ସୁବର୍ଣ୍ଣ କବାଟ ସ୍ତମ୍ଭ ସୁବର୍ଣ୍ଣ କଳସ
ପୂର୍ଣ୍ଣ ହୋଇ ଦେଖାଯାଏ ସୁନ୍ଦର ବିଶେଷ ।
ଶୁକକ ଛନ୍ଦ ଭ୍ରମର କେତେକ ଗୃହରେ
ଥୁଆ ହୋଇଅଛି ଅତ୍ୟନ୍ତ ଯତ୍ନକାରେ ।
ନାନାରତ୍ନ ଅଳଙ୍କାରେ ମଣ୍ଡି ଅପଘନ
ରହିଛନ୍ତି ଘରେ ଘରେ ରମଣୀ ରତନ ।
ମହାଆନନ୍ଦରେ କେତେ ବାଳକ ବାଳିକା
ଖେଳୁଛନ୍ତି ହସ୍ତେ ଘେନି କ୍ରୀଡ଼ା ପୁତ୍ତଳିକା ।

ଉପବନମାନଙ୍କରେ ପାରିଜାତ ଫୁଲ
ଫୁଟିବାରୁ ଦିଶୁଅଛି ଅତ୍ୟନ୍ତ ମଞ୍ଜୁଳ ।
ବିଲକ୍ଷ ଯୋଜନ ଉଚ୍ଚ ବଟତରୁଗଣ
ଶତସ୍କନ୍ଧ ଯୁତ ଯୁତ ଯୋଜନ ବିସ୍ତୀର୍ଣ୍ଣ ।
ହୋଇଣ ଗୃହପାଶରେ ବେଢ଼ି ରହିଛନ୍ତି
ପର୍ବତ ସଦୃଶେ ଝଣ୍ଡେଦୂରକୁ ଦିଶନ୍ତି ।
ଆବର ଅସଂଖ୍ୟ ଫଳବୃକ୍ଷ ତାହା ପାଶେ
ଫଳ କୁସୁମରେ ଅତି ମନୋରମ ଦିଶେ ।
ନାନାଜାତି ପକ୍ଷୀମାନେ ଆନନ୍ଦ ମନରେ
ଭ୍ରମଣ କରନ୍ତି ରାବ ସୁମଧୁର ସ୍ୱରେ ।
ଶୀତଳ ସୁରଭି ମନ୍ଦ ଗନ୍ଧବହ ବହି
ଆନନ୍ଦିତ କରୁଅଛି ଦେହୀଙ୍କର ଦେହି ।
ଏରୂପେ ପୁରର ଶୋଭା ଦେଖି ପର୍ଶୁରାମ
ଦେଖିଲେ ପୁଣି ଶଙ୍କର ଦେବଙ୍କ ଆଶ୍ରମ ।
ସୁବର୍ଣ୍ଣ ରଜତମୟ ବୈଦୁର୍ଯ୍ୟ ଖଚିତ
ବିଶ୍ୱକର୍ମାଙ୍କ ହସ୍ତରେ ହୋଇଛି ରଚିତ ।
ଶତଯୋଜନ ପର୍ଯ୍ୟନ୍ତ ଅଟଇ ବିସ୍ତାର
ପନ୍ଦର ଯୋଜନ ପୁଣି ଉଚ୍ଚତା ତାହାର ।
ଚତୁରସ୍ର ଚତୁଷ୍କୋଣ ପ୍ରାକାର ବେଷ୍ଟିତ
ମଣି ମୁକ୍ତାଗଣରେ ସେ ହୋଇଛି ଶୋଭିତ ।
ଦକ୍ଷିଣ ଦିଗରେ ବୃକ୍ଷ ବାମଭାଗେ ସିଂହ
ରହିଛନ୍ତି ଗିରିଶଙ୍କ ପରି ବହି ଦେହ ।
ନନ୍ଦୀଶ୍ୱର ମହାକାଳ ପିଙ୍ଗଳ ଲୋଚନ
ବିଶାଳାକ୍ଷ ବିରୂପାକ୍ଷ ମହାବଳବାନ ।
ବାଣ ବିକଟ ଉଦର ଭାସ୍କର ରକ୍ତାକ୍ଷ
ବିକଟାକ୍ଷ ସଂହାର ଭୈରବ ବୀରମୁଖ୍ୟ ।
କୃଷ୍ଣାଙ୍ଗ ଭୈରବ କ୍ରୋଧ ଭୈରବ ଆବର ।
କପାଳ ଭୈରବ ରୁରୁ ଭୈରବାଦି ବୀର ।
ଏମାନେ ସେ ଯାହାସ୍ଥାନେ ରହିଛନ୍ତି ପୁରି
ହସ୍ତେ ନାନାବିଧ ଶସ୍ତ୍ର ଅସ୍ତ୍ର ମାନ ଧରି ।
ସିଦ୍ଧ ରୁଦ୍ରଗଣ ବିଦ୍ୟାଧର ସେ ଅନେକ
ଆବର ଭୂତ ପିଶାଚ କୁଷ୍ମାଣ୍ଡ ଗୁହ୍ୟକ ।

ବ୍ରହ୍ମରାକ୍ଷସ ବେତାଳ ଦାନବ କିନ୍ନର
ଜଟାଧାରୀ ଯୋଗୀଗଣ ଯକ୍ଷ ବିଦ୍ୟାଧର ।
ଏମାନେ ମଧ୍ୟ ତାଙ୍କର ପାଶରେ ଅଛନ୍ତି
ସମସ୍ତେ ଶିବଙ୍କୁ ଆଜ୍ଞା ବହନ କରନ୍ତି ।
ତାଙ୍କୁ ଦେଖିଣ ଭୃଗୁସୁତ ଦ୍ୱାରେ ପ୍ରବେଶିଲେ
ନନ୍ଦିକେଶ୍ୱରଙ୍କୁ ସଙ୍ଗେ ସମ୍ଭାଷଣ କଲେ ।
ଅନୁଜ୍ଞା ମାଗି ତାହାଙ୍କୁ ଭିତରକୁ ଯାଇ
ଦେଖିଲେ ସେ ଦିବ୍ୟପୁରୀ ଶୋଭା ପ୍ରକାଶଇ ।
ଅମୂଲ୍ୟ ରତନ ମଣି ମୁକ୍ତା ଦରପଣ
ହୀରକ ବୈଦୁର୍ଯ୍ୟ ଆଦି ହୋଇଛନ୍ତି ପୂର୍ଣ୍ଣ ।
ସୁବର୍ଣ୍ଣ ରତନସ୍ତମ୍ଭ କବାଟ ତୋରଣ
ଖଚିତ ହୋଇଅଛନ୍ତି ରତନରେ ପୁଣ ।
ଏହିରୂପେ ଦେଖି ରାମ ଅନ୍ତଃପୁର ଦ୍ୱାରେ
ପ୍ରବେଶ ହୋଇଲେ ଯାଇ ଆନନ୍ଦ ମନରେ ।
ସେହି ଦ୍ୱାର ବାମଭାଗେ କାର୍ତ୍ତିକେୟ ବୀର
ରହିଅଛନ୍ତି ଦକ୍ଷିଣ ଭାଗେ ଗଣେଶ୍ୱର ।
ଏ ବାହାରେ ବୀରଭଦ୍ର ମହାବଳବନ୍ତ
ଶିବଙ୍କ ସମାନେ ସେହୁ ଅଟନ୍ତି ସାମର୍ଥ ।
ତାଙ୍କ ତୁଲେ ପାରିଷଦ କ୍ଷେତ୍ରପାଳଗଣ
ରହିଛନ୍ତି ଅଙ୍ଗେ ଘେନ ବିବିଧ ଭୂଷଣ ।
ସେମାନଙ୍କୁ ସମ୍ଭାଷଣ କରି ପୁଣି ମୁନି
ଭିତରେ ଯିବାକୁ ବାହାରିଲେ ହୋଇ ତୁନି ।
ଗଣେଶ ବୋଇଲେ ଭାଇ ରହ ଏକକ୍ଷଣି
ଶମ୍ଭୁ ସଙ୍ଗତରେ ମୁହିଁ କରିବି ଗମନ ।
ବର୍ତ୍ତମାନ ମହାଦେବ ନିଦ୍ରାରେ ଆସକ୍ତ
ହୋଇଥିବେ ବୋଲି ମୁହିଁ ଭାବୁଅଛି ଚିତ୍ତ ।
ଏହିକ୍ଷଣି ଭିତରକୁ ଯିବି ବେଗେ ଧାଇଁ
ଆସିବି ମୁଁ ଶମ୍ଭୁଙ୍କୁ ସଙ୍ଗେ ନେବାପାଇଁ ।
ଏହିରୂପେ ଗଣେଶଙ୍କ ବଚନକୁ ଶୁଣି
କହିଲେ ପରଶୁରାମ ଦ୍ୱିଜ କୁଳମଣି ।
ଦୀନ କ୍ଷେତ୍ରବାସୀ ବୋଲେ ଅହେ ଦେବବର
ଘୋର ଭବାବ୍ଧିରୁ ମୋତେ ରଖ ଦୟାକରି

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପର୍ଶୁରାମଙ୍କର କୈଳାସ ପୁରେ ପ୍ରବେଶ
କଥନଂ ନାମ ଚତ୍ୱାରିଂଶୋଽଧ୍ୟାୟଃ ।

—୦—

# ଏକଚତ୍ୱାରିଂଶ ଅଧ୍ୟାୟ

## ଗଣେଶ ଓ ପରଶୁରାମଙ୍କର ଆଳାପ ଆଲୋଚନା

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଗଣେଶ ମୁଖକୁ ଗୁହିଁ ପରଶୁରାମ ବୀର ।
ବୋଇଲେ ହେ ଭ୍ରାତ ଶୁଣ ମୋହର ବଚନ
ଯାଉଛି କରିବ ବେଗେ ଗୁରୁଙ୍କୁ ଦର୍ଶନ ।
ଆବର ଗୁରୁପତ୍ନୀଙ୍କ ଚରଣ ବନ୍ଦି
ସେ ଅନ୍ତରେ ତୁମ୍ଭ ସଙ୍ଗେ ଆସି ଦେଖା ହେବ ।
ଯେଉଁ ଗୁରୁଙ୍କ ପ୍ରସାଦେ ଏକବିଂଶ ବାର
ବୁଲି ବୁଲି ନିକ୍ଷତ୍ରି କଲି ଏ ସଂସାର ।
କାର୍ତ୍ତବୀର୍ଯ୍ୟ ନୃପେନ୍ଦ୍ରଙ୍କ ଜୀବନ ଘେନିଲି
ଜଗତ ମଧ୍ୟରେ ଏକବୀର ବୋଲାଇଲି ।
ନାନାଶାସ୍ତ୍ର ଅଧ୍ୟୟନ କଲି ଯା ପ୍ରସାଦେ
ପ୍ରଣାମ କରିବି ଯାଇ ସେ ଗୁରୁଙ୍କ ପାଦେ ।
ସେ ପ୍ରଭୁ ଜଗତକର୍ତ୍ତା ଈଶ୍ୱର ଅଟନ୍ତି
ନିର୍ଗୁଣ ସଗୁଣ ରୂପ ତାହାଙ୍କର ମୂର୍ତ୍ତି ।
ସ୍ୱେଚ୍ଛାମୟ ଦୟାମୟ ଦୀନଜନ ବନ୍ଧୁ
ଆତ୍ମାରାମ ବ୍ୟକ୍ତରୂପ ଦେବ କୃପାସିନ୍ଧୁ ।
ପୁରାଣ ପୁରୁଷ ସର୍ବ ମଙ୍ଗଳର ହେତୁ
ଶୁଦ୍ଧସତ୍ତ୍ୱ ଶାନ୍ତମୟ ଭବଅବ୍ଧି ସେତୁ ।
ପ୍ରସନ୍ନ ବଦନ ଦିବ୍ୟରୂପ ସୁଦର୍ଶନ
ଭକତବତ୍ସଳ ସର୍ବ ଐଶ୍ୱର୍ଯ୍ୟ କାରଣ ।
ଏମନ୍ତ କହିଣ ପରଶୁରାମ ମହାବୀର
ଉଭା ହେଲେ ଗଣେଶଙ୍କ ଆଗେ ହୋଇ ସ୍ଥିର ।
ତାହା ଶୁଣି ଗଣପତି ବୋଇଲେ ହେ ଭ୍ରାତ
ଏହିଠାରେ ତୁମ୍ଭେ ଏବେ ରହ କ୍ଷଣ ମାତ୍ର ।
ଏକାନ୍ତରେ ବିରାଜ କରୁଛନ୍ତି ଶୂଳପାଣି
ଅଛନ୍ତି ତାହାଙ୍କ ସଙ୍ଗେ ପର୍ବତ ଦୁଲଣୀ ।
ଦରଶନ ସମୟ ଏ ନୁହେ ତାହାଙ୍କର
ଏ କଥା କି ଅବିଦିତ ଅଟଇ ତୁମ୍ଭର ।
ସ୍ତ୍ରୀଶୀସୁକ୍ତ ପୁରୁଷକୁ ଦେଖିବା ଉଚିତ
ନୁହଇ କଦାପି ଆହେ ସମଦର୍ଶୀ ସୁତ ।
ସ୍ତ୍ରୀଶୀ ପୁରୁଷଙ୍କର ଯେ ରସ ଭଙ୍ଗ କରେ
ତା ସମାନ ମୂର୍ଖଲୋକ ନାହିଁ ଏ ସଂସାରେ ।
ସେହି ମନୁଷ୍ୟ ଅଧମ ଅନ୍ତଃକାଳେ ଯାଇ
କାଳସୂତ୍ର ନରକରେ ପଡ଼ି କଷ୍ଟପାଇ ।
ବିଶେଷରେ ପିତା ମାତା ଗୁରୁ ନୃପତିଙ୍କ
ରତିରସ ଭଙ୍ଗ ନ କରିବ ଜ୍ଞାନୀ ଲୋକ ।
କାମରେ ବା ଅମର୍ଷରେ ସୁରତ ଉନ୍ମୁଖୀ
ଲୋକର ସୁରତ ଚ୍ଛେଦକରେ ଯେଉଁ ମୂର୍ଖ ।
ସପ୍ତଜନ୍ମଯାଏ ତା'ର ସ୍ତ୍ରୀ ବିଚ୍ଛେଦ ହୁଏ
ଅନ୍ୟଥା କରିଣ ଏହା ନ ପାରନ୍ତି କିଏ ।
କାମଶରେ ଅନ୍ଧ ହୋଇ ଯେଉଁ ପାପାଚାରୀ
ଅନାଏ ପରସ୍ତ୍ରୀଙ୍କ ଭୋଗ ଇଚ୍ଛା କରି ।
ପ୍ରକୃତରେ ଚକ୍ଷୁହୀନ ହୁଅଇ ସେ କାଳେ
ଦେହ ଅନ୍ତେ ପଡ଼େ ଯାଇ ବୈତରଣୀ ଜଳେ ।
ଏହିରୂପେ ଗଣେଶଙ୍କ ବଚନକୁ ଶୁଣି
କହିଲେ କୋପରେ ପରଶୁରାମ ତାଙ୍କୁ ପୁଣି ।
ବୋଇଲେ ହେ ଗଜାନନ ତୁମ୍ଭଠାରୁ ମୁହିଁ
ଶୁଣିଲି ଯା ଆଜଯାଏ ଶୁଣା ନାହିଁ କାହିଁ ।
ଈଶ୍ୱରଙ୍କଠାରୁ ସବୁ ଶାସ୍ତ୍ର ମୁଁ ପଢ଼ିଲି
ଏହିପରି ନ୍ୟାୟ କେବେ ଶୁଣି ତ ନ ଥିଲି ।
ଲମ୍ପଟ କାମୁକ ଲୋକେ ସିନା ଏହି କଥା
ମନରେ ଧାରଣ କରି ରହନ୍ତି ସର୍ବଥା ।
ନିର୍ବିକାର ଶିଶୁପକ୍ଷେ ନୁହଇ ଏ ହେତୁ
ଏଥିରେ ବିବାଦ ତୁମ୍ଭେ ନ କର ମାନସ ।
ନିଃଶଙ୍କ ମନରେ ଏବେ ଯାଉଅଛି ମୁହିଁ
ଶିବ ପାର୍ବତୀଙ୍କ ପାଦ ବନ୍ଦିବାର ପାଇଁ ।
ଅଳପ ବୟସ ତୁମ୍ଭେ ବାଳକ ପ୍ରକୃତି
କର୍ତ୍ତବ୍ୟ ବିଷୟ ବୁଝି ନାହିଁ ତୁମ୍ଭ ମତି ।
ଏ ସକାଶୁ ନିବାରଣ କରୁଛନ୍ତି ମୋତେ
ଉଚିତ ଏ ବୋଲି ଭାବୁନାହିଁ ମୁହିଁ ଚିତ୍ତେ ।
ଜଗତର ପିତାମାତା ପାର୍ବତୀ ଈଶ୍ୱର
ତୁମ୍ଭେ ଯେ ବୋଲ କେବଳ ଅଛନ୍ତି ମୋହର ।
ପାର୍ବତୀ କାମିନୀ ଶିବ ପୁରୁଷ ଅଟନ୍ତି
ଏହା ନିରୂପିତ କଲା କେଉଁ ମୂଢ଼ମତି ।

ଏ କଥାକୁ ମନମଧ୍ୟ କରନାହିଁ ମୁହିଁ
ସବଙ୍କ ସ୍ୱରୂପ ଶିବ ଜାଣି କହୁଥାଇ ।
ସର୍ବ ସ୍ୱରୂପା ଅଟନ୍ତି ଦେବୀ ଗିରିସୁତା
ନ ଜାଣିବା ଲୋକ ସିନା ଭାବିବ ଅନ୍ୟଥା ।
ନିର୍ଗୁଣ ପ୍ରକୃତଙ୍କର କ୍ରୀଡ଼ା କାହୁଁ ହେବ
କି ପ୍ରକାରେ ଅବା ତାହା ଲଗ୍ନ ହୋଇଯିବ ।
ସାଧାରଣ ଲୋକଠାରେ ସମ୍ଭବ ସେ କଥା
ଈଶ୍ୱରଙ୍କ ପକ୍ଷେ ତାହା କହିବାର ବୃଥା ।
ସ୍ତନ୍ୟପାୟୀ ବାଳକକୁ ଦେଖି କେଉଁଠାରେ
ପିତା ମାତାଙ୍କର ଲଜ୍ଜା ଜନମି କି ପାରେ ।
ଜ୍ୱରକୁ କି କଦାପିରେ ଜ୍ୱର ଆକ୍ରମଣ
ଶୀତଠାରୁ ଶୀତର କି ଭୟ ହୁଏ ପୁଣ ।
କାଳକୁ କାଳ କି ନାଶ କରିବାର ଭୟ
କେତେବେଳେ ହେଲେ ହୋଇ ପାରଇ ଉଦୟ
ଚନ୍ଦ୍ରା ଗ୍ରାସ କରି ଅବା ପାରେ କି ଚନ୍ଦ୍ରାକୁ
ନାଶି ପାରିବ କି ଇଚ୍ଛା କେବେହେଁ ଇଚ୍ଛାକୁ
ଜଗତରେ ପୀଡ଼ନ କରିବା ହୋଇପାରେ ଜରା
ଚକ୍ଷୁକୁ ଦେଖି ପାରଇ ନୟନର ତାରା ।
ଆପଣା ତେଜରେ ରବି ପାଆନ୍ତି କି ତାପ
ପାତକକୁ ଗ୍ରାସ କରେ ପାତକ କି ପାପ ।
ସେହିରୂପେ ଲଜ୍ଜାରୂପ ଅଟନ୍ତି ଯେ ଶିବ
ତାହାଙ୍କଠାରେ କିପରି ଲଜ୍ଜାର ସମ୍ଭବ ।
ଶାସ୍ତ୍ରରେ ତ ଲେଖା ହୋଇନାହିଁ ଏ ପ୍ରକାର
ତୁମ୍ଭଠାରୁ ଶୁଣି ଏବେ ହେଉଛି ଅଧୀର ।
ଏହା କହି ପର୍ଶୁରାମ ହସି ପୁନଃ ପୁନଃ
ଯିବାପାଇଁ ବାହାରିଲେ ଗୁରୁ ସନ୍ନିଧାନ ।
ତାହାଦେଖି ଗଣେଶ୍ୱର ଅଳପ ହସିଲେ
ଯଦ୍ୟପି ମୃଦୁ ମନ୍ଦମନ୍ଦ ବଚନ ଭାଷିଲେ ।
ବୋଇଲେ ହେ ଭ୍ରାତ ତୁମ୍ଭେ କହିଲ ଯେ କଥା
ଉଚିତ ବୋଲିଣ ତାହା ଜାଣୁଛୁ ସର୍ବଥା ।
କିନ୍ତୁ ଯାହା କହୁଅଛି ମନଦେଇ ଶୁଣ
ଅଜ୍ଞାନରେ ଆଚ୍ଛାଦନ ଥାଏ ଯାର ମନ ।
ଜ୍ଞାନୀ ଲୋକଠାରୁ ସେହି ଜ୍ଞାନ ଲାଭ କରେ
ଏହାପରି ଘଟିଥାଏ ସବୁରି ଭାଗ୍ୟରେ ।
କିନ୍ତୁ ପିତା ଭ୍ରାତାଠାରୁ ସୁଦୁର୍ଲ୍ଲଭ ଜ୍ଞାନ
ଲଭଇ ଯେ ଜଗତରେ ଅତି ଭାଗ୍ୟବାନ ।

ତୁମ୍ଭେ ତ ବହୁତ ଜ୍ଞାନ ଜ୍ଞାନୀଙ୍କ ମୁଖରୁ
ଶୁଣିଅଛ ଏବେ କିଛି ଶୁଣ ମୋହଠାରୁ ।
ନିର୍ଗୁଣ ଅଟଇ ଯେହୁ ସେ ଅଟେ ନିର୍ଲିପ୍ତ
କଦାପି ନୁହଇ ଶକ୍ତି ଗୁଣରେ ଆସକ୍ତ ।
ଶ୍ରୀକୃଷ୍ଣଙ୍କୁ ଛାଡ଼ି ଯେତେ ପ୍ରାଣୀ ଜଗତରେ
ସମସ୍ତେ ଆସକ୍ତ କାମ କ୍ରୋଧ ବିକାରରେ ।
କେବଳ ଶ୍ରୀକୃଷ୍ଣ ନିତ୍ୟ ଶୁଦ୍ଧ ନିରାମୟ
ନିର୍ଗୁଣ ନିର୍ଲିପ୍ତ ଅଟେ ତାହାଙ୍କର କାୟ ।
ଶୁଦ୍ଧ ଜ୍ୟୋତି ସ୍ୱରୂପ ସେ ନିତ୍ୟ ସନାତନ
ଯୋଗୀଜନେ ବସି ତାଙ୍କୁ କରୁଛନ୍ତି ଧ୍ୟାନ ।
ହସ୍ତ ପାଦାଦି ରହିତ ପ୍ରକୃତିରୁ ପର
ଭକତବତ୍ସଳ ପ୍ରଭୁ ପରମ ଈଶ୍ୱର ।
ବୈଷ୍ଣବମାନେ ସର୍ବଦା ସେ ଦିବ୍ୟ ଜ୍ୟୋତିକୁ
ନମସ୍କାର କରୁଛନ୍ତି ପ୍ରକାଶି ଭକ୍ତିକୁ ।
ତେଜସ୍ୱୀ ପୁରୁଷ ବିନା ସେ ପରମଜ୍ୟୋତି
କେଉଁଠାରୁ ଅବା ପାଇ ପାରନ୍ତା ଉତ୍ପତ୍ତି ।
ସେ ଜ୍ୟୋତି ମଧ୍ୟରେ ଦିବ୍ୟ ଶ୍ୟାମଳ ସୁନ୍ଦର
ପୁରୁଷ ମୁରଲୀ ହସ୍ତ ପୀତବାସ ଧର ।
ଅମୂଲ୍ୟ ରତ୍ନ ଭୂଷିତ ସସ୍ମିତ ବଦନ
ସଜଳ ଜଳଦପୁଞ୍ଜ ତୁଲ୍ୟ ଅପଘନ ।
ଏମନ୍ତ ମୂରତି ଦେଖି ସେ ବୈଷ୍ଣବମାନେ
ସ୍ତୁତି କରନ୍ତି ଅତ୍ୟନ୍ତ ଭକ୍ତି ବହି ମନେ ।
ତେତେକାଳ ପରେ ପୁଣି ପ୍ରଭୁଙ୍କ କୃପାରେ
ଦାସତ୍ୱ ପାଇ ନାହାନ୍ତି ତାଙ୍କ ଶ୍ରୀଚ୍ଛାମୁରେ ।
ସେହି ଦାସତ୍ୱର କଳା ଗୋଟିକୁ ସମାନ
ନୁହେ ଉପବାସ ବ୍ରତ ତୀର୍ଥ ଯାନାଦାନ ।
ସୃଷ୍ଟି ସରଜିବା ପାଇଁ ଯେଉଁ ସମୟରେ
ଶ୍ରୀକୃଷ୍ଣଙ୍କ ଇଚ୍ଛା ହେଲା ତେତେକାଳ ପରେ ।
ଯେତେବେଳେ ପ୍ରକୃତିଙ୍କୁ ସରଜନା କଲେ
ଆବର ତାହାଙ୍କଠାରେ ବୀର୍ଯ୍ୟ ନିବେଶିଲେ ।
ଦିବ୍ୟ ଲକ୍ଷେବର୍ଷ ଅନ୍ତେ ଡିମ୍ବ ସେ ଗର୍ଭରୁ
ଜାତହେଲା ଶ୍ରୀକୃଷ୍ଣଙ୍କ ବୀର୍ଯ୍ୟ ସମ୍ବନ୍ଧରୁ ।
ସେକାଳେ ଜଳରେ ପୂର୍ଣ୍ଣ ଥିଲା ସବୁସ୍ଥାନ
ତହିଁରେ ସେ ଡିମ୍ବଗୋଟି ହେଲା ଭାସମାନ ।
ଦଶଲକ୍ଷ ବରଷ ସେ ତହିଁରେ ରହିଲା
ସେ ଅନ୍ତେ ସେଥିରୁ ପୁରୁଷେକ ଜାତ ହେଲା ।

ବିଶ୍ୱାଧାର ମହା ବିରାଟ ଯେ ବୋଲାଇଲେ
ସକଳ ଜୀବ ତାହାଙ୍କଠାରୁ ଜାତ ହେଲେ ।
ଯେତେ ରୋମ ଥିଲା ତାଙ୍କ ଶରୀର ମଧ୍ୟରେ
ସେତେକ ବ୍ରହ୍ମାଣ୍ଡ ଲୀନ ହୋଇଲେ ତହିଁରେ ।
ପ୍ରତ୍ୟେକ ବ୍ରହ୍ମାଣ୍ଡେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଦେବଋଷି ଯକ୍ଷ ରକ୍ଷ ସିଦ୍ଧ ବିଦ୍ୟାଧର ।
ସମସ୍ତେ ଉତ୍ପନ୍ନ ହୋଇ ସେ ପୁରୁଷଠାରେ
ଲୀନ ହେଉଛନ୍ତି ପୁଣି ପ୍ରଳୟ କାଳରେ ।
ତାହାଙ୍କ ନିଃଶ୍ୱାସ ବାୟୁ ହୋଇଲେ ପବନ
ଶୁଣ ଆହେ ଯମଦଗ୍ନି ମୁନିଙ୍କ ନନ୍ଦନ ।
କ୍ଷୁଦ୍ର ବିରାଟ ପୁରୁଷ ମଧ୍ୟ ତାଙ୍କଠାରୁ
ଜାତ ହେଲେ ଶ୍ରୀକୃଷ୍ଣଙ୍କ ଇଚ୍ଛା ହୋଇବାରୁ ।
ସେ କ୍ଷୁଦ୍ର ବିରାଟଙ୍କର ନାଭିପଦ୍ମୁ ଜାତ
ହେଲେ ବ୍ରହ୍ମା ପ୍ରଜାପତି ଜଗତର ତାତ ।
କଳାରୁ ହୋଇଲେ ମହାବିଷ୍ଣୁ ସେହିପରି
ଲଲାଟୁ ଜନ୍ମିଲେ ଶିବ ବିଶ୍ୱରୂପଧାରୀ ।
ଏମାନେ ପ୍ରତି ବ୍ରହ୍ମାଣ୍ଡେ ପ୍ରକାଶିତ ହୋଇ
ଶେଷରେ ଯାଆନ୍ତି ନିଜ ସ୍ଥାନରେ ଉଭାଇ ।
ନିଜକଳା ଅଂଶେ ହରି ନାନାରୂପ କରି
ଦେଖା ଦେଉଛନ୍ତି ସର୍ବଜୀବ ମନମୋହି ।
ଏ ସକାଶୁ ମହାଦେବ ଅଟନ୍ତି ସଗୁଣ
ନିର୍ଗୁଣ ବୋଲି କରୂପେ କହୁଛ ଆପଣ ।
ଆବର ଯେ ଲକ୍ଷ୍ୟାଶୂନ୍ୟ ସ୍ୱେଚ୍ଛାମୟ ବୋଲି
କହିବାରୁ ତୁମ୍ଭେ ମୁହିଁ ପରତେ ନ ଗଲି ।
ସକଳ ଶକ୍ତି ସହିତ ଅଟନ୍ତି ଈଶ୍ୱର
ଭୋଗ ଅଭିଳାଷ କିପାଁ ନୋହିବ ତାଙ୍କର ।
ରାଧା ପଦ୍ମା ସାବିତ୍ରୀ ଯେ ଦୁର୍ଗା ସରସ୍ୱତୀ
ଏହିରୂପେ ପାଞ୍ଚଭାଗ ହୋଇଲେ ପ୍ରକୃତି ।
ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳେ ରହିଲେ ରାଧିକା
ଅଟନ୍ତି ଯେ ତାହାଙ୍କର ପ୍ରାଣରୁ ଅଧିକା ।
ବ୍ରହ୍ମାଙ୍କର ପ୍ରିୟା ହେଲେ ସାବିତ୍ରୀ ସୁନ୍ଦରୀ
ନାରାୟଣଙ୍କର ଲକ୍ଷ୍ମୀ ହେଲେ ସହଚରୀ ।
ଆବର ଶ୍ରୀ ସରସ୍ୱତୀ ବଚନ ଦେବତା
ସେହି ନାରାୟଣଙ୍କର ହେଲେ ମଧ୍ୟ କାନ୍ତା ।
ବୁଦ୍ଧି ଅଧିଷ୍ଠାତ୍ରୀ ଦେବୀ ଦୁର୍ଗା ଶିବଙ୍କର
ପ୍ରିୟା ହେଲେ ଜାଣ ଆହେ ଦ୍ୱିଜକୁଳ ବର ।
ଏମାନେ ପ୍ରକୃତିଙ୍କର ପ୍ରଧାନ ଅଂଶରେ
ଜାତ ହୋଇଛନ୍ତି ଭିନ୍ନ ଭିନ୍ନ ସ୍ୱରୂପରେ ।
ଆବର ଅନେକ ସ୍ତ୍ରୀ କଳାରୁ ସମ୍ଭୂତ
ହୋଇଛନ୍ତି ଜଗତରେ ଆହେ ତପୋବନ୍ତ ।
ବ୍ରହ୍ମାଣ୍ଡରୁ ବଇକୁଣ୍ଠ ଅଟେ ଭିନ୍ନତମ
ଅବିନାଶି ପୁଣି ସବୁ ଲୋକରୁ ଉତ୍ତମ ।
ତହିଁରେ ଶ୍ରୀନାରାୟଣ ଶ୍ରୀକୃଷ୍ଣ ଅର୍ଦ୍ଧାଂଶ
ଚତୁର୍ଭୁଜ ରୂପେ ହୋଇଛନ୍ତି ପରକାଶ ।
ପାଦତଳେ ବସି ଲକ୍ଷ୍ମୀ ପାଦ ମଞ୍ଜାଳନ୍ତି
ତିନିପୁର ଆଲୋକିତ ପାଇ ସେହି ଜ୍ୟୋତି ।
ସରସ୍ୱତୀ ବୀଣାକରେ କରନ୍ତି ବାଦନ
ଯାହା ଶୁଣି ମୋହିତ ଯେ ଚଉଦ ଭୁବନ ।
ଦୁଇଭୁଜ ନବଘନ ଶ୍ୟାମଳ ସୁନ୍ଦର
ଗୋଲୋକେ ଅଛନ୍ତି ସେହି ରାଧାଙ୍କ ସଙ୍ଗର ।
ଗୋପାଳ ଗୋପିକାଗଣ ତାହାଙ୍କ ପାଶରେ
ରହିଛନ୍ତି ସର୍ବଦା ସେ ତାଙ୍କର ସେବାରେ ।
ସ୍ୱେଚ୍ଛାମୟ ସ୍ୱତନ୍ତ୍ର ଭାବରେ ଶ୍ରୀହରି
ପରମ ଆନନ୍ଦ ରୂପେ ଛନ୍ତି ବିଜେକରି ।
ସେ ପ୍ରଭୁଙ୍କ ଅଂଶେ ଜାତ ସକଳ ଦେବତା
ଅଟନ୍ତି ଏଥିରେ ଜାଣ ନାହିଁ କିଛି ଚିନ୍ତା ।
ସକଳ ବିଶ୍ୱ ତାହାଙ୍କ ଅଙ୍ଗୁ ଜାତ ହୋଇ
କାଳେ ତାଙ୍କ ଅଙ୍ଗେ ପୁଣି ଯାଆନ୍ତି ଉଭାଇ ।
ବୈକୁଣ୍ଠର ଊର୍ଦ୍ଧ୍ୱଭାଗେ ଗୋଲୋକର ସ୍ଥାନ
ତାହାର ଊର୍ଦ୍ଧ୍ୱରେ କେଉଁଲୋକ ନାହିଁ ଜାଣ ।
ଏକଥା ଶିବଙ୍କ ମୁଖୁଁ ଶୁଣିଅଛି ମୁହିଁ
ଏବେ ତୁମ୍ଭ ଆଗେ ସବୁ କହିଲି ବତାଇ ।
ପର୍ଶୁରାମଙ୍କୁ ଏରୂପେ କହି ଗଣେଶ୍ୱର
ମଉନ ହୋଇଲେ ଗୀତେ ଭଣେ କ୍ଷେମଙ୍କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶ ଓ ପର୍ଶୁରାମଙ୍କର
ଆଳାପଆଲୋଚନା ନାମ ଏକଚତ୍ୱାରିଂଶୋଽଧ୍ୟାୟଃ ।

# ଦ୍ୱାଚତ୍ୱାରିଂଶ ଅଧ୍ୟାୟ

## ଗଣେଶଙ୍କ ସହିତ ପର୍ଶୁରାମଙ୍କର ବିବାଦ ଓ ଗଣେଶଙ୍କର ଦନ୍ତଭଗ୍ନ

ନାରାୟଣ ବୋଇଲେ ହେ ଶୁଣ ତପସ୍ୱୀ
ଏଥୁଅନ୍ତେ ଯାହା ହେଲା କହିବା ବିସ୍ତାର ।
ଗଣେଶ ବଚନ ଶୁଣି ପର୍ଶୁରାମ ବୀର
ଯିବାପାଇଁ ନିର୍ଭୟରେ ହୋଇଲେ ବାହାର ।
ଗଣେଶ ଦେଖିଣ ତାହା ବେଗ ହୋଇଯାଇ
ନିବାରଣ କଲେ ତାଙ୍କୁ ବିନୟରେ କହି ।
ନ ସହିଣ ପର୍ଶୁରାମ ଗଣେଶଙ୍କ ହିତ
ପୁନଃ ପୁନଃ ହସ୍ତ ଟୁଙ୍ଗାଇଲେ ତାଙ୍କ ପ୍ରତି ।
କ୍ରମେ ଦୁହିଁଙ୍କ ମଧ୍ୟରେ କଳହ ଉଠିଲା
ଦେଖୁ ଦେଖୁ ରାମଙ୍କର କ୍ରୋଧ ଜାତ ହେଲା ।
ପରଶୁ ଉଞ୍ଚାଇ ବୀର ପ୍ରହାରିବା ପାଇଁ
ଗଣେଶଙ୍କ ସମୀପକୁ ଗଲେ ବେଗେ ଧାଇଁ ।
ତାହା ଦେଖି କାର୍ତ୍ତିକେୟ ହାହାକାର କଲେ
ରାମଙ୍କର ହସ୍ତ ଧରି ବିନୟେ କହିଲେ ।
ବୋଇଲେ ହେ ଭ୍ରାତ କ୍ଷଣେ କ୍ରୋଧ ଶାନ୍ତ କର
ଏ ଅମୋଘ ଶସ୍ତ୍ର ଗଣପତିଙ୍କୁ ନ ମାର ।
ବିଶେଷରେ ତୁମ୍ଭ ଗୁରୁପୁତ୍ର ସେ ଅଟନ୍ତି
ତାଙ୍କୁ ନାଶିବାକୁ କପାଁ କରୁଅଛ ମତି ।
ଗଣେଶ ବୋଇଲେ ରାମ ବୃଥାରେ କିପାଇଁ
କୁପିତ ହେଉଛ ଏହା ଉଚିତ ନୁହଇ ।
ପରଶୁରାମ ସେ କଥା ନ ଶୁଣି କର୍ଣ୍ଣରେ
ଫିଙ୍ଗି ଦେଲେ ଧରି ତାଙ୍କୁ ଅତ୍ୟନ୍ତ ବେଗରେ ।
ଖଣ୍ଡେ ଦୂରେ ଗଣପତି ଶୁଷ୍କ ପତ୍ରପରି
ପଡ଼ିଲେ ସେକାଳେ ଜାଣ ଆହେ ତପସ୍ୱୀ ।
ତଥାପି ସେ ଭଲେ ହେଲେ ରାଗ ନ ହୋଇଲେ
ଉଠି ଧର୍ମ ଦେବତାଙ୍କୁ ସାକ୍ଷୀ କରାଇଲେ ।
ସେ ଅନ୍ତେ ପୁଣି ରାମଙ୍କ ନିକଟକୁ ଯାଇ
ପ୍ରବୋଧନା କଲେ ନାନା ମତେ କଥା କହି ।
ବୋଇଲେ ନିବର୍ତ୍ତି ଆହେ ଯମଦଗ୍ନି ସୁତ
ଜାଣି ଜାଣି କରିବ କି ଯାହା ଅନୁଚିତ ।
ଈଶ୍ୱର ଆଦେଶ ବିନା ଭିତରକୁ ତୁମ୍ଭେ
ଯାଇ ନ ପାରିବ କେବେ ଜାଣୁଅଛୁ ଆମ୍ଭେ ।

ଶିବଙ୍କର ଶିଷ୍ୟ ହେଣୁ ଅଛ ଆମ୍ଭ ଭାଇ
ବ୍ରାହ୍ମଣ ଆସିଛ ପୁଣି ଅଭ୍ୟାଗତ ହୋଇ ।
ସେ ସକାଶୁ ଯେତେ କଲେ ହେଲେ ଅପରାଧ
ମୋହର ମନରେ ଜାତ ହେଉନାହିଁ କ୍ରୋଧ ।
ନୁହଇ ମୁଁ କାର୍ତ୍ତବୀର୍ଯ୍ୟ ଅବା କ୍ଷୁଦ୍ର ନୃପ
ପରଶୁ କ୍ଷଣକେ ମୋତେ ଦେବାକୁ ସନ୍ତାପ ।
ବାଳକ ହେଲେକ ତୁମ୍ଭେ ନିର୍ବୋଧ ବ୍ରାହ୍ମଣ
ଚନ୍ଦ୍ରେଶ୍ୱର ପୁତ୍ର ବୋଲି ମୋତେ କି ନ ଜାଣ ।
କ୍ରୋଧ ହେଲେ ମୁହିଁ ତୁମ୍ଭେ ତିନି ଭୁବନରେ
ରହି ନ ପାରିବ ସତେ ମାନ କେଉଁଠାରେ ।
ଏ ପ୍ରକାଶୁ ବୋଲୁଅଛୁ ଦନ୍ତେ ମାନ ଗହି
ଜଣାଇଲା ପରେ ସିବ ନାହିଁଟି ସନ୍ଦେହ ।
ତା ଶୁଣି ପରଶୁରାମ ହସି ପୁଣ ପୁଣ
ଶିବ ବିଷ୍ଣୁଙ୍କ ମନରେ କରି ସ୍ମରଣ ।
ପରଶୁ ଫିଙ୍ଗିବାପାଇଁ କଲେ ଉଦ୍ୟମ
ଦେଖି କ୍ରୋଧେ ଗଣପତି ହୋଇ ତମ ତମ ।
ଧର୍ମଙ୍କୁ ସାକ୍ଷୀ କରାଇ ଯୋଗ ପ୍ରଭାବରେ
ବିସ୍ତାରିଲେ ଆପଣାର ହସ୍ତକୁ ବେଗରେ ।
କୋଟିଏ ଯୋଜନ ହେଲା ତାର ପରିମାଣ
ପରଶୁରାମଙ୍କ କରି ତହିଁରେ ଗ୍ରହଣ ।
ସୁଦ୍ୱୀପକୁ ନନ୍ଦନ ନେଲା ମଡ଼କାଟରେ
ବୁଲାଇଲେ ନେଇ ତାଙ୍କୁ ଆକାଶ ମଧ୍ୟରେ ।
ସପ୍ତଦ୍ୱୀପ ସପର୍ବତ ସପ୍ତ ସାଗର
ଦେଖାଇଲେ କ୍ଷଣକରେ ଦେବ ଗଣେଶ୍ୱର ।
ତାଙ୍କ ଯୋଗ ପ୍ରଭାବରେ ରାମଙ୍କର ହସ୍ତ
ପାଦ ସହିତରେ ହୋଇଗଲା ଜଡ଼ବତ ।
ପୁଣି ତାହାଙ୍କର ଗର୍ବ ନାଶିବାର ପାଇଁ
ବୁଲାଇଲେ ଗଣପତି ନାନା ଲୋକେ ନେଇ ।
ଭୂଲୋକ ଅନ୍ତରେ ଭୁବର୍ଲୋକ ସ୍ୱର୍ଲୋକ
ଜନ ତପ ଧ୍ରୁବ ଗୌରୀ ଶିବାଦି ଯେତେକ ।
ସମସ୍ତ ଦେଖାଇ ସିନ୍ଧୁ ମଧ୍ୟେ ପକାଇଲେ
ଜଳ ସହିତରେ ତାଙ୍କୁ ଶୋଷଣ ସେ କଲେ ।

ପୁଣି ଜଳ ଜନ୍ତୁଙ୍କର ସଙ୍ଗରେ ମିଶାଇ
ଜଡ୍‌ବୀରଣ କରିଦେଲେ ଭୂମିରେ ପକାଇ ।
ଅକାର ଜଳରେ ତହୁଁ ବୁନ୍ଦନ୍ତେ ଶରୀର
ମଳପର ହେଲେ ପର୍ଶୁରାମ ଦ୍ୱିଜବର ।
ପୁଣି ତାଙ୍କୁ ଗଣେଶ୍ୱର ଧରିଣ ହସ୍ତରେ
ବୁଲାଇଲେ କେତେଥର ବ୍ରହ୍ମାଣ୍ଡ ଉପରେ ।
ଲକ୍ଷ୍ମୀ ନାରାୟଣ ବୁଲେ ବଇକୁଣ୍ଠ ପୁର
ଦେଖାଇଣ ବତାଇଲେ ପୁଣି ନିଜକର ।
ଗୋଲୋକ ଭୁବନ ଯାଏ ହେଲା ସେ ଲମ୍ବିତ
ରହିଲେ ତହିଁରେ ଯମଦଗ୍ନି ମୁନି ସୁତ ।
ଶ୍ରୀକୃଷ୍ଣ ରାଧିକା ଗୋପ ଗୋପୀଗଣ ତୁଲେ
ବୃନ୍ଦାବନ ଆଦି ରାମ ଦେଖିଲେକ ତୋଳେ ।
ଦ୍ୱିଭୁଜ ମୁରଲୀହସ୍ତ ଶ୍ରୀକୃଷ୍ଣଙ୍କୁ ଦେଖି
ସ୍ତୁତିକଲେ ମାନସରେ ହୋଇ ମହାସୁଖୀ ।
ରାମଙ୍କର ଭ୍ରୁଣହତ୍ୟା ଆଦି ଯେତେ ପାପ
ଥିଲା ତାହା କୃଷ୍ଣ ଦରଶନେ ହେଲା ଲୋପ ।
ମାତ୍ର ତାହାର କେତେକ ଅଂଶ ଭୋଗିବାକୁ
ରହିଲା ସେକାଳେ ଆଉ ନ ସ୍ପୃହା ରାମଙ୍କୁ ।
ପାପ ପୁଣ୍ୟ ଆଦି ଯେଉଁ କର୍ମ କରେ ନର
ଭୋଗ ନ କଲେ କଦାପି ନୁହେ ସେ ଅନ୍ତର ।
ଏହିରୂପେ ବୁଲାଇଣ ଦେବ ଗଜାନନ
ପକାଇଦେଲେ ରାମଙ୍କୁ ଭୂମିରେ ବହନ ।
କ୍ଷଣକରେ ଚେତାପାଇ ଯମଦଗ୍ନି ସୁତ
ଦେଖିଲେ ଅନନ୍ତ ଖଣ୍ଡଦୂରେ ଗଣନାଥ ।
କ୍ରୋଧଭରେ ବ୍ରହ୍ମଦତ୍ତ କବଚ ସେ ସ୍ତୋତ୍ର
ଧ୍ୟାନ ଆଦି ସୁମରଣା କଲେ ପୁଣି ମନ୍ତ୍ର ।
ଶ୍ରୀକୃଷ୍ଣ ଶିବଙ୍କୁ ମନେ ଚିନ୍ତାକରି ପୁଣି
ଫିଙ୍ଗିଲେ ଗଣେଶ ପରେ ପରଶୁକୁ ଘେନି ।
ଗ୍ରୀଷ୍ମକାଳ ସୂର୍ଯ୍ୟପରି ତେଜ ପରକାଶି
ଆସିଲା ସେ ଦିବ୍ୟ ମୂର୍ତ୍ତି ଆକାଶକୁ ଗ୍ରାସି ।
ପିତାଙ୍କର ବରଦତ୍ତ ହେତୁ ସେ ଅବ୍ୟର୍ଥ
ଏହିରୂପେ ଚିନ୍ତାକରି ପ୍ରଭୁ ଗଣନାଥ ।
ବାମ ଦନ୍ତରେ ତାହାକୁ କରନ୍ତେ ଗ୍ରହଣ ।
ଦନ୍ତ ଛିଣ୍ଡାଇ ପରଶୁ ଚଳିଲା ବହନ ।
ରାମଙ୍କ ହସ୍ତରେ ଯାଇ ପ୍ରବେଶ ହୋଇଲା
ଶିବଙ୍କର ବରକୁ ସେ ମାନ୍ୟ ତାହା କଲା ।
ଗଣେଶଙ୍କ ମୁଖୁ ଦନ୍ତ ଛିଡ଼ି ମହୀପରେ
ପଡ଼ିଲା ଗର୍ଜନ କରି ବଜ୍ର ପରକାରେ ।
ସେ ଗର୍ଜନ ଶୁଣି ମହୀ ହେଲା ଥରହର
କମ୍ପିଲେ କୈଳାସବାସୀ ହୋଇଣ କାତର ।
ତାହା ଦେଖି ସଦାଶିବ ପାର୍ବତୀଙ୍କ ତୁଲେ
ଅନ୍ତଃପୁରରୁ ବାହାର ହୋଇଣ ଆସିଲେ ।
ଦେଖିଲେ ଗଣେଶଙ୍କର ବାମଦନ୍ତ ଛିଡ଼ି
ଗୈରିକ ଶୃଙ୍ଗ ପରାୟେ ତଳେ ଅଛି ପଡ଼ି ।
ତଥାପି ତାହାଙ୍କ ମନେ କ୍ରୋଧ ନାହିଁ କିଛି
ଲଜ୍ଜିତ ହେଲା ପରାୟେ ବଦନ ହସୁଛି ।
କାର୍ତ୍ତିକେଶ୍ୱରଙ୍କୁ ଗୃହେଁ ପୁଚ୍ଛିଲେ ପାର୍ବତୀ
କେଉଁ କାରଣରୁ ଏହା ହେଲା ଉତପତ୍ତି ।
ତାହା ଶୁଣି ମାତାଙ୍କର ଆଗେ କାର୍ତ୍ତିକେୟ
କହିଲେ ଆମୂଳ କରି ସମସ୍ତ ବିଷୟ ।
ଶୁଣିଣ ପାର୍ବତୀ ଦେବୀ ଶୋକ କ୍ରୋଧ ଘେନି
ଜଣାଇଲେ ଶଙ୍କରଙ୍କୁ ହୋଇ ଅଭିମାନୀ ।
ଜଗତର ଆଦି ପିତା ମାତା ଉମା ଶିବ
ଶେଷେ ଯାଙ୍କ ପାଦମୂଳେ ବିଶ୍ୱ ଲୀନ ହେବ ।
ସେହି ଶିବ ପାର୍ବତୀଙ୍କ ଚରଣ ସରୋଜେ
ଅଧମ କ୍ଷେତ୍ରମୋହନ ସଦା ଭାବ ଭଜେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶଙ୍କ ସହିତ ପର୍ଶୁରାମଙ୍କର
ବିବାଦ ଓ ଗଣେଶଙ୍କର ଦନ୍ତଭଗ୍ନ କଥନେ ନାମ ଦ୍ୱାଚତ୍ୱାରିଂଶୋଽଧ୍ୟାୟଃ ।

—*—

# ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## ଗଣେଶ ସ୍ତୋତ୍ର ବର୍ଣ୍ଣନ

ନାରଦଙ୍କ ଆଗେ ନାରାୟଣ ମୁନିବର
କହନ୍ତି ଗଣେଶଖଣ୍ଡ ଚରିତ୍ର ପ୍ରକାର ।
ଆହେ ମୁନିବର ଶୁଣ ମନ ସ୍ଥିର କରି
ଶଙ୍କରଙ୍କୁ ଅନାଇଣ ପର୍ବତ କୁମାରୀ ।
ବୋଇଲେ ଆହେ ଈଶ୍ୱର ଏ ତିନି ଜଗତେ
ଆପଣଙ୍କ ଦାସୀ ମୁହିଁ ଜାଣନ୍ତି ସମସ୍ତେ ।
ଅପେକ୍ଷା ରହିତ ହୁଏ ଯେବେ ଦାସୀଜନ
ବୃଥା ଅଟଇ କେବଳ ତାହାର ଜୀବନ ।
ଈଶ୍ୱରଙ୍କ ପକ୍ଷେ ତୃଣ ପର୍ବତ ସମସ୍ତେ
ସମାନ ଅଟନ୍ତି ଏହା ପ୍ରସିଦ୍ଧ ଜଗତେ ।
ଦାସୀ ତନୟର ଅବା ଶିଷ୍ୟ ବ୍ରାହ୍ମଣର
ଦୋଷ ହୋଇଅଛି ତାର ସୁବିଚାର କର ।
ଶାରଦାଦ୍ୱ କାର୍ତ୍ତିକେୟ ପାରିଷଦଗଣ
ସାକ୍ଷୀ ସ୍ୱରୂପେ ସମସ୍ତେ ରହିଛନ୍ତି ଜାଣ ।
ସାକ୍ଷ୍ୟଦେବା ସମୟରେ ଶତ୍ରୁ ମିତ୍ର ଦୁଇ
ସମାନ ଅଟନ୍ତି ବୋଲି ଶାସ୍ତ୍ର ଅଛି କହି ।
କାମରେ ବା କ୍ରୋଧରେ ଯେ ବିଚାର ସଭାରେ
ମିଥ୍ୟାସାକ୍ଷ୍ୟ ଦିଏ ସେହୁ ପଡ଼େ ନରକରେ ।
ଦୁହିଙ୍କ ବିବାଦ କଥା ବୁଝିକରି ମୁହିଁ
ନିର୍ଣ୍ଣୟ କରିବା ପାଇଁ ସମର୍ଥ ଅଟଇ ।
ତଥାପି ତୁମ୍ଭ ଆଗରେ ମୁଁ ବିଚାର କଲେ
ନିନ୍ଦିବେ ଜଗତଲୋକେ ଜାଣି ମୋତେ ଭଲେ ।
ରାଜା ଥାଉଁ ଥାଉଁ ତାର ପାରିଷଦଗଣ
ନ୍ୟାୟ ବୁଝିବା ସକାଶେ ନୁହନ୍ତି ଭାଜନ ।
ସୂର୍ଯ୍ୟ ଉଦୟ ସମୟେ ଖଦ୍ୟୋତଙ୍କ ଜ୍ୟୋତି
ପ୍ରକାଶ ହୋଇପାରେ କି ଆହେ ପଶୁପତି ।
କ୍ରୋଧ ଶୋକ ହେତୁ ଯାହା କହୁଅଛି ଏବେ
ଦୋଷ ଥିଲେ ଆପଣ ତା ମାର୍ଜନା କରିବେ ।
ସତୀ ସ୍ତ୍ରୀଙ୍କର ପତି ଶତପୁତ୍ରଠାରୁ
ଅଧିକ ଅଟନ୍ତି ଜାଣ ଆହେ ଜ୍ଞାନଗୁରୁ ।
ଦୁଃଶୀଳା ନୀଚବଂଶଜା ହୋଇଥାଏ ଯେହୁ
ପତିଙ୍କୁ ଅବମାନନା କରଇଟି ସେହୁ ।
କିନ୍ତୁ ଯେ ଉତ୍ତମକୁଳେ ଜାତ ହୋଇଥାଏ
ପତିଙ୍କ ଆଜ୍ଞାକୁ ମାନି ସର୍ବଦା ସେ ରହେ ।
ହୁତାଶନ ସୂର୍ଯ୍ୟ ଯହିଁ ହେଲେ ତେଜଶାଳୀ
ପତିବ୍ରତାର ତେଜକୁ ନ ମାରନ୍ତି ବଳି ।
ଉପବାସ ବ୍ରତ ଦାନ ପୁଣ୍ୟ ଆଦି ଯେତେ
ପାତିବ୍ରତ୍ୟ ଧର୍ମଠାରୁ ନ୍ୟୂନ ସମସ୍ତେ ।
ଏରୂପେ ପାର୍ବତୀ ଦେବୀ ଶିବଙ୍କ ଆଗରେ
କହିବାକାଳେ ରାମଙ୍କୁ ଦେଖିଲେ ସେଠାରେ ।
ଶିବଙ୍କ ପାଦବନ୍ଦନା କରୁଥିଲେ ବସି
କହିଲେ ତାହାଙ୍କୁ ପୁଣି ହୋଇ ମହାରୋଷୀ ।
ବୋଇଲେ ହେ ରାମ ତୁମ୍ଭେ ବ୍ରହ୍ମବଂଶେ ଜାତ
ହୋଇଅଛ ପୁଣି ସର୍ବଶାସ୍ତ୍ରେ ସୁପଣ୍ଡିତ ।
ଯମଦଗ୍ନିଙ୍କର ପୁତ୍ର ରୁଦ୍ରଙ୍କର ଶିଷ୍ୟ
ରେଣୁକା ତୁମ୍ଭର ମାତା ଅଟନ୍ତି ଅବଶ୍ୟ ।
ମାତାମହ ମାତୁଳ ଯେ ପରମ ବୈଷ୍ଣବ
ବିଷ୍ଣୁ ସମାନ ଅଟଇ ତାହାଙ୍କ ପ୍ରଭାବ ।
ତାଙ୍କ ତୁଳନାରେ ତୁମ୍ଭେ ଅଟ ଅତି ଊଣା
କାହା ଦୋଷେ ହେଲ ଏହା ନ ଯାଉଛି ଜଣା ।
ଯାହାଙ୍କ ଦୋଷରେ ଲୋକ ଦୁଷ୍ଟବୁଦ୍ଧି ଧରେ
ସେମାନେ ତ ସାଧୁ ତୁମ୍ଭ ଉଭୟ ବଂଶରେ ।
ତୁମ୍ଭର ଏ ଦୁଷ୍ଟବୁଦ୍ଧି ହେଲା କାହିଁପାଇଁ
ଏ କଥା ତ ମୋତେ ବଡ଼ ସନ୍ଦେହ ଲାଗଇ ।
ଗୁରୁଙ୍କଠାରୁ ଅମୋଘ ପରଶୁ ପାଇଲ
ତହିଁରେ କ୍ଷତ୍ରିୟଙ୍କର ବଂଶ ନିପାତିଲ ।
ଏବେ ଗୁରୁ ତନୟକୁ ପ୍ରହାରିଲ ତାହା
ଗୁରୁ ଦକ୍ଷିଣା ସ୍ୱରୂପ ହେଲ କି ନା ଏହା ।
ଗଣେଶଙ୍କୁ ମୂଢ଼ ଜାଣି ଆମ୍ଭ ଦୁହିଙ୍କର
ଆଗେ ରହିଅଛ କେଉଁ ସାହସ ତୁମ୍ଭର ।
ପରଶୁ ବଳରେ ତୁମ୍ଭେ କଲ ଏହିପରି
ବଳ ପାଇଲେ ଶୃଗାଳ ହୁଏ ସିଂହପରି ।
ତୁମ୍ଭପରି ଲକ୍ଷେକୋଟି ବୀରଙ୍କର ପ୍ରାଣ
କ୍ଷଣକରେ ଗଣପତି ନେଇପାରେ ଜାଣ ।

କିନ୍ତୁ ସେ ଅଟଇ ଧୀର ଶାନ୍ତ ସୌମ୍ୟମୂର୍ତ୍ତି
ସେ ସକାଶୁ ଦେଲନାହିଁ ତୁମ୍ଭଙ୍କୁ ବିପତ୍ତି ।
ତେଜରେ ବିଷ୍ଣୁ ସମାନ ବୋଲି ତାଙ୍କୁ ଜାଣ
ଜଗତରେ ଅଗ୍ରପୂଜ୍ୟ ଅଟଇ ସେ ପୁଣ ।
ଏହା ତ ଶଙ୍କର ନିଜେ ଅରଜି ଅଛନ୍ତି
ତୁମ୍ଭଙ୍କୁ ବର ଦେବାରେ ହେଲ ପରଶିତ ।
ଏରୂପେ ପାର୍ବତୀ ଦେଖି କହି କୋପଭରେ
ପର୍ଶୁରାମଙ୍କୁ ମାରିବା ପାଇଁ ଗଲେ ଖରେ ।
ସେ କାଳେ ପରଶୁରାମ ଶ୍ରୀକୃଷ୍ଣଙ୍କୁ ମନେ
ସୁମରଣା କଲେ ବେଗେ ବସି ଯୋଗାସନେ ।
ଭକତବତ୍ସଳ ପ୍ରଭୁ ଜାଣି ତାଙ୍କ ଚିତ୍ତ
ବ୍ରାହ୍ମଣ ରୂପେ ସେଠାକୁ ହୋଇଲେ ଆଗତ ।
ଅତ୍ୟନ୍ତ ସୁନ୍ଦର ଦିବ୍ୟ ବାମନ ମୂରତି
ବିରାଜଇ କୋଟିସୂର୍ଯ୍ୟ ତୁଲ୍ୟ ଦେହ କାନ୍ତି ।
ତିଳକ ଦିଶଇ ଶୋଭା ମସ୍ତକ ଦେଶରେ
ଦଣ୍ଡଛତ୍ର କମଣ୍ଡଳୁ ଧରିଛନ୍ତି କରେ ।
ଶୁକ୍ଳ ଯଜ୍ଞ ଉପବୀତ ଶୁକ୍ଳ ଦନ୍ତଶ୍ରେଣୀ
ଦିଶନ୍ତି ପୂର୍ଣ୍ଣିମା ଇନ୍ଦୁ କୁନ୍ଦପ୍ରଭା ଜିଣି ।
ମସ୍ତକ ଉପରେ ଅଷ୍ଟରତ୍ନର ମୁକୁଟ
ବିବିଧ ରଙ୍ଗରେ ଦିଶୁଅଛି ଝଟଝଟ ।
ବକ୍ଷସ୍ଥଳେ ଲମ୍ବିଅଛି ତୁଳସୀର ମାଳ
ସ୍ୱର୍ଣ୍ଣକୁଣ୍ଡଳରେ ଶୋଭାପାଏ ଗଣ୍ଡସ୍ଥଳ ।
ବାଳକ ବାଳିକାଗଣ ବେଢ଼ିଛନ୍ତି ପାଶେ
ପ୍ରୀତ ହେଉଛନ୍ତି ତାଙ୍କ ସୁମଧୁର ଭାଷେ ।
ଏହିରୂପେ ପରବେଶ ହୁଅନ୍ତେ ଶ୍ରୀହରି
ଉଠିଲେ କୈଳାସବାସୀ ଚିତ୍ରଲେଖା ପରି ।
ପୁତ୍ର ଭାର୍ଯ୍ୟାଙ୍କୁ ସଙ୍ଗେ ଘେନି ଶୂଳପାଣି
ପ୍ରଣାମ କଲେ ଦ୍ୱିଜଙ୍କୁ ଧରି ପାଦ ବେନି ।
ଆଶୀର୍ବାଦ କଲେ ତାଙ୍କୁ ବାଳକ ବ୍ରାହ୍ମଣ
ତାହା ଦେଖିଣ ବିସ୍ମିତ ହେଲେ ଶିଶୁଗଣ ।
ଏଥୁଅନ୍ତେ ମହାଦେବ ଷୋଳ ଉପଚାରେ
ପୂଜାକଲେ ଶ୍ରୀହରିଙ୍କୁ ବିଧି ଅନୁସାରେ ।
ପୁଣି ରତ୍ନ ସିଂହାସନ ଉପରେ ବସାଇ
ପଚାରିଲେ ଆନନ୍ଦରେ ପୁଲକିତ ହୋଇ ।
ବୋଇଲେ ଆହେ ଶ୍ରୀହରି ଆପଣଙ୍କୁ ମୁହିଁ
କୁଶଳ ପୁଚ୍ଛିବା ପାଇଁ ଇଚ୍ଛା ନ ହୁଅଇ ।

ଆତ୍ମାରାମ ଅଟନ୍ତି ଯେ କୁଶଳ ଆଧାର
ବିଡ଼ମ୍ବନା ତାଙ୍କ ପକ୍ଷେ ଶୁଭ ପୁଚ୍ଛିବାର ।
ମୋହର ଜନମ ଆଜ ସଫଳ ହୋଇଲା
ଯେ ହେତୁ ଆପଣଙ୍କର ଦର୍ଶନ ମିଳିଲା ।
ଅତିଥିଙ୍କୁ ଯେଉଁ ଲୋକ ସତ୍କାର କରେ
ସକଳ ଦେବତା ପୂଜା ପାନ୍ତି ତାହାଘରେ ।
ଆବର କୃଷ୍ଣ ହୁଅନ୍ତି ସ୍ୱୟଂ ନାରାୟଣ
ଅତିଥି ପୂଜକ ଅଟେ ଦେବତା ସମାନ ।
ଯାହାଘରୁ ଆଶାଭଙ୍ଗ ହୋଏ ଅଭ୍ୟାଗତ
ତା ପାଖରେ ଦେଇଯାଏ ସକଳ ଦୁଷ୍କୃତ ।
ନାନାବ୍ରତ ଉପବାସ ତୀର୍ଥ ସ୍ନାନ ଦାନ
ତପ ଅଧ୍ୟୟନ ଆଦି ଯେତେକ କର୍ମମାନ ।
ଅତିଥି ସେବାରେ ଏକ କଳାକୁ ସମସ୍ତେ
ସମାନ ନୁହନ୍ତି ଜାଣ ଆହେ ମହାମତେ ।
ଗୋ ଘାତକ ବ୍ରହ୍ମଘାତୀ କୃତଘ୍ନ ଯେ ନର
ସ୍ତ୍ରୀହତ୍ୟାକାରୀ ନରଘାତକ ପାମର ।
ମାତା ପିତାମାନଙ୍କର ନିନ୍ଦା ଯେ କରଇ
ଆବର ଯେ ମିଥ୍ୟାବାଦୀ ବନ୍ଧୁ ମିତ୍ରଦ୍ରୋହୀ ।
ବ୍ରହ୍ମସ୍ୱ ଦେବସ୍ୱହାରୀ ପର ଅପକାରୀ
ଦେବତା ଦ୍ୱିଜ ବିଦ୍ୱେଷୀ ନିତ୍ୟ ପାପାଚାରୀ ।
ବ୍ରାହ୍ମଣ ହୋଇ ଯେ ଶୂଦ୍ର ଅନ୍ନକୁ ଭୁଞ୍ଜଇ
କି ଅବା କନ୍ୟା ବିକ୍ରୟ କରି ଧନ ନେଇ ।
ଲବଣ ଲୋହ ତଇଳ ଲାକ୍ଷା ତିଳ ମାଂସ
ଏହା ବିକ୍ରୟ କରି ଯେ କଟାଏ ଦିବସ ।
ଏମାନଙ୍କୁ ମହାପାପୀ ବୋଲିକରି ଜାଣ
ଅନ୍ତଃକାଳେ ଲଭନ୍ତି ଏ ନରକରେ ସ୍ଥାନ ।
ଅତିଥି ଯାହା ଦୁଆରୁ ଯାଏ ପୃଷ୍ଠ ଦେଇ
ଏମାନଙ୍କଠାରୁ ବଳି ପାପୀ ଅଟେ ସେହି ।
ଏମନ୍ତ ବିଷ୍ଣୁଙ୍କ ଆଗେ କହି ତ୍ରିଲୋଚନ
ବସିଲେ ତାଙ୍କ ପାଖରେ ପକାଇ ଆସନ ।
ତାହା ଶୁଣି ନାରାୟଣ ସନ୍ତୁଷ୍ଟ ହୋଇଲେ
ଗମ୍ଭୀର ବଚନେ କହିବାକୁ ଆରମ୍ଭିଲେ ।
ବୋଇଲେ ହେ ସଦାଶିବ ଶ୍ୱେତଦ୍ୱୀପୁ ମୁହିଁ
ତୁମ୍ଭର କଳହ ଶୁଣି ଆସିଅଛି ଧାଇଁ ।
ପରଶୁରାମ ଅଟନ୍ତି ଶ୍ରୀକୃଷ୍ଣ ଭକତ
ତାଙ୍କୁ ରକ୍ଷା କରିବାର ଅଟଇ ଉଚିତ ।

ଆପଦ ପଡ଼ିବ ଯେବେ କୃଷ୍ଣ ଭକତଙ୍କୁ
ଚକ୍ରହସ୍ତେ ମୁହିଁ ରକ୍ଷା କରିବି ତାହାଙ୍କୁ ।
ମାନ ଗୁରୁ କ୍ରୋଧ ହେବ ଯାହାଙ୍କ ଉପରେ
କଦାପି ତାହାଙ୍କୁ ରକ୍ଷା କରି ମୁଁ ନ ପାରେ ।
ଗୁରୁସେବା ହୀନ ଅଟେ ଯେଉଁ ମୂଢ଼ନର
ତା ସମାନପାପୀ ନାହିଁ ସଂସାର ମଧ୍ୟର ।
ଯେଉଁ ଗୁରୁ ପ୍ରସାଦରେ ସକଳ ପଦାର୍ଥ
ଦେଖିବା ପାଇଁକି ଲୋକ ହୁଅଇ ସମର୍ଥ ।
ଜନ୍ମ ଦେଇ ପାଳିବାରୁ ଜନକ ଯେ ପିତା
ତାଙ୍କଠାରୁ ଶତଗୁଣେ ପୂଜ୍ୟ ଅଟେ ମାତା ।
ଗର୍ଭରେ ଧାରଣ କରି ଥିବାରୁ ଟି ସେହି
ତାଙ୍କୁ ପୂଜା କରିବାର ଉଚିତ ଅଟଇ ।
ଅନ୍ନଦାତା ମାତାଠାରୁ ଅଟଇ ଅଧିକ
ଅନ୍ନ ବିନା ବଞ୍ଚିପାରଇ କି କେଉଁ ଲୋକ ।
ଅଭୀଷ୍ଟ ଦେବତା ଅନ୍ନଦାତାଠାରୁ ପୁଣି
ଶତଗୁଣେ ପୂଜ୍ୟତମ ବୋଲି ଥାଅ ଜାଣି ।
ଅଜ୍ଞାନ ତିମିରେ ଅନ୍ଧ ହୋଇଥାଏ ଲୋକ
ଦିଅନ୍ତି ତାହାକୁ ଗୁରୁ ଦିବ୍ୟ ଜ୍ଞାନଲୋକ ।
ସେ ସକାଶୁ ତାଙ୍କଠାରୁ ବଳି ଆଉ କେହି
ବନ୍ଧୁ ଥିବ ବୋଲି ମୋର ବିଶ୍ୱାସ ନୁହଇ ।
ଗୁରୁଦତ୍ତ ବିଦ୍ୟାମନ୍ତ୍ର ବଳରେ ମନୁଷ୍ୟ
କରି ପାରଇ ସକଳ ଜଗତକୁ ବଶ୍ୟ ।
ସେ ସକାଶୁ ଗୁରୁଙ୍କର ଶୁଶ୍ରୂଷାରେ ନିତ
ମନ ଦେଇଣ କଟାଉଥିବ ଦିନ ରାତ ।
ବିଦ୍ୟାଧନ ଗର୍ବରେ ଯେ ଗୁରୁ ନିନ୍ଦା କରେ
ପଡ଼ଇ ସେ ଦେହ ଅନ୍ତେ ନରକ କୁଣ୍ଡରେ ।
ବେଦଠାରୁ ବଳି ଶାସ୍ତ୍ର ନାହିଁ ଜଗତରେ
ଶ୍ରୀକୃଷ୍ଣହୁଁ ଶ୍ରେଷ୍ଠ ଦେବ ନାହିଁ କେଉଁଠାରେ ।
ଗଙ୍ଗାନଦୀଠାରୁ ବଳି ନାହିଁ ତୀର୍ଥସ୍ଥାନ
ନୁହଇ କେବଣ ପୁଷ୍ପ ତୁଳସୀ ସମାନ ।
ମହୀଠାରୁ ବଳି କ୍ଷମାଗୁଣେ କେହି ନାହିଁ
ପୁତ୍ର ଠାରୁଁ ବଳି ପ୍ରିୟ ନ ଥିବେଟି କେହି ।
ଦଇବ ସଙ୍କଟଠାରୁ କେବଣ ସଙ୍କଟ
ଅଧିକ ହୋଇବ ବୋଲି ନୋହୁଛି ମୋ ମତ ।
ଏକାଦଶୀ ଠାରୁ ବଳି ବ୍ରତ ନାହିଁ ଆଉ
ଶାଳଗ୍ରାମୁ ବଳି ଯନ୍ତ୍ର ନାହିଁ ମହାବାହୁ ।
କ୍ଷେତ୍ରରେ ଉତ୍କୃଷ୍ଟ ଯେହ୍ନେ ଭାରତବରଷ
ପୁଣ୍ୟସ୍ଥଳେ ବୃନ୍ଦାବନ ଅଟଇ ଏକ ଶେଷ ।
ମୋକ୍ଷଦ ସ୍ଥାନରେ କାଶୀକ୍ଷେତ୍ର ଅଟେ ସାର
ବୈଷ୍ଣବଗଣେ ଅଧିକ ଅଟନ୍ତି ଶଙ୍କର ।
ପାର୍ବତୀଙ୍କ ପରି ସତୀ ନାହିଁ ଏ ସଂସାରେ
ଅଧିକ ଯେ ଗଣେଶ୍ୱର ବାଳଙ୍କ ମଧ୍ୟରେ ।
ବିଦ୍ୟାସମ ବନ୍ଧୁ କେହି ନୁହଇଟି ଜାଣ
ନୁହନ୍ତି ଜଗତେ କେହି ଗୁରୁଙ୍କ ସମାନ ।
ବିଦ୍ୟାଦାତାଙ୍କ ସମାନ ତାଙ୍କ ଭାର୍ଯ୍ୟାସୁତ
ପୂଜ୍ୟ ଅଟନ୍ତି ଏକଥା ଶାସ୍ତ୍ର ସନ୍ମତ ।
ଗୁରୁପତ୍ନୀ ପୁତ୍ରଠାରେ ଅମାନନା କରି
ଦୋଷ କରିଛନ୍ତି ପର୍ଶୁରାମ ତପସ୍ୱୀ ।
ମାର୍ଜନା କରିବା ପାଇଁ ସେ ଦୋଷକୁ ମୁହିଁ
ଆହେ ଶଙ୍କର ଏଠାକୁ ଆସିଅଛି ଧାଇଁ ।
ଏରୂପେ ଶିବଙ୍କୁ କହି ଦେବ ଜନାର୍ଦ୍ଦନ
ପାର୍ବତୀ ଦେବୀଙ୍କୁ ପୁଣି କହିଲେ ବଚନ ।
ବୋଇଲେ ଗୋ ଦେବୀ ସାବଧାନହୋଇତୁମ୍ଭେ
ମନଦେଇ ଶୁଣ ଯାହା କହୁଅଛୁ ଆମ୍ଭେ ।
ଯେରୂପେ ତୁମ୍ଭର ପୁତ୍ର କାର୍ତ୍ତିକ ଗଣେଶ
ସେହିରୂପେ ପର୍ଶୁରାମ ଶିବଙ୍କର ଶିଷ୍ୟ ।
ଏମାନଙ୍କଠାରେ ଭିନ୍ନ ଅଧିକ ବିଚାର
କରିବା ଉଚିତ ନୁହେ ବୋଲି ମନେକର ।
ତୁମ୍ଭର ବା ଶିବଙ୍କର ଏ ତିନିଙ୍କଠାରେ
ସ୍ନେହଭେଦ କରିବାକୁ ନ କର ମନରେ ।
ପୁତ୍ର ସହିତ ପୁତ୍ରର କଳହ ଘଟିଲେ
ଦଇବ ଦୋଷରେ ତାହା ହୁଏ ଜାଣ ଭଲେ ।
ଦଇବକୁ ଲଙ୍ଘିବାକୁ କାହାର ଶକତି
ନାହିଁ ଜଗତ ମଧ୍ୟରେ ଜାଣ ଗୋ ପାର୍ବତୀ ।
ଆଉର ବେଦରେ ଯାହା ଅଛି ଏବେ ଶୁଣ
ତୁମ୍ଭ ପୁତ୍ର ନାମ ଏକଦନ୍ତ ଅଟେ ଜାଣ ।
ନାମାଷ୍ଟକ ସ୍ତୋତ୍ରରେ ସେ ହୋଇଛି ଲିଖିତ
ସେ ସ୍ତୋତ୍ରକୁ କହୁଅଛି ଶୁଣ ଦେଇ ଚିତ୍ତ ।
ଗଣେଶ ହେରମ୍ବ ଏକଦନ୍ତ ସୂର୍ପକର୍ଣ୍ଣ
ଗୁହାଗ୍ରଜ ଲମ୍ବୋଦର ବିଘ୍ନ ବିନାଶନ ।
ଗଜବକ୍ତ୍ର ଏହିପରି ନାମାଷ୍ଟକ ସ୍ତୋତ୍ର
ପଠନ କଲେ ଶରୀର ହୁଅଇ ପବିତ୍ର ।

ସକଳ କାର୍ଯ୍ୟରେ ସିଦ୍ଧି ମିଳେ ଅବହେଳେ
ସିଦ୍ଧିଦାତା ଗଣନାଥ ଯେଣୁ ଚରାଚରେ ।
ସକଳ ବିଘ୍ନ ବିନାଶ ହୁଏ ଯେହ୍ନପରି
ସ୍ତୋତ୍ରକୁ ଶୁଣିବ ଯେବେ ଭକ୍ତିଭାବ ଧରି ।
ଯେହ୍ନ ଅଷ୍ଟନାମ ଅର୍ଥ କହିବା ବତାଇ
ଶୁଣ ମାତ ହରପ୍ରିୟେ ସାବଧାନ ହୋଇ ।
ଗ ଅକ୍ଷର ଅଟେ ଜ୍ଞାନ ଅର୍ଥ ପ୍ରବର୍ତ୍ତକ
ଣ ଅକ୍ଷର ଅଟେ ଶୁଦ୍ଧ ନିର୍ବାଣ ବାଚକ ।
ଯେ ଦୁହିଙ୍କ ଈଶ୍ୱର ସେ ଅଟନ୍ତି ଗଣେଶ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦଦେଶ ।
ଏକ ଶବ୍ଦ ପ୍ରଧାନାର୍ଥ ବାଚକ ଅଟଇ
ଦନ୍ତ ଶବ୍ଦ ପୁଣି ବଳ ଅର୍ଥକୁ ବୁଝାଇ ।
ସମସ୍ତଙ୍କ ଠାରୁ ଅଟନ୍ତି ଯେ ବଳବାନ
ସେ ଏକଦନ୍ତଙ୍କୁ ମୁହିଁ କରୁଅଛି ଧ୍ୟାନ ।
ଦୀନ ଅର୍ଥ ବାଚକ ଯେ ଅଟଇ ହେ ଶବ୍ଦ
ପାଳକ ଅର୍ଥ ବୁଝାଏ ରମ୍ବ ଏହି ପଦ ।
ପାଳକ ଅଟନ୍ତି ଯେହୁ ଦୀନଜନଙ୍କର
ସେ ହେରମ୍ବ ପାଦେ ମୋର କୋଟି ନମସ୍କାର ।
ବିପଦ ଅଟଇ ବିଘ୍ନ ଶବ୍ଦର ଅର୍ଥ
ନାୟକ ଶବ୍ଦ ଖଣ୍ଡନ କରଣେ ଯଥାର୍ଥ ।
ବିପଦ ଖଣ୍ଡନକାରୀ ଅଟନ୍ତି ତ ଯେହ୍ନ
ସେ ବିଘ୍ନନାୟକ ପାଦେ ଶରଣ ପଶଇ ।
ବିଷ୍ଣୁଦତ୍ତ ନୈବେଦ୍ୟରେ ପୂର୍ବେ ଯାହାଙ୍କର
ଅତିଶୟ ଲମ୍ବମାନ ହୋଇଲା ଉଦର ।
ସେହି ଲମ୍ବୋଦରଙ୍କର ପାଦ ପଙ୍କଜକୁ
ବନ୍ଦନା କରୁଛି ମୁହିଁ ପ୍ରକାଶି ଭକ୍ତିକୁ ।
ଶୂର୍ପକାର ଅଟେ ଯାହାଙ୍କର ବେନିକର୍ଣ୍ଣ
କରନ୍ତି ସେ ତାହା ଯୋଗେ ବିଘ୍ନ ବିନାଶନ ।
ସେ ଶୂର୍ପକର୍ଣ୍ଣଙ୍କୁ ମୁହିଁ ସର୍ବଦା ମନରେ
ଧ୍ୟାନ କରୁଅଛି ଶୁଦ୍ଧ ପାଇବା ଇଚ୍ଛାରେ ।
ଯାହାଙ୍କ ମସ୍ତକେ ବିଷ୍ଣୁ ପ୍ରସାଦ କୁସୁମ
ଥିବାରୁ ସେ ହୋଇଅଛି ଅତି ମନୋରମ ।
ସେ ଗଜମସ୍ତକ ପାଦେ ରହୁ ମୋ ମାନସ
ନମସ୍ତେ ଶ୍ରୀ ଗଣପତି ଯୋଗୀଗଣ ଈଶ ।
ଗୁହ ଅଟେ କାର୍ତ୍ତିକେୟ ଦେବଙ୍କର ନାମ
ଯାହାଙ୍କ ଜନ୍ମ ପୂର୍ବରୁ ହୋଇଲେ ସେ ଜନ୍ମ
ସେ ଗୁହାଗ୍ରଜଙ୍କୁ ମୁହିଁ କରୁଛି ବନ୍ଦନା
ପୂର୍ଣ୍ଣ କରନ୍ତୁ ସେ ମୋର ସକଳ କାମନା ।
ଏହିରୂପେ ନାମାଷ୍ଟକ ଅର୍ଥ ସହିତରେ
ଦେଖ ଯଥାର୍ଥରେ ଲେଖା ହୋଇଛି ବେଦରେ
ସେ ଅନ୍ୟେ ପର୍ଶୁରାମଙ୍କଠାରେ କୋପ କର
ମିଛଟାଇ କହିଲି ଭ୍ରମ ହୋଇବାକୁ ଦୂର ।
ଏ ନାମଅଷ୍ଟକ ଯେହୁ ତ୍ରିସନ୍ଧ୍ୟା କାଳରେ
ପଢ଼ିବେ ସେ ସୁଖୀ ହୋଇ ରହିବେ ସଂସାରେ
ଗଣେଶଙ୍କ ପ୍ରସାଦରେ ଜ୍ଞାନବନ୍ତ ହେବ
ଯାହା ଇଚ୍ଛାକଲେ ତାହା ନିଶ୍ଚୟ ପାଇବ ।
ଶ୍ରୀକୃଷ୍ଣଙ୍କ ପାଦେ ମନଦେଇ କ୍ଷେମଙ୍କର
ବୋଲଇ ହେ ଦେବ ମୋତେ ସଂସାରୁ ଉଦ୍ଧର

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ଗଣେଶ ସ୍ତୋତ୍ର ବର୍ଣ୍ଣନେ ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।

---

# ଚତୁଶ୍ଚତ୍ୱାରିଂଶ ଅଧ୍ୟାୟ

## ପର୍ଶୁରାମଙ୍କ ଦ୍ୱାରା ପାର୍ବତୀ ଓ ଗଣେଶଙ୍କ ସ୍ତୋତ୍ର ପଠନ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ଶୁଣ ନାରଦ ମହର୍ଷି ସୁସ୍ଥିର ମନରେ ।
ପାର୍ବତୀଙ୍କୁ ଏହିରୂପେ କହିଣ ଶ୍ରୀହରି
ପର୍ଶୁରାମଙ୍କୁ ବୋଇଲେ ଆହେ ତପଋଷି ।
ଗଣେଶଙ୍କ ଦନ୍ତଭଗ୍ନ କରିବାରୁ ତୁମ୍ଭେ
ଅପରାଧୀ ହୋଇଅଛ ବୋଲୁଅଛୁ ଆମ୍ଭେ ।
ମୁଁ ଯେଉଁ ସ୍ତୋତ୍ରକୁ ଏବେ ଦେଉଅଛି ତାହା
ସ୍ତୁତିକରି ଗଣେଶଙ୍କୁ ସନ୍ତୁଷ୍ଟ କରାଅ ।

ଆଉର କାଣ୍ଵଶାଖାରେ ଅଛି ଯେ ଭକତ
ସେ ସ୍ତୋତ୍ରମନ୍ତ୍ରେ ତୋଷକର ପାର୍ବତୀଙ୍କ ଚିତ୍ତ ।
ସେ ଦେବୀ ଶ୍ରୀକୃଷ୍ଣଙ୍କର ପରମା ଶକତି
ସନ୍ତ୍ଵକର ଯେଉଁରୂପେ ସେ ହେବେ ପ୍ରୀତିମତି ।
ଅସନ୍ତୁଷ୍ଟ ହେବେ ଯେବେ ତୁମ୍ଭଠାରେ ସେହି
ଜ୍ଞାନ ବୁଦ୍ଧି ତୁମ୍ଭର ଯେ ଯିବ ନଷ୍ଟହୋଇ ।
ଏହାଙ୍କ ବିନା ଶ୍ରୀକୃଷ୍ଣ କିବା ବେଦବର
ସୃଷ୍ଟି ସର୍ଜି ନ ପାରନ୍ତ ବୋଲି ମନେ କର
ଆମ୍ଭେମାନେ ଅଟୁ ସେହି ଦେବୀଙ୍କ ସନ୍ତାନ
ସକଳ ଦେବତା ତାଙ୍କଠାରୁ ଜାତ ଜାଣ ।
ଦେବଙ୍କ ତେଜରୁ ପୂର୍ବେ ଜାତ ହୋଇକରି
ଶ୍ରୀକୃଷ୍ଣ ଆଜ୍ଞାରେ ସବୁ ରାକ୍ଷସଙ୍କୁ ମାରି ।
ପୁଣି ଦେବତାଙ୍କୁ ନିଜ ରାଜ୍ୟଦାନ କଲେ
ଦକ୍ଷ ପ୍ରଜାପତିଙ୍କର ଘରେ ଜାତହେଲେ ।
ସତୀବୋଲି ନାମ ହୋଇଥିଲା ତାହାଙ୍କର
ରୂପରେ ସେ ହୋଇଥିଲେ ଅତି ମନୋହର ।
କାଳେ ମହାଦେବଙ୍କର ଭାର୍ଯ୍ୟା ହୋଇଲେ
ଦକ୍ଷ ଯାଗକାଳେ ପୁଣି ଦେହତ୍ୟାଗ କଲେ ।
ସେ ଅନ୍ତେ ଶୈଳ ପତ୍ନୀ ଗର୍ଭେ ଜାତହେଲେ
ତପ ବଳେ ଶିବଙ୍କର ପୁଣି ପତ୍ନୀ ହେଲେ ।
ଗଣପତି ତାଙ୍କଠାରୁ ହୋଇଛନ୍ତି ଜାତ
ଶ୍ରୀକୃଷ୍ଣଙ୍କ ଅଂଶ ସେହି ଆହେ ତପୋବନ୍ତ ।
ଯାହାଙ୍କୁ ସର୍ବଦା ତୁମ୍ଭେ ଧ୍ୟାନ କରୁଅଛ
ତାଙ୍କ ଅଂଶଜଙ୍କୁ ଚିହ୍ନି ନ ପାରିଲ ବତ୍ସ ।
ଏବେ ମୋର ବୋଲକର ଦୁର୍ଗାଙ୍କର ସ୍ତୋତ୍ର
ପଠନ କଲେ ଦୋଷରୁ ହୋଇବ ମୁକତ ।
ଏରୂପେ ରାମଙ୍କୁ କହି ଲକ୍ଷ୍ମୀଦେବୀ ପତି
ବୈକୁଣ୍ଠ ଭୁବନେ ଯାଇଁ ମିଳିଲେ ଝଟତି ।
ଶ୍ରୀହରି ଯାଆନ୍ତେ ପର୍ଶୁରାମ ତପସ୍ୱୀ
ଶୁଭ୍ରଗଙ୍ଗା ଉଦକରେ ସ୍ନାନ ସନ୍ଧ୍ୟା ସାରି ।
ଧଉତ ବସନ ପିନ୍ଧି ଗୁରୁଙ୍କ ଚରଣେ
ନମସ୍କାର କରି ଯାଇଁ ବସିଲେ ଆସନେ ।
ବିଷ୍ଣୁଦତ୍ତ ସ୍ତୋତ୍ରପାଠ କରି ସେ କାଳରେ
ସ୍ତୁତିକଲେ ପାର୍ବତୀଙ୍କୁ ସନ୍ତୁଷ୍ଟ ମନରେ ।
ବୋଇଲେ ନମସ୍ତେ ଦେବୀ ପ୍ରକୃତି ରୂପିଣୀ
ସକଳ ଲୋକ ବିଧାତ୍ରୀ ଶଙ୍କର ଘରଣୀ ।

ଗୋଲୋକରେ ଶ୍ରୀକୃଷ୍ଣଙ୍କ ବିଗ୍ରହରୁ ଜାତ
ମୂର୍ତ୍ତି ମରକତ କାନ୍ତେ ହୋଇଅଛ ମାତ ।
କୋଟି ସୂର୍ଯ୍ୟଠାରୁ ତେଜ ଅଟଇ ଅଧିକ
ସସ୍ମିତ ସୁମନୋହର ବଦନ ତୁମ୍ଭ ମୁଖ ।
କପାଳ ଦେଶରେ ଥାଇ ସିନ୍ଦୂରର ବିନ୍ଦୁ
ଶୋଭାପାଏ ଯେସନେ ନବୋଦିତ ପୂର୍ଣ୍ଣଇନ୍ଦୁ ।
ଲଳିତ କବରୀ ଭାର ମାଳତୀ ମାଳାରେ
ମଣ୍ଡିତ ହେବାରୁ ଦିବ୍ୟଶୋଭା ବ୍ୟକ୍ତ କରେ ।
ମହାବିଷ୍ଣୁଙ୍କର ତୁମ୍ଭେ ଅଟ ସେ ବିଧାତ୍ରୀ
ମୁନି ଋଷିମାନଙ୍କର ଶୁଭ ମୋକ୍ଷଦାତ୍ରୀ ।
ପୂର୍ବରେ ମୋହିନୀ ରୂପ ଦେଖିଣି ସୁନ୍ଦର
ମୋହିତ ହୋଇଲେ ବ୍ରହ୍ମା ବିଷ୍ଣୁ ଆଦି ସୁର
ରାସକ୍ରୀଡ଼ା ସ୍ଥାନେ ସମ୍ମୁଁ ହୋଇଲ ଧାବିତ
ରାଧାବୋଲି ତେଣୁ ତୁମ୍ଭ ନାମ ହେଲା ଖ୍ୟାତ ।
ଶ୍ରୀକୃଷ୍ଣ ତୁମ୍ଭଙ୍କୁ ସେହି କ୍ରୀଡ଼ା କଲା ପରେ
ବୀର୍ଯ୍ୟ ନିବେଶିତ କଲା ତୁମ୍ଭର ଗର୍ଭରେ ।
ଯୋ ସକାଶୁ ଡିମ୍ବ ଏକ ହୋଇଲା ଉତ୍ପନ୍ନ
ତହିଁରୁ ମହାବିରାଟ ଜାତହେଲେ ପୁଣ ।
ସେ ମହାପୁରୁଷଙ୍କର ପ୍ରତିଲୋମ ମୂଳେ
ଅଖିଳ ବ୍ରହ୍ମାଣ୍ଡ ପୂରି ରହିଛନ୍ତି ହେଳେ ।
ସେ ସମୟେ ତୁମ୍ଭର ଯେ ବିଶ୍ୱାସ ବହିଲା
ମହାବାୟୁ ରୂପରେ ସେ ଜଗତେ ରହିଲା ।
ତୁମ୍ଭ ଘର୍ମଜଳେ ବିଶ୍ୱ ହୁଅନ୍ତେ ପ୍ଲାବିତ
ଶୟନ କଲେ ବିରାଟ ହୋଇ ବଟପତ୍ର ।
ସେ ଅନ୍ତରେ ତୁମ୍ଭେ ନିଜେ ପାଞ୍ଚଭାଗ ହେଲ
ପ୍ରଥମ ଭାଗ ରାଧିକା ନାମକୁ ପାଇଲ ।
ଶ୍ରୀକୃଷ୍ଣଙ୍କ ପ୍ରିୟବତୀ ହେବାରୁ ସମସ୍ତେ
କୃଷ୍ଣପ୍ରିୟା ବୋଲି ନାମ ଦେଲେ ଏ ଜଗତେ
ଦ୍ୱିତୀୟ ଭାଗ ସାବିତ୍ରୀ ନାମକୁ ବହିଲେ
ବେଦ ଅଧିଷ୍ଠାତ୍ରୀ ଦେବୀ ସେହିଟି ହୋଇଲେ ।
ତୃତୀୟଭାଗ ହୋଇଲେ ସମ୍ପଦ ଦେବତା
ଲକ୍ଷ୍ମୀନାମ ପାଇ ହେଲେ ବିଷ୍ଣୁଙ୍କର କାନ୍ତା ।
ବାଗ ଅଧିଷ୍ଠାତ୍ରୀ ଦେବୀ ନାମ ସରସ୍ୱତୀ
ଚତୁର୍ଥଭାଗ ଧାରଣ କଲେ ସେହିମୂର୍ତ୍ତି ।
ବୁଦ୍ଧି ବିଦ୍ୟା ଶକ୍ତିରୂପା ମଙ୍ଗଳ ଦାୟିନୀ
ଅଟନ୍ତି ତୁମ୍ଭ ପଞ୍ଚମ ମୂରତି ସେ ସେହି ।

ସର୍ବମଙ୍ଗଳା ନାମରେ ସଂସାରେ ବିଖ୍ୟାତ
ହୋଇଅଛ ତୁମ୍ଭେ ସର୍ବଲୋକ ଆଦ୍ୟମାତ ।
ଶିବଙ୍କ ମନ୍ଦିରେ ଶିବରୂପେ ପରକାଶ
ହୋଇଅଛ ଲକ୍ଷ୍ମୀରୂପେ ବିଷ୍ଣୁଙ୍କର ପାଶ ।
ଆବର ଯେ ସରସ୍ୱତୀ ସ୍ୱରୂପରେ ପୁଣି
ବିଷ୍ଣୁଙ୍କ ମନ୍ଦିରେ ତୁମ୍ଭେ ରହିଅଛ ଜାଣି ।
ସାବିତ୍ରୀରୂପେ ହୋଇଛ ବ୍ରହ୍ମାଙ୍କର ପ୍ରିୟା
ଶ୍ରୀକୃଷ୍ଣପାଶେ ରାଧିକା ଅଛ ଯୋଗମାୟା ।
ସକଳ ଦେବତାଙ୍କର ଯେତେ ସ୍ତ୍ରୀଗଣ
ତୁମ୍ଭ କଳା ଅଂଶରୁ ସେ ଅଛନ୍ତି ଉତ୍ପନ୍ନ ।
ତୁମ୍ଭେ ଅଛ ନିଜଗତ ଶକ୍ତି ସ୍ୱରୂପିଣୀ
ସୂର୍ଯ୍ୟପାଶେ ଛାୟା ଚନ୍ଦ୍ର ପାଶରେ ରୋହିଣୀ ।
ଇନ୍ଦ୍ରଙ୍କ ପାଶରେ ଶଚୀ କାମପାଶେ ରତି
ବରୁଣାନୀ ବରୁଣଙ୍କ ପ୍ରାଣ ପ୍ରିୟବତୀ ।
ବାୟୁପତ୍ନୀ ବହ୍ନିଙ୍କର ପାଶେ ଅଛ ସ୍ୱାହା
କୁବେର ପାଶରେ ଯକ୍ଷପତ୍ନୀ ଋଦ୍ଧିଦେହା ।
ଯମଙ୍କ ପାଶେ ସୁଶୀଳ ନୈର୍ଋତ ପାଶରେ
ଖ୍ୟାତ ହୋଇଅଛ ଦେବୀ କୈଟଭୀ ନାମରେ ।
ଈଶାନ ପାଶରେ ବୋଲଉଛ ଶଶିକଳା
ହୋଇଅଛ ଶତରୂପା ମନୁଙ୍କର ବଳା ।
କର୍ଦ୍ଦମଙ୍କ ପାଶେ ହୋଇଅଛ ଦେବହୂତି
ବଶିଷ୍ଠ ମହର୍ଷିଙ୍କର ପାଶେ ଅରୁନ୍ଧତୀ ।
ଅଗସ୍ତି ଋଷିଙ୍କ ପ୍ରିୟା ଲୋପାମୁଦ୍ରା ରୂପେ
ବିଖ୍ୟାତ ହୋଇଛ ଦେବୀ ଜାତହୋଇ ଆପେ ।
ଅହଲ୍ୟା ଅଛ ଗୌତମ ମୁନିଙ୍କ ପାଶରେ
ଆବର ରହିଛ ଲୋକେ ପୃଥିବୀ ରୂପରେ ।
ଗଙ୍ଗା ତୁଳସୀ ପୃଥିବୀ ଆଦିକରି ଯେତେ
ତୁମ୍ଭ କଳାରୁ ଜନମି ଅଛନ୍ତି ସମସ୍ତେ ।
ଲୋକଙ୍କ ଗୃହରେ ଆଅ ଗୃହଲକ୍ଷ୍ମୀ ରୂପେ
ବୋଲଉଛ ରାଜଲକ୍ଷ୍ମୀ ନୃପଙ୍କ ସମୀପେ ।
ତପସ୍ୱୀଙ୍କର ତପସ୍ୟା ଦ୍ୱିଜର ଗାୟତ୍ରୀ
ସାଧୁ ଜନଙ୍କର ସତ୍ତ୍ୱଗୁଣ ଅଧିଷ୍ଠାତ୍ରୀ ।
ବଜ୍ର ଶରରେ ଜ୍ୟୋତିରୂପା ସଗୁଣର ଶକ୍ତି
ସୂର୍ଯ୍ୟମଣ୍ଡଳର ପ୍ରଭା ଅନଳର ତୃପ୍ତି ।
ଜଳେ ଶୈତ୍ୟ ସ୍ୱରୂପିଣୀ ନିଶାକରେ ଶୋଭା
ଆକାଶେ ଶବ୍ଦସ୍ୱରୂପା ତେଜସ୍କରେ ପ୍ରଭା ।

ଜ୍ଞାନୀ ଲୋକଙ୍କର ଧୃତି ବୁଦ୍ଧି ସ୍ୱରୂପରେ
ପ୍ରକାଶିତ ହୋଇଅଛ ଜଗତ ମଧ୍ୟରେ ।
ଶ୍ରୀକୃଷ୍ଣ ଶିବଙ୍କୁ ଯେଉଁ ମୃତ୍ୟୁଞ୍ଜୟ ଜ୍ଞାନ
ଦେଇଛନ୍ତି ତୁମ୍ଭେ ଅଛ ତହିଁର କାରଣ ।
ବ୍ରହ୍ମା ବିଷ୍ଣୁ ଶିବଙ୍କର ସୃଷ୍ଟି ସ୍ଥିତି ଲୟ
ସମ୍ବନ୍ଧରେ ହୋଇଅଛି ଯେ ଶକ୍ତି ଉଦୟ ।
ତାହାସବୁ ତୁମ୍ଭଠାରୁ ହୋଇଅଛି ଜାତ
ନମସ୍ତେ ମହେଶପ୍ରିୟେ ନମୋ ଆଦ୍ୟମାତ ।
ମଧୁକୈଟଭଙ୍କୁ ଦେଖି ଭୟରେ ବିଧାତା
ଯାହାଙ୍କୁ ସ୍ମରଣ କଲେ ଛାଡ଼ି ସବୁ ଚିନ୍ତା ।
ସେହି ଦେବୀ ଅଛ ତୁମ୍ଭେ ଆଗୋ ମହାମାୟେ
ଶରଣ ପଶୁଛି ମୁହିଁ ଏବେ ତୁମ୍ଭ ପାୟେ ।
ବିଷ୍ଣୁ ପୁଣି ସେହି ମଧୁକୈଟଭ ଦୈତ୍ୟଙ୍କୁ
ମାରିବା ପାଇଁ ସ୍ମରଣା କଲେ ଯେ ତୁମ୍ଭଙ୍କୁ ।
ତ୍ରିପୁର ଜୟ ସମୟେ ଶିବ ସ୍ତୁତି କଲେ
ତାହାଙ୍କର କାର୍ଯ୍ୟ ସିଦ୍ଧି କରିଅଛ ଭଲେ ।
ସେ ସକାଶୁ ତୁମ୍ଭପାଦେ ମୋର ନମସ୍କାର
କୃପାକର ଦୟାମୟି ଦୋଷ କ୍ଷମାକର ।
ଯାହାଙ୍କ ଆଜ୍ଞାରୁ ବହୁଅଛି ପ୍ରଭଞ୍ଜନ
କିରଣ ଦେଉଅଛନ୍ତି ଚନ୍ଦ୍ରମା ତପନ ।
ଜଳ ବରଷନ୍ତି ଇନ୍ଦ୍ର ଯାହାଙ୍କ ଆଜ୍ଞାରେ
ଦହନ କରନ୍ତି ଅଗ୍ନିଦେବ ସବୁଠାରେ ।
ଆବର କାଳଦେବତା ବୁଲି ନିତ୍ୟ ନିତ୍ୟ
ଜୀବଙ୍କ ଜୀବ ହରଣ କରେ ଗୁଢ଼ ଭ୍ରାନ୍ତ ।
ସେ ଦେବୀଙ୍କ ପାଦପଦ୍ମେ ମୋହର ମାନସ
ଆସକ୍ତ ହୋଇଣ ରହୁ ରଜନୀ ଦିବସ ।
ଯାହାଙ୍କ ଆଜ୍ଞାରେ ସୃଷ୍ଟି ସରଜନ୍ତି ଧାତା
ପାଳନ କରନ୍ତି ବିଷ୍ଣୁ ସର୍ବଲୋକ ତ୍ରାତା ।
ଅନ୍ତଃକାଳେ ମହାରୁଦ୍ର କରନ୍ତି ସଂହାର
ସେ ଦେବୀଙ୍କ ପାଦେ ମୋର କୋଟି ନମସ୍କାର ।
ଜଗତ ଜନନୀ ମୋତେ ରକ୍ଷାକର ବାରେ
ଶିଶୁ ଦୋଷ କଲେ ମାତା ତାକୁ କି ସଂହାରେ ।
ଏହିରୂପେ ସ୍ତୁତିକରି ଯମଦଗ୍ନି ସୁତ
ଆପଣା କରମ ନିନ୍ଦି କାନ୍ଦିଲେ ବହୁତ ।
ତା ଦେଖି ସନ୍ତୁଷ୍ଟ ମନେ ଦୁର୍ଗା ମହାମାୟା
ଅଭୟ ବର ତାହାଙ୍କୁ ଦେଲେ କରି ଦୟା ।

ଆବର ବୋଇଲେ ପୁତ୍ର ନ ହୁଅ ଅସ୍ଥିର
ସର୍ବଦା ସକଳସ୍ଥାନେ ଜୟ ହେଉ ତୋର ।
ଅମର ହୋଇଣ ସବୁକାଳେ ରହ ତୁମ୍ଭେ
ପ୍ରସନ୍ନ ହୋଇଣ ବର ଦେଉଅଛୁ ଆମ୍ଭେ ।
ସର୍ବ ଅନ୍ତର୍ଯ୍ୟାମୀ ପ୍ରଭୁ ଦେବ ନାରାୟଣ
ହୁଅନ୍ତୁ ସର୍ବଦା ତୁମ୍ଭଠାରେ ପରସନ୍ନ ।
ଆବର ଶ୍ରୀକୃଷ୍ଣପାଦେ ନିଶ୍ଚଳା ଭକତି
ହୋଇବ ତୁମ୍ଭର ଜାଣ ଆହେ ମହାମତି ।
ଯାହାଠାରେ ଇଷ୍ଟଦେବ ଗୁରୁଙ୍କ ସନ୍ତୋଷ
ହୁଅଇ ତାକୁ କେ କରି ନ ପାରନ୍ତି ନାଶ ।
ଶ୍ରୀକୃଷ୍ଣଙ୍କ ଭକ୍ତ ତୁମ୍ଭେ ଶିଷ୍ୟ ଶିବଙ୍କର
ନାଶିବାପାଇଁ ତୁମ୍ଭଙ୍କୁ ଶକତି କାହାର ।
ଶ୍ରୀକୃଷ୍ଣ ସନ୍ତୁଷ୍ଟ ହେଲେ ଅନ୍ୟ ଦେବଗଣ
ରୁଷ୍ଟହେଲେ କିଛି କରି ନ ପାରନ୍ତି ଜାଣ ।
ବଳବାନ ଚନ୍ଦ୍ର ଗ୍ରହ ଶୁଭ ହୋଇଥିଲେ
କି କରିବେ ତାରାଗଣ ଅଶୁଭ ହୋଇଲେ ।
ଯାହାଠାରେ ଅନୁଗ୍ରହ କଲେ ନରପତି
ଭୃତ୍ୟମାନେ ଅବା ତାକୁ କି କରି ପାରନ୍ତି ।
ସୂର୍ଯ୍ୟ କିରଣରେ ଯେହୁ ଅଟେ ଆଲୋକିତ
ଦୀପର ଆଲୋକ ଲୋଡ଼ା ନାହିଁ କଦାଚିତ ।
ଏରୂପେ ରାମଙ୍କୁ ବର ଦେଇ ମହାମାୟୀ
ସେହିକ୍ଷଣି ଅନ୍ତଃପୁରେ ପ୍ରବେଶିଲେ ଯାଇ ।

ଯେଉଁକାଳେ ପୂଜାକାଳେ ପର୍ଶୁରାମକୃତ
ଦେବୀଙ୍କ ସ୍ତୋତ୍ର ପଢ଼ଇ ହୋଇ ତୋଷଚିତ୍ତ ।
ତାହାର ସକଳ ବାଞ୍ଛା ସମ୍ପୂର୍ଣ୍ଣ ହୁଅଇ
ଆବର ଧନ ସମ୍ପଦ ବହୁତ ମିଳଇ ।
ପୁତ୍ର ଅଭିଳାଷ କରିଥାଏ ଯେଉଁ ନର
ଏ ସ୍ତୋତ୍ର ପଢ଼ିଲେ ହୁଏ ଉତ୍ତମ କୁମର ।
ବିଦ୍ୟାର୍ଥୀ ଯେବେ ପଢ଼ଇ ଭକ୍ତିଭାବ ଦେଇ
ଅଳପକାଳରେ ହୋଇପାରେ ବିଦ୍ୟାଜ୍ଞାନୀ ।
ରୋଗଗ୍ରସ୍ତ ଶତ୍ରୁଗ୍ରସ୍ତ ବ୍ୟାଧିଗ୍ରସ୍ତ ଜନ
ଏହାକୁ ପଢ଼ିଲେ ହୁଏ ବିପଦ ଖଣ୍ଡନ ।
ରାଜଦ୍ୱାରେ ଶ୍ମଶାନରେ କିବା ବନ୍ଧନରେ
ଏହି ସ୍ତୋତ୍ର ପଢ଼ିଲେ ଯେ ଏକାଗ୍ର ଚିତ୍ତରେ ।
ଅବିଳମ୍ବେ ମୁକ୍ତିଲାଭ କରିଥାଏ ସେହି
ତାହାର ଅନିଷ୍ଟ କରି ନ ପାରନ୍ତି କେହି ।
ଆଜନ୍ମରୁ ବନ୍ଧ୍ୟା ହୋଇଥାଏ ଯେଉଁ ସ୍ତିରୀ
ସେ ଯେବେ ଦେବୀଙ୍କ ସ୍ତୋତ୍ର ଶୁଣେ ଭକ୍ତିକରି
ସୁପୁତ୍ର ଲଭଇ ଅଳ୍ପ ସମୟ ମଧ୍ୟରେ
ସୌଭାଗ୍ୟ ସମ୍ପଦ ଦେଖାଯାଏ ତାହାଠାରେ ।
ବରବେ ଯାଏ ହବିଷ୍ୟ କରି ନିତି ନିତି
ଏ ମହା ସ୍ତୋତ୍ରକୁ ପଢ଼ଇ ଯେ ଦେଇ ମତି ।
ଧନ ଜନ ଗୋପଲକ୍ଷ୍ମୀ ବଢ଼ଇ ତାହାର
ସନ୍ଦେହ ନାହିଁ ଏଥିରେ ବୋଲେ କ୍ଷେତ୍ରସ୍ଥିର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଗଣେଶଖଣ୍ଡେ ପର୍ଶୁରାମଙ୍କ ଦ୍ୱାରା ପାର୍ବତୀ ଓ ଗଣେଶଙ୍କ ସ୍ତୋତ୍ର ପଠନେ ନାମ ଚତୁଶ୍ଚତ୍ୱାରିଂଶୋଽଧ୍ୟାୟ ।**

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

### ନାରାୟଣଙ୍କ ଦ୍ୱାରା ତୁଳସୀ ବୃତ୍ତାନ୍ତ ବର୍ଣ୍ଣନ

ନାରଦଙ୍କୁ ଚାହିଁ ନାରାୟଣ ମୁନିବର
ବୋଲନ୍ତି ଶୁଣିମା ହେଉ ବ୍ରହ୍ମାଙ୍କ କୁମର ।
ବରପାଇ ପର୍ଶୁରାମ ହରଷିତ ହେଲେ
କରଯୋଡ଼ି ଗଣେଶଙ୍କ ଆଗେ ସ୍ତୁତିକଲେ ।
ପୁଣି ନାନା ଉପଚାର ଅଣାଇ ସତ୍ୱରେ
ପୂଜାକଲେ ବେଦଶାସ୍ତ୍ର ବିଧି ଅନୁସାରେ ।
ଗନ୍ଧପୁଷ୍ପ ଧୂପଦୀପ ନଇବେଦ୍ୟମାନ
ସମର୍ପଣ କଲେ ସବୁ ହୋଇ ସାବଧାନ ।

କେବଳ ତୁଳସୀଦଳ ଛାଡ଼ି ଆଉ ଯେତେ
ପୁଷ୍ପ ମିଳିଲା ସମସ୍ତ ଦେଲେ ତୋଷଚିତ୍ତେ ।
ଭକ୍ତିଭରେ ପାଦଧରି ପ୍ରଣାମ କରିଲେ
ଯିବାପାଇଁ ଶଙ୍କରଙ୍କୁ ଅନୁଜ୍ଞା ମାଗିଲେ ।
ନାରଦ ବୋଇଲେ ଆହେ ମୁନିଙ୍କ ଉତ୍ତମ
ଗଣେଶଙ୍କୁ ପୂଜା କଲାବେଳେ ପର୍ଶୁରାମ ।
ତୁଳସୀଦଳ ଅର୍ପଣ ନ କଲେ କିପାଇଁ
ଏଥିର କାରଣ ମୋତେ କହ ତପସ୍ୱୀ ।

ତୁଳସୀ ଅଟଇ ସର୍ବ କୁସୁମରେ ସାର
କାର୍ତ୍ତିକ ତା ନ ଘେନିଲେ ପାର୍ବତୀ କୁମର ।
ତାହା ଶୁଣି ନାରାୟଣ ବୋଇଲେ ନାରଦ
କହୁଅଛୁ ଶୁଣ ଏବେ ପୁରାଣ ସମ୍ବାଦ ।
ବୃନ୍ଦାତ୍ୟାଗ କରି ବନେ ତୁଳସୀ ସୁନ୍ଦରୀ
ଯାଇଥିଲା ଗଙ୍ଗାତଟରେ ତୀର୍ଥଯାତ୍ରା କରି ।
ସ୍ନାନକରି ଶ୍ରୀକୃଷ୍ଣଙ୍କୁ ଧ୍ୟାନକରି ମନେ
ଭ୍ରମି ହୋଉଛନ୍ତି ସେହି ପବିତ୍ର ପୁଳିନେ ।
ଖଣ୍ଡେ ଦୂରଠାରେ ତହିଁ ଦେଖିଲେ ଗଣେଶ
ପରଂବ୍ରହ୍ମ ସ୍ୱରୂପରେ ନିବେଶି ମାନସ ।
ଯୋଗ ଆସନରେ ବସି ଧ୍ୟାନ କରୁଛନ୍ତି
ଅତ୍ୟନ୍ତ ସୁନ୍ଦରରୂପ ସୁରୁଚିର କାନ୍ତି ।
ନବଯଉବନ ଅଙ୍ଗ ଶୋଭା ଦିଶେ ଧଳ
ମୁଖଶୋଭା ପଡ଼ିଅଛି ତାହାଠାରୁ ବଳ ।
କଟିତଟେ ବନ୍ଧିଛନ୍ତି ଦିବ୍ୟ ପୀତବାସ
ବିରାଜଇ ବଦନରେ ମନ୍ଦ ମନ୍ଦ ହସ ।
ସୁବାସ ଚନ୍ଦନବୋଳା ହୋଇଅଛି ଅଙ୍ଗେ
ବିବିଧ ରତ୍ନଭୂଷଣ ଅଛି ତାହାସଙ୍ଗେ ।
ଜିତେନ୍ଦ୍ରିୟ ପ୍ରବର ସେ ଯୋଗୀଜନ ଗୁରୁ
ତପସ୍ୱୀ ନ ଥିବ କେହି ବଳି ତାଙ୍କଠାରୁ ।
ତାହାଙ୍କୁ ଦେଖି ତୁଳସୀ କାମଶରେ ପୀଡ଼ା
ପାଇବାରୁ କହିଲେ ସେ ଛାଡ଼ିଦେଇ ବ୍ରୀଡ଼ା ।
ବୋଇଲେ ହେ ଶାନ୍ତରୂପ ଦେବ ଗଜାନନ
ଏଠାରେ ବସି କାହାକୁ କରୁଅଛ ଧ୍ୟାନ ।
ଲମ୍ବୋଦର ଗଜମୁଖ କାର୍ତ୍ତିକ ତୁମ୍ଭର
ଏଥିର କାରଣ ଏବେ କହ ମୋ ଆଗର ।
ସାୟଂକାଳ ଉପସ୍ଥିତ ହେଲାଣି ତ ଆସି
ଧ୍ୟାନ ତେଜ ଆଉ କିପାଁ ରହିଥିବ ବସି ।
ଏମନ୍ତ କହିଣ ବାଳା ହସି ପୁନଃପୁନ
ଦୁର୍ଜ୍ଜୟ କନ୍ଦର୍ପବାଣେ ହରାଇ ଚେତନ ।
ଗଣେଶଙ୍କ ଅଙ୍ଗେ ଅଳ୍ପ ଜଳକୁ ସିଞ୍ଚିଲେ
ତର୍ଜନୀ ଅଙ୍ଗୁଳି ଯୋଗେ ପହଞ୍ଚାଇ ଦେଲେ ।
ସେ ସକାଶୁ ଧ୍ୟାନଭଙ୍ଗ ହେଲା ତାହାଙ୍କର
ଦୁଃଖିତ ହୋଇଲେ ତାହା ଜାଣି ଗଣେଶ୍ୱର ।
ସହଜରେ ସାଧୁସଙ୍ଗ ଭଗ୍ନ ହୋଇଗଲେ
ମନରେ ବେଦନା ଜାତ ହୋଇଥାଏ ଭଲେ ।

ନୟନ ଫିଟାଇ ମନେ ହରିଙ୍କୁ ସୁମରି
ଦେଖିଲେ ଆଗରେ ଉଭା ତୁଳସୀ ସୁନ୍ଦରୀ ।
ଶାନ୍ତଭାବରେ ତାହାଙ୍କୁ ବୋଇଲେ ଗୋ ମାତ
କାହିଁକି ଆସିଛ କହ ମୋ ଆଗରେ ସତ ।
କାହାର କନ୍ୟା ବା କାହା ପତ୍ନୀ ଅଟ ତୁମ୍ଭେ
ଧ୍ୟାନଭଙ୍ଗ କଲ କିପାଁ କହ ପୁଚ୍ଛୁ ଆମ୍ଭେ ।
ଧ୍ୟାନଭଙ୍ଗ କରିବାର ଅଟେ ମହାପାପ
କିନ୍ତୁ ତୁମ୍ଭଠାରେ ମୁହିଁ କରୁନାହିଁ କୋପ ।
ଏଥିରେ ଯେ ଅପରାଧ ହୋଇଛି ତୁମ୍ଭର
ମାର୍ଜ୍ଜନା କରନ୍ତୁ ପ୍ରଭୁ ଗୋଲୋକ ଈଶ୍ୱର ।
ଗଣେଶଙ୍କଠାରୁ ଏହା ଶୁଣିଣ ତୁଳସୀ
କହିଲେ ମଧୁର ବାକ୍ୟେ ପୁଣି ମନ୍ଦେ ହସି ।
ବୋଇଲେ ମୁଁ ଧର୍ମଧ୍ୱଜ ଦୁହିତା ଅଟଇ
ବାଲ୍ୟକାଳୁ ତପସ୍ୟାରେ ଅଛି ମନଦେଇ ।
ସ୍ୱାମୀ ଲାଭ ଅଭିଳାଷ ହୋଇଅଛି ମୋର
ପତିହୋଇ ତୁମ୍ଭେ ମୋତେ ନିଜପତ୍ନୀ କର ।
ଏମନ୍ତ ଶୁଣି ଗଣେଶ ତୁଳସୀଙ୍କଠାରୁ
କହିଲେ ଯଥାର୍ଥ ବାକ୍ୟ ଯେ ତ ଜ୍ଞାନଗୁରୁ ।
ବୋଇଲେ ଗୋ ମାତ ମୋର ପତ୍ନୀ ଇଚ୍ଛାନାହିଁ
ଶ୍ରୀହରିଙ୍କ ଦାସ ହୋଇ ରହିଥିବ ମୁହିଁ ।
ଦାରପରିଗ୍ରହ ଅଟେ ଦୁଃଖର କାରଣ
ଏଥିରେ ସନ୍ଦେହ କିଛି ନାହିଁ ବୋଲି ଜାଣ ।
ନିର୍ମଳ ଶ୍ରୀକୃଷ୍ଣ ଭକ୍ତିରସ ବିନାଶକ
ଆବର ଦୁସ୍ତର ଭବବନ୍ଧନ ପାଶକ ।
ସଂସାର ବିଷୟ ମୋହମାୟା କରଣ୍ଡକ
ସାହସର ହେତୁ ଦୋଷ ସମୂହ କାରକ
ଏ ସକାଶୁ ତହିଁରେ ମୁଁ ନୁହଇ ଆସକ୍ତ
ଆଗୋ ମାତ ନିବର୍ତ୍ତିଅ ମୋରଠାରୁ ଚିତ୍ତ ।
ଅନ୍ୟ ଉପଯୁକ୍ତ ପତି ଅନ୍ୱେଷଣ କର
ଯାଅ ଗୃହେ ହୋଇଥାଉ ମଙ୍ଗଳ ତୁମ୍ଭର ।
ଏହିରୂପେ ଗଣେଶଙ୍କ ନିରାଶ ବଚନ
ଶୁଣିଣ ତୁଳସୀ ଦେବୀ ହୋଇ କୋପମନ ।
ବୋଇଲେ ଅବଜ୍ଞା କରି କହିଲ ଯେ ମୋତେ
ଶାପ ଦେଉଅଛି ଏବେ ଘେନ ମହାମତେ ।
ଅବଶ୍ୟ କରିବ ତୁମ୍ଭେ ଦାରପରିଗ୍ରହ
ଅନ୍ୟଥା ନୋହିବ ମୋର ବାକ୍ୟ ଜାଣିଥାଅ ।